# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**August- 2014**


୭୧ ଭାଗ | ୧ମ ସଂଖ୍ୟା | ଶ୍ରାବଣ-ଭାଦ୍ର | ଅଗଷ୍ଟ- ୨୦୧୪





**ପ୍ରତିଖଣ୍ଡ : ଟ. ୫.୦୦**


---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in

ଫୋନ୍ : ୦୬୭୪-୨୫୩୦୨୧୧

# ସୂଚୀ

❖ ❖ ❖

# ଜାତୀୟ ସଙ୍ଗୀତ



ଜନ–ଗଣ–ମନ–ଅଧିନାୟକ ଜୟ ହେ
ଭାରତ–ଭାଗ୍ୟ–ବିଧାତା
ପଞ୍ଜାବ–ସିନ୍ଧୁ–ଗୁଜରାଟ–ମରାଠା
ଦ୍ରାବିଡ଼–ଉତ୍କଳ–ବଙ୍ଗ
ବିନ୍ଧ୍ୟ–ହିମାଚଳ–ଯମୁନା–ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ–ମଙ୍ଗଳଦାୟକ ଜୟ ହେ,
ଭାରତ–ଭାଗ୍ୟ–ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

*– ରବୀନ୍ଦ୍ରନାଥ ଠାକୁର*



# ବନ୍ଦେ ମାତରମ୍

ସୁଜଲାମ୍, ସୁଫଲାମ୍, ମଳୟଜ ଶୀତଲାମ୍
ଶସ୍ୟ ଶ୍ୟାମଲାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ।।।

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ଓଡ଼ିଶାର ଅମର ଶହୀଦ


ଜୟୀ ରାଜଗୁରୁ


ବୀର ସୁରେନ୍ଦ୍ର ସାଏ


ବିର୍ସା ମୁଣ୍ଡା


ବାଜି ରାଉତ


ରଘୁନାଥ ମହାନ୍ତି


ଦିବାକର ପରିଡ଼ା




ଲକ୍ଷ୍ମଣ ନାଏକ

## ସ୍ୱାଧୀନତା ଦିବସ -୨୦୧୪ ଅବସରରେ

## ଓଡ଼ିଶାର ମାନ୍ୟବର ରାଜ୍ୟପାଳ

## ଡକ୍ଟର ଏସ୍.ସି. ଜମିର୍‌ଙ୍କ

## ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

୬୮ତମ ପବିତ୍ର ସ୍ୱାଧୀନତା ଦିବସ ପାଳନ ଅବସରରେ, ମୁଁ ଆପଣମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି । ନିକଟରେ ହୋଇଥିବା ବନ୍ୟାରେ ଯେଉଁମାନଙ୍କର ଦୁଃଖଦ ଓ ଦୁର୍ଭାଗ୍ୟଜନକ ମୃତ୍ୟୁ ହୋଇଛି, ସେମାନଙ୍କ ପାଇଁ ଗଭୀର ଶୋକ ପ୍ରକାଶ କରିବା ସହ ମୁଁ ସେମାନଙ୍କ ଶୋକ ସନ୍ତପ୍ତ ପରିବାରବର୍ଗଙ୍କୁ ଗଭୀର ସମବେଦନା ଜଣାଉଛି ।

ଅଗଷ୍ଟ ୧୫ ଦିନଟି ଆମ ସମସ୍ତଙ୍କ ନିମନ୍ତେ ଅତୀବ ଗୁରୁତ୍ୱ ବହନ କରେ । ପ୍ରାୟ ୨୦୦ ବର୍ଷର ବିଦେଶୀ ଶାସନ ଶୃଙ୍ଖଳରୁ ଆମ ଦେଶ ଏହି ସ୍ମରଣୀୟ ଦିବସରେ ସ୍ୱାଧୀନତା ଲାଭ କରିଥିଲା । ଶକ୍ତିଶାଳୀ ବ୍ରିଟିଶ୍ ସାମ୍ରାଜ୍ୟ ବିରୁଦ୍ଧରେ, ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଶାନ୍ତି ଓ ଅହିଂସା ଉପରେ ଆଧାରିତ ଆମର ଏହି ସ୍ୱାଧୀନତା ସଂଗ୍ରାମ, ସମଗ୍ର ବିଶ୍ୱକୁ ଅଭିଭୂତ କରିପାରିଥିଲା । ଏହା ଯୋଗୁଁ ବିଶ୍ୱ ଶାନ୍ତିର ଏକ ନୂତନ ଦିଗକୁ ସମଗ୍ର ବିଶ୍ୱ ଅନୁଭବ କରିବା ସଙ୍ଗେ ସଙ୍ଗେ ଅହିଂସା ଯେ ଏକ ଅଜେୟ ଅସ୍ତ୍ର, ଏହା ହୃଦ୍‌ବୋଧ କରିପାରିଥିଲା । ତାଙ୍କ ଆହ୍ୱାନରେ ଦେଶର କୋଣ ଅନୁକୋଣରୁ ସାଧାରଣ ଜନତା ଗଭୀର ଭାବରେ ଅନୁପ୍ରାଣିତ ହୋଇ ସେମାନଙ୍କ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଏହି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ ।

ଆମ ମାତୃଭୂମିର ସ୍ୱାଧୀନତା ନିମନ୍ତେ ନିଜକୁ ପୂର୍ଣ୍ଣପ୍ରାଣରେ ଉତ୍ସର୍ଗ କରିଥିବା ପଣ୍ଡିତ ଜବାହରଲାଲ୍ ନେହରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍, ମୌଲାନା ଆଜାଦ୍, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ଶହୀଦ୍ ଭଗତ୍ ସିଂ ତଥା ସଂଖ୍ୟାତୀତ ଦେଶପ୍ରେମୀ ଏ ଜାତିର ନମସ୍ୟ।

ଏହି ଅଭୂତପୂର୍ବ ଜାତୀୟ ସଂଗ୍ରାମରେ ଓଡ଼ିଶାବାସୀଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ । ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ଶହୀଦ୍ ଲକ୍ଷ୍ମଣ ନାଏକ, ରଘୁ–ଦିବାକରଙ୍କ ପରି ମହାନ୍ ଦେଶପ୍ରେମୀ ଏବଂ ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର, ମା' ରମାଦେବୀ, ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ତଥା ସଂଖ୍ୟାଧିକ ଜାତୀୟତାବାଦୀ ନେତୃବର୍ଗଙ୍କ ଅବିସ୍ମରଣୀୟ ଅବଦାନକୁ ଆଜି ଗର୍ବ ଓ ଗୌରବର ସହିତ ସ୍ମରଣ କରୁଛୁ ।

ଆଜିର ଏହି ପବିତ୍ର ଦିବସ ପାଳନ ଅବସରରେ ମାତୃଭୂମିର ସେବାର୍ଥେ ନିଜ ଜୀବନକୁ ଉତ୍ସର୍ଗ କରି ଆମ ପାଇଁ ବହୁ ଆକାଙ୍‌କ୍ଷିତ ସ୍ୱାଧୀନତା ଆଣି ଦେଇଥିବା ସେହି ବରପୁତ୍ରମାନଙ୍କ ପ୍ରତି ମଧ୍ୟ ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ସ୍ୱାଧୀନତା ପରେ ଆମ ଦେଶ ତଥା ରାଜ୍ୟ ସମସ୍ତ କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ହାସଲ କରିପାରିଛି । ଆମ ରାଜ୍ୟ ସରକାର ଓଡିଶାକୁ ଦେଶର ଏକ ପ୍ରଗତିଶୀଳ ତଥା ସମୃଦ୍ଧ ରାଜ୍ୟ ଭାବେ ଗଢି ତୋଳିବାକୁ ନିରବଚ୍ଛିନ୍ନ ପ୍ରୟାସ ଜାରି ରଖିଛନ୍ତି । ଦାରିଦ୍ର୍ୟ ହ୍ରାସ, ମୁଣ୍ଡପିଛା ଆୟ ବୃଦ୍ଧି ଏବଂ ଉଭୟ ଗ୍ରାମାଚଂଳ ଓ ସହରାଚଂଳ ଜନସାଧାରଣଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିବା ଲକ୍ଷ୍ୟରେ ବହୁବିଧ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଚାଲୁ ରହିଛି । ଭିତ୍ତିଭୂମି ଉନ୍ନୟନକୁ ସର୍ବାଙ୍ଗୀନ ଅଭିବୃଦ୍ଧିର ଚାବିକାଠି ରୂପେ ବିଚାର କରୁଥିବା ରାଜ୍ୟ ସରକାର ଏହାକୁ ଏକ ପୋଷଣୀୟ ସ୍ତରକୁ ଆଣିବା ପାଇଁ ଏଥିପ୍ରତି ନିଜର ସମସ୍ତ ଧ୍ୟାନ କେନ୍ଦ୍ରିତ କରିଛନ୍ତି । ଆମ ରାଜ୍ୟକୁ ପ୍ରଗତିର ଶୀର୍ଷରେ ସ୍ଥାନିତ କରିବା ଲକ୍ଷ୍ୟରେ ସାମାଜିକ-ଅର୍ଥନୈତିକ କ୍ଷେତ୍ରର ସାମଗ୍ରିକ ବିକାଶ ପ୍ରତି ସର୍ବାଧିକ ଗୁରୁତ୍ୱ ଆରୋପ କରାଯାଉଛି।

ଆଜି ମଧ୍ୟ କୃଷି ଆମ ଅର୍ଥନୀତିର ମୂଳ ଆଧାର ଅଟେ । ଏଣୁ ରାଜ୍ୟ ସରକାର କୃଷି ଓ ଆନୁଷଙ୍ଗିକ କ୍ଷେତ୍ର ତଥା କୃଷିଜୀବୀମାନଙ୍କ ଉନ୍ନତି ପ୍ରତି ସମୁଚିତ ଧ୍ୟାନ ଦେବା ଲକ୍ଷ୍ୟରେ ୨୦୧୩-୧୪ ଆର୍ଥିକ ବର୍ଷଠାରୁ ଏକ ସ୍ୱତନ୍ତ୍ର କୃଷି ବଜେଟ୍ ଉପସ୍ଥାପନ କରି ଏହାକୁ ଆନ୍ତରିକତାର ସହିତ କାର୍ଯ୍ୟକାରୀ କରାଉଛନ୍ତି । କୃଷି ଏବଂ କୃଷକମାନଙ୍କ ହିତରେ ଦିଆଯାଉଥିବା କୃଷି ଋଣ ସୁଧ ହାର ୨%ରୁ ଆହୁରି ହ୍ରାସ କରିବା ପାଇଁ ପଦକ୍ଷେପ ନିଆଯାଉଛି । ଏତଦ୍‌ବ୍ୟତୀତ ଫାଇଲିନ୍ ବାତ୍ୟାରେ କ୍ଷତିଗ୍ରସ୍ତ ଚାଷୀଙ୍କ କ୍ଷତି ଭରଣା ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ସହାୟତା ପ୍ୟାକେଜ୍ ଦିଆଯାଇଛି । କୃଷକ ଓ କୃଷି ଶ୍ରମିକ ପରିବାରର ସର୍ବାଧିକ ପାଂଚ ଜଣ ସଦସ୍ୟଙ୍କ ପାଇଁ ବିଜୁ କୃଷକ କଲ୍ୟାଣ ଯୋଜନାରେ ବାର୍ଷିକ ୧ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ସ୍ୱାସ୍ଥ୍ୟ ବୀମା ସୁବିଧା ପ୍ରଦାନ କରାଯାଉଛି । କୃଷି ନିମନ୍ତେ ଜଳସେଚନର ଆବଶ୍ୟକତାକୁ ସର୍ବାଧିକ ଗୁରୁତ୍ୱ ଦେଇ ରାଜ୍ୟ ସରକାର ଆଗାମୀ ୫ ବର୍ଷ ମଧ୍ୟରେ ଅତିରିକ୍ତ ୧୦ ଲକ୍ଷ ହେକ୍ଟର ଜଳସେଚନ ସାମର୍ଥ୍ୟ ସୃଷ୍ଟି କରିବା ପାଇଁ ଲକ୍ଷ୍ୟ ରଖିଛନ୍ତି ।

ନାଗରିକମାନଙ୍କ ଉତ୍ତମ ସ୍ୱାସ୍ଥ୍ୟ ହିଁ ଏକ ସୁସ୍ଥ ସମାଜର ଲକ୍ଷଣ । ଏହି ପରିପ୍ରେକ୍ଷୀରେ ରାଜ୍ୟ ସରକାର ଜନସାଧାରଣଙ୍କୁ ଗୁଣାତ୍ମକ ମାନର ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ଉଦ୍ଦେଶ୍ୟରେ ସାର୍ବଜନୀନ ମାଗଣା ୧୦୮ ଜରୁରୀକାଳୀନ ଆମ୍ବୁଲାନ୍‌ସ ସେବା, ଗର୍ଭବତୀ ଓ ନବଜାତ ଶିଶୁଙ୍କ ପାଇଁ ୧୦୨ ଆମ୍ବୁଲାନ୍‌ସ ସେବା, ଗରିବ ରୋଗୀଙ୍କୁ ଚିକିତ୍ସା ସହାୟତା ନିମନ୍ତେ 'ଓଡିଶା ରାଜ୍ୟ ଚିକିତ୍ସା ପାଣ୍ଠି' ଗଠନ, ପଛୁଆ ତଥା ଜନଜାତି ଅଧ୍ୟୁଷିତ ଅଂଚଳରେ ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ ସେବା ୟୁନିଟ୍ ମୁତୟନ ଏବଂ ଗ୍ରାମାଚଂଳରେ 'ବିଜୁ ଗ୍ରାମୀଣ ସ୍ୱାସ୍ଥ୍ୟ ସେବା ଶିବିର' ଆୟୋଜନ ଭଳି ବିଭିନ୍ନ ଯୋଜନା ପ୍ରଣୟନ କରିଛନ୍ତି । ଏବେ ରାଜ୍ୟ ଚିକିତ୍ସା ପାଣ୍ଠି ଓ ମୁଖ୍ୟମନ୍ତ୍ରୀଙ୍କ ରିଲିଫ ପାଣ୍ଠିରୁ ମିଳୁଥିବା ସହାୟତା ରାଶି ବୃଦ୍ଧି, ଘରୋଇ ହାସପାତାଳରେ ବିପିଏଲ୍ ପରିବାର ପାଇଁ ବିନା ମୂଲ୍ୟରେ ଚିକିତ୍ସା ଏବଂ ଓଡ଼ିଶା ରାଜ୍ୟ ସ୍ୱାସ୍ଥ୍ୟ ସେବା ନିଗମ ଜରିଆରେ ରାଜ୍ୟର ଜନସାଧାରଣଙ୍କୁ ମାଗଣା ଔଷଧ ବିତରଣ ଭଳି ଅନେକଗୁଡିଏ ଜନହିତୈଷୀ ପଦକ୍ଷେପ ରାଜ୍ୟ ସରକାରଙ୍କ ତରଫରୁ ଗ୍ରହଣ କରାଯାଉଛି ।

ଗୁଣାତ୍ମକ ଶିକ୍ଷା ହିଁ ପୂର୍ଣ୍ଣାଙ୍ଗ ବିକାଶର ମାଧ୍ୟମ । ଗୁଣାତ୍ମକ ଶିକ୍ଷା ବ୍ୟବସ୍ଥାକୁ ମୁକ୍ତ ଓ ବାଧ୍ୟତାମୂଳକ କରିବା ଉଦ୍ଦେଶ୍ୟରେ ରାଜ୍ୟ ସରକାର ପ୍ରଥମରୁ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଛାତ୍ରୀଙ୍କ ନିମନ୍ତେ ମାଗଣା ପାଠ୍ୟପୁସ୍ତକ ଓ ସ୍କୁଲ ପୋଷାକ ପ୍ରଦାନ କରିବା ସହିତ ପାଠ୍ୟକ୍ରମ ଜାରି ରଖିବା ଉଦ୍ଦେଶ୍ୟରେ ୧୦ମ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କୁ ମାଗଣା ସାଇକେଲ୍ ଯୋଗାଇ ଦେଉଛନ୍ତି । ମତ୍ସ୍ୟଜୀବୀ ଓ ନିର୍ମାଣ ଶ୍ରମିକଙ୍କ ଅଧ୍ୟୟନରତ ପିଲାମାନଙ୍କୁ ମଧ୍ୟ ଶିକ୍ଷା ସହାୟତା ଯୋଗାଇ ଦିଆଯାଉଛି । ଏତଦ୍‌ବ୍ୟତୀତ ଦକ୍ଷ ମାନବ ସମ୍ବଳର ଆବଶ୍ୟକତା ପୂରଣ ଉଦ୍ଦେଶ୍ୟରେ ଆଇଟିଆଇ, ଡିପ୍ଲୋମା ଏବଂ ଇଂଜିନିୟରିଂ କଲେଜଗୁଡିକର ଭିତ୍ତିଭୂମି ଉନ୍ନୟନ ପ୍ରତି ମଧ୍ୟ ଯଥୋଚିତ ଗୁରୁତ୍ୱ ଆରୋପ କରାଯାଉଛି ।

ପ୍ରତି ଗ୍ରାମ ପଂଚାୟତରୁ ଅନ୍ୟୂନ ୧୫୦ ଜଣ ଯୁବକଯୁବତୀଙ୍କ ଦକ୍ଷତା ବୃଦ୍ଧି ଲକ୍ଷ୍ୟରେ ରାଜ୍ୟ ସରକାର ଆତ୍ମନିଯୁକ୍ତି ନିମନ୍ତେ ଋଣ ଓ ରିହାତି ବ୍ୟବସ୍ଥା ସହ 'ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି ଯୋଜନା' ନାମକ ଏକ ଅଭିନବ ଯୋଜନା ପ୍ରଣୟନ କରିବାକୁ ଯାଉଛନ୍ତି । ରାଜ୍ୟରେ ଗଢି ଉଠୁଥିବା ଶିଳ୍ପାନୁଷ୍ଠାନଗୁଡିକରେ ଯୋଗ୍ୟତାଧାରୀ ସ୍ଥାନୀୟ ଯୁବକ ଯୁବତୀମାନଙ୍କ ନିଯୁକ୍ତି ଉପରେ ଗୁରୁତ୍ୱାରୋପ କରାଯାଉଛି । ଏତଦ୍‌ବ୍ୟତୀତ ଆଗାମୀ ୬ ମାସ ମଧ୍ୟରେ ବିଭିନ୍ନ ସରକାରୀ କାର୍ଯ୍ୟାଳୟରେ ୪୦,୦୦୦ ଯୁବକଯୁବତୀଙ୍କୁ ନିଯୁକ୍ତି ଦେବା ନିମନ୍ତେ ରାଜ୍ୟ ସରକାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ।

ସାମାଜିକ ସୁରକ୍ଷା ତଥା ସାମାଜିକ କ୍ଷେତ୍ରର ଯଥାଯଥ ବିକାଶ ଦିଗରେ ଆମ ରାଜ୍ୟ ଯଥୋଚିତ ଗୁରୁତ୍ୱ ଆରୋପ କରିଛି । ମଧୁବାବୁ ପେନ୍‌ସନ୍ ଯୋଜନା, ୧ ଟଙ୍କାରେ ୧କିଲୋ ଚାଉଳ ଯୋଗାଣ ଯୋଜନା, ମୋ' କୁଡିଆ, ବିଜୁ ଗ୍ରାମ ଜ୍ୟୋତି ଯୋଜନା, ବିଜୁ ସହରାଂଚଳ ବିଦ୍ୟୁତିକରଣ ଯୋଜନା ପରି ସ୍ୱତନ୍ତ୍ର କାର୍ଯ୍ୟକ୍ରମଗୁଡିକ ଆଜି ଆମ ରାଜ୍ୟର ବୃଦ୍ଧବୃଦ୍ଧାଙ୍କ ସମେତ ଅସହାୟ, ଗରିବ ଓ ଦୁର୍ବଳ ଶ୍ରେଣୀର ଜନସାଧାରଣଙ୍କ ମଧ୍ୟରେ ଆତ୍ମବିଶ୍ୱାସ ଆଣିଦେଇଛି । ସେହିପରି ଅନୁସୂଚିତ ଜାତି, ଜନଜାତି ଏବଂ ଦୁର୍ବଳ ବର୍ଗଙ୍କ ଜୀବନଧାରଣ ଏବଂ ଅଧିକାରର ସୁରକ୍ଷା ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯାଉଛି ।

ଗ୍ରାମ୍ୟ ଭିତ୍ତିଭୂମିର ବିକାଶ ନିମନ୍ତେ ରାଜ୍ୟ ସରକାର ସର୍ବାଧିକ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଏ ଦିଗରେ ରାଜ୍ୟର ପଛୁଆ ଓ ଦୁର୍ଗମ ଅଚଂଳଗୁଡିକର ସାମଗ୍ରିକ ବିକାଶ ନିମନ୍ତେ ଗୋପବନ୍ଧୁ ଗ୍ରାମୀଣ ଯୋଜନା, ବିଜୁ ସେତୁ ଯୋଜନା, ସିମେଣ୍ଟ କଂକ୍ରିଟ୍ ରାସ୍ତା ନିର୍ମାଣ ଯୋଜନା, ବିଜୁ କେବିକେ ଏବଂ ବିଜୁ କନ୍ଧମାଳ ଓ ଗଜପତି ଯୋଜନା ପରି ଅନେକଗୁଡିଏ ଯୋଜନା କାର୍ଯ୍ୟକାରୀ ହେଉଛି । ଗ୍ରାମାଞ୍ଚଳ ଯୋଗାଯୋଗ ବ୍ୟବସ୍ଥାରେ ଉନ୍ନତି ଆଣିବାକୁ 'ମୁଖ୍ୟମନ୍ତ୍ରୀ ସଡକ ଯୋଜନା' କାର୍ଯ୍ୟକାରୀ କରାଯିବା ପାଇଁ ମଧ୍ୟ ରାଜ୍ୟ ସରକାର ଲକ୍ଷ୍ୟ ରଖିଛନ୍ତି ।

ମହିଳା ସଶକ୍ତିକରଣ ଦିଗରେ ଏକ ବଳିଷ୍ଠ ପଦକ୍ଷେପ ସ୍ୱରୂପ, ମହିଳାମାନଙ୍କର ସାମାଜିକ-ଅର୍ଥନୈତିକ ଅଭିବୃଦ୍ଧି ଲକ୍ଷ୍ୟରେ ରାଜ୍ୟ ସରକାର 'ମିଶନ୍ ଶକ୍ତି' କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରୁଛନ୍ତି । ଏହି ଯୋଜନା ଅଭୁତପୂର୍ବ ସଫଳତା ଲାଭ କରିବା ସହ ଏକ ଉତ୍ସାହଜନକ ସାମାଜିକ ପରିବେଶ ସୃଷ୍ଟି କରିଛି । ଏତଦ୍‌ବ୍ୟତୀତ ଗର୍ଭବତୀ ମହିଳା ଓ ପ୍ରସୂତି ମା'ମାନଙ୍କର ଉପଯୁକ୍ତ ଯତ୍ନ ଉଦ୍ଦେଶ୍ୟରେ 'ମମତା' ନାମକ ଏକ ଅଭିନବ ଯୋଜନା କାର୍ଯ୍ୟକାରୀ ହେଉଛି । ସଂପ୍ରତି ରାଜ୍ୟ ସରକାର ଏକ ସାମଗ୍ରିକ 'ବାଳିକା ଓ ମହିଳା ନୀତି' ପ୍ରଣୟନ କରିଛନ୍ତି, ଯେଉଁଥିରେ କି, ସମାନ ଭୂମ୍ୟାଧିକାର ସହିତ ନିମ୍ନ ଆୟ ବର୍ଗର ଘର ଡିହ ନଥିବା ମହିଳାମାନଙ୍କୁ ୪ ଡିସିମିଲ୍ ପରିମିତ ଘରଡିହ ମାଗଣାରେ ପ୍ରଦାନ, ଭିନ୍ନକ୍ଷମ ମହିଳାଙ୍କ ନିମନ୍ତେ ସ୍ୱତନ୍ତ୍ର ସହାୟତା ପ୍ୟାକେଜ୍, ପଂଚାୟତ ସ୍ତରରେ ମହିଳା ସଭା ଆୟୋଜନ, ପଲ୍ଲୀ ସଭା ଓ ଗ୍ରାମ ସଭାରେ ମହିଳାମାନଙ୍କ ଅଂଶଗ୍ରହଣ ବୃଦ୍ଧି କରାଇବା ସହିତ ବାଳିକା ଓ ମହିଳାମାନଙ୍କ ଉପରେ ବିଭିନ୍ନ ଅତ୍ୟାଚାର ସମେତ ମହିଳାମାନଙ୍କ ସଂପର୍କିତ ଅନ୍ୟାନ୍ୟ ସମସ୍ତ ପ୍ରସଙ୍ଗଗୁଡିକୁ ଆଲୋଚନା ନିମନ୍ତେ ସ୍ୱତନ୍ତ୍ର ଭାବରେ ଏହି ପଲ୍ଲୀ ସଭା ଓ ଗ୍ରାମ ସଭାରେ ଉପସ୍ଥାପନ କରାଯିବାର ବ୍ୟବସ୍ଥା ରହିଛି।

ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ସାମଗ୍ରିକ ଅଭିବୃଦ୍ଧି ଉପରେ ରାଜ୍ୟ ସରକାର ସର୍ବାଧିକ ଗୁରୁତ୍ୱ ଆରୋପ କରୁଛନ୍ତି । ଅଭିବୃଦ୍ଧି ସହ ସମୃଦ୍ଧି ହାସଲ ନିମନ୍ତେ ନିରବଚ୍ଛିନ୍ନ ପ୍ରୟାସ ଜାରି ରଖି ରାଜ୍ୟ ପ୍ରଗତି ପଥରେ ଆଗେଇ ଚାଲିଛି ।

ସ୍ୱାଧୀନତା ଦିବସ ପାଳନ ପବିତ୍ର ଅବସରରେ କଠିନ ଅଧ୍ୟବସାୟ ସହ ଓଡିଶାକୁ ଦେଶର ଏକ ଦ୍ରୁତ ପ୍ରଗତିଶୀଳ ରାଜ୍ୟରେ ପରିଣତ କରିବା ପାଇଁ ଆସନ୍ତୁ, ଆମେ ସମସ୍ତେ ମିଳିତଭାବେ ଶପଥ ନେବା ।

**ଜୟ ହିନ୍ଦ୍ ।**

*ସ୍ୱାଧୀନତା ଦିବସ -୨୦୧୪ ଅବସରରେ*

## ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ

# ଶ୍ରୀ ନବୀନ ପଟ୍ଟନାୟକଙ୍କ

# ବାର୍ତ୍ତା



ସ୍ୱାଧୀନତା ଦିବସ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ଏହି ପବିତ୍ର ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ପଣ୍ଡିତ ନେହେରୁ, ମୌଲାନା ଆଜାଦ, ଡକ୍ଟର ବି.ଆର୍. ଆମ୍ବେଦକର, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ଶହୀଦ ଲକ୍ଷ୍ମଣ ନାଏକ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମା' ରମା ଦେବୀ, ଡକ୍ଟର ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ପରି ମହାନ ସଂଗ୍ରାମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶ ପାଇଁ ସଂଗ୍ରାମ କରିଯାଇଥିବା ଅମର ଶହୀଦମାନଙ୍କ ପ୍ରତି ମଧ୍ୟ ଏହି ଅବସରରେ ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଭାରତର ସ୍ୱାଧୀନତା ସଂଗ୍ରାମ ଥିଲା ଏକ ଆଦର୍ଶ ସଂଗ୍ରାମ । ମୂଲ୍ୟବୋଧ ଥିଲା ଏହାର ଆଧାର । କେବଳ ରାଜନୈତିକ ସ୍ୱାଧୀନତା ନୁହେଁ, ଏକ ନ୍ୟାୟପୂର୍ଣ୍ଣ ସମାଜ ଓ ସମୃଦ୍ଧ ଭାରତ ଥିଲା ଆମ ସଂଗ୍ରାମର ଲକ୍ଷ୍ୟ ।

ସ୍ୱାଧୀନତା ପରେ ଦେଶ ତଥା ଆମ ରାଜ୍ୟ ଓଡ଼ିଶା ବିଭିନ୍ନ କ୍ଷେତ୍ରରେ ପ୍ରଗତି କରିଛି । କୃଷି, ଶିକ୍ଷା, ସ୍ୱାସ୍ଥ୍ୟସେବା, ଭିତ୍ତିଭୂମି ଓ ଶିଳ୍ପର ବିକାଶ ଏବଂ ନିଯୁକ୍ତିର ନୂଆ ନୂଆ ସୁଯୋଗ ଉପରେ ଗୁରୁତ୍ୱ ଦେଇ ବିଭିନ୍ନ କାର୍ଯ୍ୟକ୍ରମ ଜାରି ରହିଛି । ଏହା ସହିତ ସାମାଜିକ କ୍ଷେତ୍ରର ବିକାଶ ଏବଂ ସମାଜର ଦୁର୍ବଳ ଓ ଅବହେଳିତ ବର୍ଗର ବିକାଶ ଓ କଲ୍ୟାଣ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯାଉଛି । କୃଷି ଓଡ଼ିଶାର କୋଟି କୋଟି ଲୋକଙ୍କୁ ଜୀବିକା ଯୋଗାଇଛି । ଏହା ଆମ ଅର୍ଥନୀତିର ଜୀବନରେଖା । ତେଣୁ କୃଷି କ୍ଷେତ୍ରରେ ବିକାଶକୁ ତ୍ୱରାନ୍ୱିତ କରିବା ପାଇଁ ନୂତନ କୃଷି ବଜେଟ କାର୍ଯ୍ୟକାରୀ କରାଯାଉଛି । ଚାଷୀଙ୍କ କଲ୍ୟାଣ ପାଇଁ ବିଭିନ୍ନ ଯୋଜନା ହାତକୁ ନିଆଯାଇଛି । ଜଳସେଚନ ସୁବିଧାର ପ୍ରସାର ପାଇଁ ସମୟବଦ୍ଧ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଛି । କୃଷି କ୍ଷେତ୍ରରେ ଅଭିବୃଦ୍ଧି କେବଳ ଗାଁର ନୁହେଁ, ଏହା ସାରା ରାଜ୍ୟର ଅର୍ଥନୀତିକୁ ମଜବୁତ କରିବ ।

ବିକାଶ ଆଜି କେବଳ ବଡ ବଡ ସହରରେ ନୁହେଁ, ବିକାଶର ସଫଳ ଧାରା ଆଜି ଗାଁରେ ମଧ୍ୟ ପରିବର୍ତ୍ତନ ଆଣିଛି । ପିଇବା ପାଣି ଓ ବିଜୁଳି ପରି ମୌଳିକ ସୁବିଧାର ବିକାଶ କରି ସବୁ ଗାଁକୁ ଆଦର୍ଶ ଗ୍ରାମରେ ପରିଣତ କରିବା ଆମର ଲକ୍ଷ୍ୟ ।

ପଛୁଆ ଅଞ୍ଚଳର ବିକାଶ ତଥା ଆଦିବାସୀ, ଦଳିତ ଓ ସଂଖ୍ୟାଲଘୁ ଭାଇଭଉଣୀଙ୍କ କଲ୍ୟାଣ ପାଇଁ ସରକାର ସ୍ୱତନ୍ତ୍ର ଗୁରୁତ୍ୱ ଦେଇ କାମ କରୁଛନ୍ତି ।

ମହିଳାମାନେ ଆଜି ସାମାଜିକ ବିକାଶ କ୍ଷେତ୍ରରେ ନୂଆ ଯୁଗର ଆରମ୍ଭ କରିଛନ୍ତି । ମିଶନ ଶକ୍ତି କାର୍ଯ୍ୟକ୍ରମ ଜରିଆରେ ଲକ୍ଷ ଲକ୍ଷ ମହିଳା ରାଜ୍ୟରେ ଏକ ନୀରବ ବିପ୍ଳବ ଆଣିବାରେ ସଫଳ ହୋଇପାରିଛନ୍ତି । ମହିଳାମାନଙ୍କ ଅଧିକାର, ସୁରକ୍ଷା, ଜୀବନଜୀବିକା ତଥା ପ୍ରତିଭାର ବିକାଶକୁ ଗୁରୁତ୍ୱ ଦେଇ ରାଜ୍ୟ ସରକାର ଏକ ନୂତନ ବାଳିକା ଓ ମହିଳା ନୀତି କାର୍ଯ୍ୟକାରୀ କରିବାକୁ ଯାଉଛନ୍ତି । ମହିଳା ସଶକ୍ତିକରଣ କ୍ଷେତ୍ରରେ ଏହା ଏକ ମାଇଲଷ୍ଟୋନ ହେବ ।

ଯୁବ ଶକ୍ତି ଦେଶର ଶ୍ରେଷ୍ଠ ସମ୍ପଦ । ସେମାନଙ୍କ ଦକ୍ଷତା ଓ ପ୍ରତିଭା ଦ୍ୱାରା ଦେଶର ଭବିଷ୍ୟତ ଗଢାଯାଇଥାଏ । ତେଣୁ ଦେଶ ଗଠନରେ ଯୁବଶକ୍ତିର ଭୂମିକାକୁ ଗୁରୁତ୍ୱ ଦେଇ ରାଜ୍ୟ ସରକାର ନୂତନ ଯୁବନୀତି କାର୍ଯ୍ୟକାରୀ କରୁଛନ୍ତି । ଆମର ଯୁବ ସମାଜ ଏହାର ସୁଯୋଗ ନେବା ଉଚିତ ।

ବର୍ଷା, ବନ୍ୟା, ବାତ୍ୟା ପରି ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାରେ ସବୁବେଳେ ଲାଗି ରହିଛି । ଏହିସବୁ ବିପତ୍ତିରେ ହଜାର ହଜାର କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହେଉଛି । ବିକାଶ ଉପରେ ଏହାର ପ୍ରଭାବ ରହୁଛି । ସାଧାରଣ ଲୋକଙ୍କର ଅର୍ଥନୈତିକ ଅବସ୍ଥା ଉପରେ ମଧ୍ୟ ଏହାର ଗଭୀର ପ୍ରଭାବ ରହୁଛି । ତେଣୁ ଆମ ଅର୍ଥନୀତିର ବହୁମୁଖୀକରଣ ଆଜି ଜରୁରୀ । ଏଥିପାଇଁ କୃଷିଭିତ୍ତିକ ଶିଳ୍ପଠାରୁ ଆରମ୍ଭ କରି ବୃହତ ଶିଳ୍ପ ଓ ଆନୁଷଙ୍ଗିକ ଶିଳ୍ପ ବିକାଶ ଉପରେ ଆମେ ଗୁରୁତ୍ୱ ଦେଉଛୁ । ପୁଞ୍ଜିନିବେଶ କ୍ଷେତ୍ରରେ ଓଡ଼ିଶା ସାରା ଦେଶରେ ଏକ ଆଗୁଆ ରାଜ୍ୟ । ତେଣୁ ରାଜ୍ୟର ଶିଳ୍ପ ବିକାଶ ଦ୍ୱାରା ନିଯୁକ୍ତିର ନୂଆ ନୂଆ ସୁଯୋଗ ଆସିବ, ଅର୍ଥନୈତିକ କାର୍ଯ୍ୟକ୍ରମ ବଢ଼ିବ ଏବଂ ଅର୍ଥନୀତିର ଭିତ୍ତି ମଜବୁତ ହୋଇପାରିବ ।

ବିକାଶ ହେଉଛି ଏକ ସାମୂହିକ ଉଦ୍ୟମ । ସମସ୍ତଙ୍କ ସହଯୋଗ ଜରିଆରେ ହିଁ ଆମେ ଏହା ହାସଲ କରିପାରିବା । ସହଯୋଗ ଓ ବିଶ୍ୱାସ ହେଉଛି ଗଣତନ୍ତ୍ରର ଭିତ୍ତି । ଗାଁରୁ ସହର, କୋରାପୁଟରୁ କଟକ ଏବଂ ମାଲକାନଗିରିରୁ ମୟୂରଭଞ୍ଜ ସବୁ ଅଞ୍ଚଳର ବିକାଶ ଆଜି ଗଣତନ୍ତ୍ର ପ୍ରତି ଆସ୍ଥାକୁ ମଜବୁତ କରିଛି । ଆସନ୍ତୁ, ସମସ୍ତଙ୍କ ସହଯୋଗରେ ବିକାଶର ରଥକୁ ଆଗେଇନେବା ଏବଂ ଓଡ଼ିଶାର ଗୌରବ ବଢାଇବା ପାଇଁ କାମ କରିଚାଲିବା ।

**ଜୟ ହିନ୍ଦ୍ ।**

*ସ୍ୱାଧୀନତା ଦିବସ -୨୦୧୪ ଅବସରରେ*

ଓଡ଼ିଶାର ମାନ୍ୟବର ସୂଚନା ଓ ଲୋକ ସଂପର୍କ ଏବଂ

ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀ



## ଶ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ

## ବାର୍ତ୍ତା

୬୮ତମ ସ୍ୱାଧୀନତା ଦିବସ ଅବସରରେ ଓଡ଼ିଶାବାସୀ ସମସ୍ତ ଭାଇ ଭଉଣୀମାନଙ୍କୁ ମୁଁ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

୧୫ ଅଗଷ୍ଟ, ଆମ ସମସ୍ତଙ୍କ ପାଇଁ ଗର୍ବ ଓ ଗୌରବର ଦିବସ । ଆମର ପୂର୍ବସୂରୀମାନେ ଏ ଦେଶକୁ ବିଦେଶୀମାନଙ୍କ କବଳରୁ ମୁକ୍ତ କରିବା ପାଇଁ ଅହିଂସାକୁ ଅସ୍ତ୍ର କରି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ଆଜିର ପବିତ୍ର ଦିବସ ଅବସରରେ ସେହି ମୁକ୍ତିକାମୀ ମହାପୁରୁଷମାନଙ୍କ ବଳିଦାନକୁ ସମସ୍ତେ ସ୍ମରଣ କରିବା ।

ଆସନ୍ତୁ, ଜାତି, ଧର୍ମ ନିର୍ବିଶେଷରେ ଏକତ୍ରିତ ହୋଇ ମୁକ୍ତି ସଂଗ୍ରାମରେ ନିଜ ଜୀବନକୁ ମାତୃଭୂମି ପାଇଁ ଉତ୍ସର୍ଗ କରିଥିବା ପୂର୍ବସୂରୀମାନଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସହ ଏ ଦେଶକୁ ସମୃଦ୍ଧ, ଉନ୍ନତ ରାଷ୍ଟ୍ରରେ ପରିଣତ କରିବା ତାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ ଶପଥ ନେବା ।

**ଜୟ ହିନ୍ଦ୍ ।**

# ସମ୍ପାଦକୀୟ




ସ୍ୱାଧୀନତା ଅମୂଲ୍ୟ । ଆମେ ସମସ୍ତେ ସ୍ୱାଧୀନ ଭାବେ ବଞ୍ଚିବା ପାଇଁ ଭଲପାଉ । ଆଉ କିଛି ଦିନ ପରେ ଆମେ ସମସ୍ତେ ପାଳନ କରିବା ଆମ ସ୍ୱାଧୀନତା ଦିବସ । ଏହି ପବିତ୍ର ଦିନରେ ଭରି ରହିଥାଏ ପ୍ରତ୍ୟେକ ଭାରତୀୟଙ୍କ ହୃଦୟରେ ଭାରତୀୟତା । 'ବନ୍ଦେ ମାତରମ୍' ଓ 'ଜନଗଣ ମନ'ରେ ପ୍ରକମ୍ପିତ ହୋଇଉଠେ ସମଗ୍ର ଭାରତବର୍ଷ । ଆମେ ସମସ୍ତେ, ସ୍ୱାଧୀନତାର ପ୍ରତୀକ ଆମର ଜାତୀୟ ପତାକା ତଳେ ଏକତ୍ରିତ ହୋଇ, ଜାତୀୟ ସଙ୍ଗୀତ ଗାନ କରିବା ସହ ଜାତୀୟତାର ମହାମନ୍ତ୍ରରେ ଉଦ୍‌ବୁଦ୍ଧ ହେଉ ।

ଏକ ସ୍ୱାଧୀନ ଦେଶ ରୂପେ ଆମେ ଆଉ ଗୋଟିଏ ବର୍ଷ ଅତିକ୍ରମ କରିସାରିଛେ । ସମୟକ୍ରମେ ଆଜି ଆମେ ଆମ ଦେଶର ୬୮ତମ ସ୍ୱାଧୀନତା ଦିବସ ପାଳନ କରୁଛେ । ସ୍ୱାଧୀନତା ଦିବସ ପରି ଗୁରୁତ୍ୱପୂର୍ଣ୍ଣ ଜାତୀୟ ଉତ୍ସବ ପାଳନ, ଆମକୁ ଅତୀତ ସମ୍ପର୍କରେ ଅବଲୋକନ କରିବାକୁ ଆହ୍ୱାନ ଦେଇଥାଏ ଏବଂ ଭବିଷ୍ୟତରେ ନିଜକୁ ପ୍ରସ୍ତୁତ କରିବା ନିମନ୍ତେ ଏକ ଅବସର ମଧ୍ୟ ପ୍ରଦାନ କରିଥାଏ । ଏଣୁ, ଆମେ ଆଜିର ଏହି ଶୁଭ ଅବସରରେ, ଆମ ଦେଶର ସ୍ୱାଧୀନତା ପାଇଁ ଯେଉଁମାନେ ଅନେକ ଦୁଃଖ କଷ୍ଟ ସହିଛନ୍ତି ଓ ଆତ୍ମ ବଳିଦାନ ଦେଇଛନ୍ତି, ସେମାନଙ୍କୁ ଶ୍ରଦ୍ଧାର ସହ ସ୍ମରଣ କରୁଛେ । ବର୍ତ୍ତମାନ ଏହା ଆମର ଦାୟିତ୍ୱ ଯେ, ଆମେ ଆମର ସ୍ୱାଧୀନତାକୁ ଆର୍ଥିକ ଏବଂ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ହାସଲ କରିବା ଏବଂ ଜାତୀୟ ସ୍ୱାର୍ଥକୁ ବଜାୟ ରଖିବା ନିମନ୍ତେ ନିଜକୁ ପୂର୍ଣ୍ଣ ମାତ୍ରାରେ ଉତ୍ସର୍ଗ କରିବା । ଆଜି ଆମେ ଅନେକ ସମସ୍ୟାର ସମ୍ମୁଖୀନ ହେଉଛେ ଏବଂ ଏହାର ସମାଧାନ ସକାଶେ ଚେଷ୍ଟାରତ ଅଛେ ।

ଏକ ଗୌରବମୟ ସାଂସ୍କୃତିକ ଐତିହ୍ୟକୁ ଆଧାର କରି, ଆମ ଦେଶ ବିଶ୍ୱର ଏକ ସର୍ବବୃହତ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଉଭା ହୋଇଥିଲା ବେଳେ, ଆମେ ବର୍ତ୍ତମାନ ସମୟର ଆହ୍ୱାନକୁ ସମ୍ମୁଖୀନ ହେବା ସହ ନିଜର ବଳିଷ୍ଠ ଭୂମିକାକୁ ସାବ୍ୟସ୍ତ କରିବାର ବେଳ ଉପନୀତ । ଏକନିଷ୍ଠ ସହଯୋଗ ବଳରେ, ଆମେ ଆମର ସମସ୍ତ ଦୁର୍ବଳତାକୁ ପରିତ୍ୟାଗ କରିବା ସହ ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ଭାବନାର ଉର୍ଦ୍ଧ୍ୱରେ ରହି ଉତ୍ସର୍ଗୀକୃତ ମନୋଭାବରେ ଦେଶ ତଥା ରାଜ୍ୟର ସର୍ବାଙ୍ଗୀନ ବିକାଶ ଦିଗରେ ଏକତ୍ର କାର୍ଯ୍ୟ କରିଚାଲିବା ।

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ବଳିଷ୍ଠ ନେତୃତ୍ୱରେ, ଆମ ରାଜ୍ୟ ସମସ୍ତ କ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି ହାସଲ କରିପାରିଛି ଏବଂ ଆମ ରାଜ୍ୟ ଓଡିଶାକୁ ଦେଶର ଏକ ସମୃଦ୍ଧ ରାଜ୍ୟରେ ପରିଣତ କରିବା ପାଇଁ ନିରବଚ୍ଛିନ୍ନ

ପ୍ରୟାସ ଜାରି ରହିଛି । ଦାରିଦ୍ର୍ୟ ହ୍ରାସ, ମୁଣ୍ଡ ପିଛା ଆୟ ବୃଦ୍ଧି ଏବଂ ଉଭୟ ଗ୍ରାମାଞ୍ଚଳ ଓ ସହରାଞ୍ଚଳ ଜନସାଧାରଣଙ୍କ ଜୀବନଧାରଣ ମାନରେ ଉନ୍ନତି ଆଣିବା ଲକ୍ଷ୍ୟରେ ବହୁବିଧ ଉନ୍ନୟନମୂଳକ କାର୍ଯ୍ୟକ୍ରମ ଚାଲୁରହିଛି । ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ସାମଗ୍ରିକ ଅଭିବୃଦ୍ଧି ଉପରେ ରାଜ୍ୟ ସରକାର ସର୍ବାଧିକ ଗୁରୁତ୍ୱ ଆରୋପ କରୁଛନ୍ତି ।

୧୯୩୬ ମସିହାରେ ଓଡିଶା ଏକ ସ୍ୱତନ୍ତ୍ର ରାଜ୍ୟ ରୂପେ ପରିଗଣିତ ହେବା ଦିନଠାରୁ ବାତ୍ୟା, ମରୁଡି ଓ ବନ୍ୟା ଆମର ଚିର ସହଚର ପାଲଟିଛି । ଏହି ବର୍ଷ ମଧ୍ୟ ବନ୍ୟା ପରିସ୍ଥିତି ଏକ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି କରିଥିଲା । ଏଣୁ, ରାଜ୍ୟ ସରକାର ପୂର୍ବ ପ୍ରସ୍ତୁତି ସହ ଏହି ପ୍ରାକୃତିକ ବିପର୍ଯ୍ୟୟକୁ ସମ୍ମୁଖୀନ ହେଉଛନ୍ତି । ମୁଁ ଯେଉଁ ସମୟରେ ମୋର ସମ୍ପାଦକୀୟ ଲେଖୁଛି, ଏହା ଭିତରେ ବନ୍ୟାଜଳ କ୍ଷତିଗ୍ରସ୍ତ ଅଞ୍ଚଳରୁ ଧୀରେ ଧୀରେ କମିବାରେ ଲାଗିଛି ଏବଂ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ବିଭିନ୍ନ ନଦୀରେ ସୃଷ୍ଟ ଘାଇଗୁଡିକୁ ଯଥାଶୀଘ୍ର ମରାମତି କରିବା ନିମନ୍ତେ ନିର୍ଦ୍ଦେଶ ଦେବା ସହ ବନ୍ୟା କ୍ଷତିଗ୍ରସ୍ତ ଅଞ୍ଚଳରେ ରିଲିଫ୍ ଓ ପୁନର୍ବିନ୍ୟାସ କାର୍ଯ୍ୟ ଜାରି ରଖିବା ଏବଂ ପରିମଳ, ପାନୀୟ ଜଳ ଯୋଗାଣ ଓ ସ୍ୱାସ୍ଥ୍ୟ ସେବା ଯୋଗାଇଦେବା ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

ଆସନ୍ତୁ, ଆମେ ସମସ୍ତେ ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ସ୍ୱାର୍ଥର ଊର୍ଦ୍ଧ୍ୱରେ ରହି, ଏକ ବିକଶିତ ଓଡିଶା ଗଠନ ଦିଗରେ ଅଗ୍ରସର ହେବା । ଶୃଙ୍ଖଳା, ସଜ୍ଜମତା ରକ୍ଷା ଏବଂ କଠିନ ପରିଶ୍ରମ ଦ୍ୱାରା, ଆମେ ଆମର ଲକ୍ଷ୍ୟ ପୂରଣ କରିପାରିବା, କାରଣ ଆମ ଦେଶର ଭାଗ୍ୟ ଆମ ହାତରେ ।

**ଜୟ ହିନ୍ଦ୍ ।**



**ସମ୍ପାଦକ**

# ସ୍ୱାଧୀନତା ସଂଗ୍ରାମ ଓ ଭାରତବର୍ଷ

ସୁପ୍ରଭା ମିଶ୍ର

'କହ କେଉଁ ଜାତି ପାଇଛି ମୁକତି
କରି ହାରି-ହୁରି-ଗୁହାରି ।'

ଏହା ଥିଲା ସଂଗ୍ରାମୀ କବିର କଣ୍ଠରୁ ସ୍ଫୁରିଥିବା ଆବାହନୀ ମନ୍ତ୍ର । କେବେ ହେଲେ କେଉଁ ଜାତି କରୁଣ କାକୁତି ବାଢ଼ି ନିଜ ଦେଶର ସ୍ୱାଧୀନତା ରୂପକ ପରମ ସମ୍ପଦ ଲାଭ କରି ନାହିଁ । ସ୍ୱାଧୀନତା ଏକ କଷ୍ଟଲବ୍ଧ ସମ୍ପଦ, ଯାହାର ଅନ୍ତରାଳରେ ରହିଛି କେତେ ଗଣହତ୍ୟା, କେତେ ରକ୍ତପାତ, କେତେ ଲୁଣ୍ଠନ ଓ କେତେ କେତେ ନରଦମନର ନାରକୀୟ ବିଭତ୍ସତା । ସ୍ୱାଧୀନତା ଜାତୀୟ ଜୀବନକୁ ଦୃଢ଼ ଓ ବଳିଷ୍ଠ କରେ, ଜାତୀୟ ଐକ୍ୟ ଓ ସଂଗ୍ରାମର ଆହ୍ୱାନ ନେଇ ସ୍ୱାଧୀନତା ଆସେ ।

ସୁଜଳା-ସୁଫଳା-ଶସ୍ୟ-ଶ୍ୟାମଳା ସ୍ୱର୍ଣ୍ଣପ୍ରସୂ ଭାରତବର୍ଷର ଐଶ୍ୱର୍ଯ୍ୟରେ ପ୍ରଲୁବ୍ଧ ହୋଇ ବିଦେଶୀ ବଣିକ ଗୋଷ୍ଠୀ ସାତଦରିଆ ସେପାରିରୁ ବାଣିଜ୍ୟ-ପୋତ ମେଲି ଦେଲେ । ଦୁର୍ଭାଗ୍ୟ-ପୀଡ଼ିତ ଭାରତମାତାର ବୀର ସନ୍ତାନମାନେ ପରସ୍ପର ଆଭ୍ୟନ୍ତରୀଣ ଯୁଦ୍ଧରେ ପ୍ରମତ୍ତ ଥିବାବେଳେ ବଣିକ ଇଂରେଜମାନେ ଆରମ୍ଭ କରିଦେଲେ ରାକ୍ଷସୀମାୟା । ବ୍ୟବସାୟ ଛଳରେ ଶଠ ଚତୁର ଇଂରେଜ ଜାତି ଭାରତର ଶାସନ ଡୋରି ଭିଡ଼ି ଧରିଲେ । ଶାସନ ନାମରେ ଶୋଷଣ ଓ ଅତ୍ୟାଚାରର ପୈଶାଚିକ ନାଟକର ଅୟମାରମ୍ଭ ହେଲା । ଶୌର୍ଯ୍ୟମୟୀ ଭାରତଭୂମିର ସ୍ୱାଧୀନତା ଛିନ୍ନ ହେଲା ।

ବ୍ରିଟିଶ୍ ଇଷ୍ଟଇଣ୍ଡିଆ କମ୍ପାନୀର ଧୂର୍ତ୍ତ କ୍ଲାଇବ୍‌ଙ୍କ ଚାତୁର୍ଯ୍ୟ ଓ ଶଠତାରେ ବଶୀଭୂତ ହୋଇ ଦେଶଦ୍ରୋହୀ ମୀର୍ଜାଫର୍ କ୍ଷମତା ନିଶାରେ ପାଗଳ ହେଲେ । ହତଭାଗ୍ୟ ସିରାଜ ଉଦ୍ଦୌଲ୍ଲାଙ୍କ ଦେଶପ୍ରୀତି ଭୂଲୁଣ୍ଠିତ ହେଲା । ଆରମ୍ଭ ହେଲା ପଲାସୀ ଯୁଦ୍ଧ । ୧୮୫୭ର ଏହି ସମର ଭାରତ ପାଇଁ ଚରମ ଦୁର୍ଭାଗ୍ୟ ଡାକି ଆଣିଲା । ଶଠ କ୍ଲାଇବ୍‌ଙ୍କ ଦ୍ୱୈତ ଶାସନ ଭାରତୀୟଙ୍କ ଭାଗ୍ୟାକାଶରେ କଳାବାଦଲ ଢାଙ୍କି ଦେଲା । ଏତଦ୍‌ବ୍ୟତୀତ ଚିରସ୍ଥାୟୀ ବନ୍ଦୋବସ୍ତ, ସୂର୍ଯ୍ୟାସ୍ତ ଆଇନ୍ ବଳରେ ବିଦେଶୀ ଶାସକମାନେ ଏ ଦେଶର ବ୍ୟକ୍ତିମାନଙ୍କୁ କ୍ରମେ ପଙ୍ଗୁ ଓ କ୍ଷମତାହୀନ କରି ପକାଇଲେ । ଇଂରେଜମାନଙ୍କର କ୍ରମାଗତ ଅତ୍ୟାଚାର, ଶାସନ, ଶୋଷଣ ଭାରତୀୟ ସିପାହୀମାନଙ୍କ ପକ୍ଷରେ ଅତି ଅସହ୍ୟ ହୋଇ ଉଠିଲା । ସେମାନଙ୍କ ରୁଦ୍ଧ ଅସନ୍ତୋଷର ଆଦ୍ୟବିସ୍ଫୋରଣ ସ୍ୱରୂପ ସିପାହୀ ବିଦ୍ରୋହ ମୁଣ୍ଡ ଟେକିଲା । ଏହା ହେଉଛି ପ୍ରଥମ ସ୍ୱାଧୀନତା ସମର । ଏଥିରେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ, ନାନାସାହେବ, ତାନ୍ତିଆତୋପେ ପ୍ରମୁଖ ପ୍ରଥମେ ଦେଶପ୍ରେମ ବହ୍ନିର ମଶାଲ ଜାଳିଲେ । ଦୁର୍ଭାଗ୍ୟବଶତଃ ସମନ୍ୱୟ ଅଭାବରୁ ଏହି ବିଦ୍ରୋହ ବିଫଳ ହେଲା ସତ, ମାତ୍ର ଦୁର୍ଦ୍ଧର୍ଷ ଭାରତୀୟ ଶକ୍ତିର ପ୍ରଥମ ସିଂହନାଦକୁ ଧୂର୍ତ୍ତ ଇଂରେଜ ଜାତି ଭୟ କଲା ।

ଲର୍ଡ ଉଇଲିୟମ୍ ବେଣ୍ଟିକ୍‌ଙ୍କ ଶାସନ କାଳରେ ଏହି ଭାରତ ମାଟିରେ ନବଜାଗରଣର ନୂତନ ସୂର୍ଯ୍ୟ ଉଇଁ ଆସିଲେ । ରାଜା ରାମମୋହନ ରାୟ, ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ ଆଦି ନବ ସଂସ୍କାରବାଦୀ ଚେତନାର ଆଲୋକ ଭାରତୀୟ ଜନମାନସରେ ଜମାଟ ବାନ୍ଧିଥିବା କୁସଂସ୍କାର ଜନିତ ଅନ୍ଧକାରକୁ ଦୂରେଇ ଦେଲା । ଭାରତରେ ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତା ନୂଆ ଜାଗରଣ ଆଣି ଦେଲା । ନବ୍ୟ ଶିକ୍ଷିତ ଭାରତବାସୀ ଜାତୀୟତାର ମହାମନ୍ତ୍ରରେ ଉଦ୍‌ବୁଦ୍ଧ ହେଲେ । ଦାସତ୍ୱର ବନ୍ଧନରୁ ମୁକୁଳିବା ପାଇଁ ସେମାନଙ୍କ ମନରେ ଦୃଢ଼ ପ୍ରତ୍ୟୟ ସୃଷ୍ଟି ହେଲା ।

ବିନ୍ଦୁ ବିନ୍ଦୁ ଜଳ ମିଶି ମହାସିନ୍ଧୁ ସୃଷ୍ଟି ହେଲାପରି ଏକ ଏକ ବ୍ୟକ୍ତିର ସମଷ୍ଟିରେ ଜାତି ସମୃଦ୍ଧ ହୁଏ । ପରାଧୀନତା କବଳରୁ

ମୁକ୍ତି ପ୍ରୟାସୀ ସଚେତନ ଭାରତୀୟମାନେ ଏକ ଦୃଢ ଜାତୀୟ ଅନୁଷ୍ଠାନ ଗଠନର ଉପାୟ ଖୋଜୁଥିଲେ । ଏ ଦିଗରେ ଦ୍ୱାରକାନାଥ ଠାକୁର, ମହାଦେବ ଗୋବିନ୍ଦ ରାନାଡେ, ଦାଦାଭାଇ ନାରୋଜୀ ଓ ସୁରେନ୍ଦ୍ରନାଥ ବାନାର୍ଜୀ ଆଦି ପ୍ରମୁଖ ନେତାବୃନ୍ଦ କେତେକ ପଦକ୍ଷେପ ନେଇଥିଲେ । ସର୍ବଭାରତୀୟ ସ୍ତରରେ ଭାରତବନ୍ଧୁ ଏଲେନ୍ ଅକ୍ଟୋଭିଆନ୍ ହ୍ୟୁମ୍‌ଙ୍କ ସହାୟତାରେ ୧୮୮୫ ମସିହାରେ 'ଭାରତୀୟ ଜାତୀୟ କଂଗ୍ରେସ' ଗଠିତ ହେଲା ଏବଂ ଏହାର ଗମ୍ଭୀର ଧ୍ୱନି ସମସ୍ତଙ୍କୁ ପ୍ରଚୋଦିତ କଲା । ଫଳରେ ଭାରତବାସୀ ଐକ୍ୟବୋଧରେ ଉଦ୍‌ବୁଦ୍ଧ ହେଲେ । ଏହି ଭାରତୀୟ ଜାତୀୟ କଂଗ୍ରେସର ନେତୃତ୍ୱ ନେଲେ ଦାଦାଭାଇ ନାରୋଜୀ, ଫିରୋଜ ସାହା ମେହେଟ୍ଟା, ସୁରେନ୍ଦ୍ର ନାଥ ବାନାର୍ଜୀ, ମଦନମୋହନ ମାଳବ୍ୟ, ରାନାଡେ ଏବଂ ଗୋଖଲେ ଆଦି ନେତୃବୃନ୍ଦ ।

ଏହି ଭାରତୀୟ ସ୍ୱାଧୀନତା ସଂଗ୍ରାମ ରୂପକ ମହାନାଟକର ମହାନାୟକ ହେଲେ ମୋହନ ଦାସ କରମ ଚାନ୍ଦ ଗାନ୍ଧୀ । ସତ୍ୟ, ଅହିଂସା, ପ୍ରେମକୁ ନୀତି ଆଉ ଆଦର୍ଶ କରି ସେ ସେନାପତି ସାଜିଲେ । ବିଭିନ୍ନ ଆନ୍ଦୋଳନ, ସତ୍ୟାଗ୍ରହ ଇତ୍ୟାଦିର ସୂତ୍ରପାତ କରାଇ ଆକୁମାରୀ ହିମାଚଳ ପ୍ରଲମ୍ବିତ ଏକ ବିରାଟ ଜାତିକୁ ଐକ୍ୟବୋଧର ମହାମନ୍ତ୍ରରେ ଦୀକ୍ଷିତ କରାଇଲେ । ସ୍ୱଦେଶୀ ଆନ୍ଦୋଳନ, ଅସହଯୋଗ ଆନ୍ଦୋଳନ, ପଦଯାତ୍ରା, ଲବଣ ସତ୍ୟାଗ୍ରହ ଆରମ୍ଭ ହେଲାରୁ ବିଦେଶୀ ଶାସକ ଆରମ୍ଭ କଲେ ସେମାନଙ୍କ ଦମନଲୀଳା । ଜାଲିଓ୍ୱାନା ଓ୍ୱାଲାବାଗଠାରେ ନରସଂହାର ଦେଖାଦେଲା । ମାତ୍ର ଭାରତବାସୀ ବୁଝିଥିଲେ ଯେ ଜୀବନଠାରୁ ଅଧିକ ମୂଲ୍ୟବାନ ସମ୍ପଦ ହେଉଛି ସ୍ୱାଧୀନତା, ମୋହନ ଦାସଙ୍କର ଅହିଂସାମନ୍ତ୍ର ହିଂସାର ସଚଳ ତରବାରୀକୁ ଅଚଳ କରିଦେଲା । ଜବାହରଲାଲ ନେହେରୁ, ଲାଲ ଲଜପତ ରାୟ, ବିପିନ୍ ଚନ୍ଦ୍ର ପାଲ, ବାଲ ଗଙ୍ଗାଧର ତିଳକ ଆଦି ଜାତୀୟ ବୀରମାନଙ୍କ ଅଦମ୍ୟ ଉତ୍ସାହ ଓ ପ୍ରେରଣାରେ ଭାରତର ଗ୍ରାମରୁ ସହରଯାଏ ବ୍ୟାପିଗଲା ସେହି ଅହିଂସା ମନ୍ତ୍ରର ସାମସଂଗୀତ । କେତେକେତେ ଜାତୀୟବୀର ସ୍ୱାଧୀନତା– ଯଜ୍ଞର ଅଗ୍ନିରେ ପତଙ୍ଗ ପରି ଝାସ ଦେଲେ । ଗାନ୍ଧୀଙ୍କ ପ୍ରଜ୍ଞା ସହ ଯୁବକ ଜବାହରଲାଲଙ୍କ ଶ୍ରମ ସାଧନା ଓ ଉତ୍ସାହ ଏକେବାରେ ମିଶି ଗଲା ।

ସ୍ୱାଧୀନତା ସଂଗ୍ରାମର ଶେଷଦୃଶ୍ୟ ହେଉଛି ୧୯୪୨ ମସିହାର ଭାରତଛାଡ ଆନ୍ଦୋଳନ। ଏହାକୁ ଅଗଷ୍ଟ ବିପ୍ଳବ ଆନ୍ଦୋଳନ ମଧ୍ୟ କୁହାଯାଏ । ଗାନ୍ଧିଜୀଙ୍କ 'କର ବା ମର' ଆହ୍ୱାନ ଭାରତୀୟମାନଙ୍କ ମଧ୍ୟରେ ପ୍ରତିଧ୍ୱନିତ ହୋଇ ପ୍ରବଳ ପ୍ରଭାବ ପକାଇଲା । ୧୯୪୨ ଏପ୍ରିଲ ୨୨ରେ ମହାତ୍ମା ଗାନ୍ଧୀ ବ୍ରିଟିଶ ସରକାରଙ୍କୁ ଚିଠି ଲେଖିଲେ, ଇଂରେଜମାନେ ଭାରତଛାଡି ଚାଲିଯିବା ପାଇଁ । ଜୁଲାଇ ୧୪ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ଏକ ଗୁରୁତ୍ୱପୂର୍ଣ୍ଣ ବୈଠକ ଅନୁଷ୍ଠିତ ହୋଇ ବ୍ରିଟିଶ୍ ଶାସନର ଅବସାନ ଘଟିବା ଉଚିତ୍ ପ୍ରସ୍ତାବ ଗୃହୀତ ହେଲା । ଅଗଷ୍ଟ ୭ ତାରିଖରେ ବମ୍ବେଠାରେ ମୌଲାନା ଆବୁଲ କାଲାମ ଆଜାଦ୍‌ଙ୍କ ସଭାପତିତ୍ୱରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକରେ ଶାନ୍ତିପୂର୍ଣ୍ଣ ଭାରତଛାଡ ଆନ୍ଦୋଳନ ଉପରେ ଆଲୋଚନା ହେଲା । ଅଗଷ୍ଟ ୮ତାରିଖରେ ଜବାହରଲାଲ ନେହେରୁଙ୍କ ଦ୍ୱାରା ଆଗତ ଭାରତଛାଡ ପ୍ରସ୍ତାବ ବୈଠକରେ ଅନୁମୋଦିତ ହୋଇଥିଲା । ମାତ୍ର ଚତୁର ବ୍ରିଟିଶ ପୋଲିସ ଏହି ଖବର ପାଇ ଅଗଷ୍ଟ ୯ତାରିଖ ସକାଳୁ ମହାତ୍ମା ଗାନ୍ଧୀ ତଥା ଅନ୍ୟାନ୍ୟ ତୁଙ୍ଗ ନେତାମାନଙ୍କୁ ଗିରଫ କରିନେଲେ । ଏହି ବିପ୍ଳବକୁ ଦମନ କରିବା ପାଇଁ ବ୍ରିଟିଶ ସରକାରଙ୍କ ବିଭିନ୍ନ ଉପାୟ ପାଣିଫାଟି ଯାଇଥିଲା । ୧୮୫୭ର ସିପାହୀ ବିଦ୍ରୋହଠାରୁ ଏହା ଅଧିକ ବଡଧରଣର ବୋଲି ବ୍ରିଟିଶ ସରକାର ମନେକଲା ଓ ଏହା ନିଆଁ ପରି ଭାରତସାରା ବ୍ୟାପି ଯାଇ ଏକ ବିରାଟ ଗଣ ଆନ୍ଦୋଳନ ରୂପେ ମୁଣ୍ଡ ଟେକିଲା ।

ଏହି ଆନ୍ଦୋଳନରେ ଓଡ଼ିଶା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ବିଶ୍ୱନାଥ ଦାସ, ଗୋପବନ୍ଧୁ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ରାଧାନାଥ ରଥ, ଉମାଚରଣ ପଟ୍ଟନାୟକ, ସାରଙ୍ଗଧର ଦାସ, ରବିନ୍ଦ୍ର ମୋହନ ଦାସ, ନବକିଶୋର ଦାସ, ନିତ୍ୟାନନ୍ଦ ମହାପାତ୍ର, ନୀଳମଣି ରାଉତରାୟ, ଯଦୁମଣି ମଙ୍ଗରାଜ ପ୍ରଭୃତି ବିଶିଷ୍ଟ ନେତାମାନେ କାରାବରଣ କରିଥିଲେ । କେତେ କାରାବାସ, କେତେ ରକ୍ତପାତ, କେତେ ବୁକୁଫଟା ଚିତ୍କାର, କେତେ ବର୍ବର ଆଚରଣ ଭିତରେ ବ୍ରିଟିଶ୍ ରାଜତନ୍ତ୍ରର ସଞ୍ଜ ନଇଁ ଆସୁଥିଲା । ବୀରତ୍ୱ–ଶାନ୍ତି–ସମୃଦ୍ଧିର ତ୍ରିରଙ୍ଗା ବାନା ଭାରତର ମୂର୍ଖ–ଶିକ୍ଷିତ, ଧନୀ–ଦରିଦ୍ର, ଛାତ୍ର–ଶିକ୍ଷକ, ରାଜା–ପ୍ରଜା, ସ୍ତ୍ରୀ–ପୁରୁଷ ସମସ୍ତଙ୍କୁ ଉନ୍ମାଦ କରିଥିଲା । ଦେଶ ଭିତରେ ସ୍ୱାଧୀନତା ପ୍ରାପ୍ତି ପାଇଁ ଆନ୍ଦୋଳନ, ଦେଶ ବାହାରେ ବହିଃ ରାଷ୍ଟ୍ରଙ୍କ ଚାପ ଆଗରେ ବ୍ରିଟିଶ୍ ରାଜତନ୍ତ୍ରର ଅବସାନ ଅବଶ୍ୟମ୍ଭାବୀ ଥିଲା ।

ଅଗଷ୍ଟ ବିପ୍ଳବ ଆରମ୍ଭ ହେବାର ମାତ୍ର ପାଞ୍ଚବର୍ଷ ଭିତରେ ୧୯୪୭ ମସିହା ଅଗଷ୍ଟ ୧୪ ମଧ୍ୟରାତ୍ରରେ ପ୍ରତିଟି ଭାରତୀୟ ମନରେ ଉତ୍ସବର ଆନନ୍ଦ ଖେଳିଗଲା । ଭାରତ ସ୍ୱାଧୀନ ହେଲା । ଅଗଷ୍ଟ ୧୫ ତାରିଖ ଦିନ ଉଇଁ ଆସିଥିବା ସୂର୍ଯ୍ୟରଶ୍ମିରେ ନୂତନ ଶକ୍ତି, ଉତ୍ସାହ, ନିତ୍ୟପ୍ରେରଣା ଭରି ରହିଥିଲା । ଘରେ ଘରେ

ସ୍ୱାଧୀନତାର ସୁମିଷ୍ଟ ସ୍ୱାଦ, ଶୁଭଶଙ୍ଖନାଦ, ତ୍ରିରଙ୍ଗାର ପୂଜା ଓ ପ୍ରତ୍ୟେକଙ୍କ ମନରେ ଅସୁମାରୀ ଆଶା ଉଦ୍ଦୀପନା । ସେହି ଦିନଠାରୁ ଅଗଷ୍ଟ ୧୫ ତାରିଖକୁ ଭାରତବର୍ଷର ନରନାରୀ ସ୍ୱାଧୀନତା ଦିବସ ରୂପେ ପାଳନ କରି ଆସୁଛନ୍ତି ।

କ୍ରମାଗତ ଏକତାବଦ୍ଧ ଅଧ୍ୟବସାୟ, ଅଗାଧ ଦେଶପ୍ରେମ, ଗଭୀର ନିଷ୍ଠା, ଘନିଷ୍ଠ ଜାତୀୟତାବୋଧରେ ଉଦ୍‌ବୁଦ୍ଧ ଭାରତବାସୀ ବହୁ ଆକାଙ୍‌କ୍ଷିତ ସ୍ୱାଧୀନତା ଭଳି ମହାର୍ଘ ସମ୍ପଦ ଲାଭ କରିଛନ୍ତି । ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ସାରା ବିଶ୍ୱରେ ଭାରତ ନିଜର ସମ୍ମାନ ରକ୍ଷା କରିଅଛି । ଆଜି ସେହି ସ୍ୱାଧୀନତାକୁ ସତଷଠି ବର୍ଷ, ସେ ଆଉ ଶିଶୁ ହୋଇ ନାହିଁ । ଦେଶ ପାଳୁଛି ସ୍ୱାଧୀନତା ଉତ୍ସବ ଓ ଭାରତମାତାର ଜୈତ୍ରୀଗାନରେ ଗଗନ-ପବନ ମୁଖରିତ । ଏହି ମୁଖରତା ଚିରନ୍ତନ ହେଉ, ଏ ସ୍ୱାଧୀନତା ଅକ୍ଷୟ ରହୁ, ପ୍ରତିଟି ଭାରତୀୟ ଜାତୀୟତାର ସମଗାନରେ ଘୋଷଣା କରୁ- 'ଭାରତ ମାତାର ଜୟ' ।

ପ୍ରାଧ୍ୟାପିକା,
ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟ, ଭୁବନେଶ୍ୱର

# ସ୍ୱାଧୀନତା

ରକ୍ଷକ ନାୟକ

ଆମେ ପହଂଚିଲା ବେଳକୁ
ପବନ କମି ନଥିଲା କି ଅଂଧାର
ଦୀପଟିଏ ଜଳୁଥିଲା କେବଳ ।

ପବନର ଆସକ୍ତ ଆକ୍ରମଣରେ
ନା ଲିଭି ପାରୁଥିଲା
ନା ନିଜେ କେବଳ
ଆଲୋକିତ ହେବା ବ୍ୟତୀତ
ଅଧିକ ଆଲୋକ ଦେଇ ପାରୁଥିଲା ।

ଅଥଚ ଆମେ ଏଇ ଦୀପକୁ ଦେଖି
ସମୁଦ୍ର ମଝିରେ ନିଜ ନିଜ ଦ୍ୱୀପ ତ୍ୟାଗ କରି
ଏକାଠି ହେବାକୁ ଆସିଥିଲୁ
ଆଲୁଅ ନ ମିଳୁ ପଛେ କେ
ଯେ ଦୀପଟିଏ ଜାଳିଥିଲା
ନିଜ ନିଜ କଳ୍ପନାରେ ତା'ର ପ୍ରତିମୂର୍ତ୍ତି ଗଢି
ପୂଜାର୍ଚ୍ଚନାରେ ମଗ୍ନ ରହିଲୁ ।

ଇତିହାସକାରର କଲମ ମୁନରେ
ଶୁଖିଲା କାଳି ବିନ୍ଦୁ ପରି
ଆମେ କିଛି ବୁଝି ପାରୁ ନଥିଲୁ
ପୁରୁଣା ଚିରା ଖଦୀ ଲୁଗାରେ
ଶୁଖିଲା ରକ୍ତ ବିଂନ୍ଦୁଟେ ଦେଖି
କଫିନ୍ ଭଳି ସ୍ଥିର ହୋଇଯାଇଥିଲୁ ।

ଦେହରେ ବସ୍ତ୍ର ନଥିଲା
ଅଂଧାର ଥିବାରୁ ଲାଜ ବି ନଥିଲା ।

ବହୁ ଦୂରରୁ ଶୁଣୁଥିଲୁ ବୀର ବାଦ୍ୟରେ
ବିଜୟର ଧୁନ୍ ଓ ବିଜୟର ପାଦ ତଳେ
ଚାପି ହେଉଥିବା ମାଟିର ବିକଳ କାଂଦଣା
ବୀର ବାଦ୍ୟ କି କାଂଦଣା କିଛି ବି
ଆମ ପାଖକୁ ଆସୁ ନଥିଲା
ଆମ ମୁଂଡ ଉପରେ ଉଡୁଥିବା ପେଚା ବି
ଆମ ମୁଂଡ ଉପରେ ବସିବାକୁ
ଘୃଣା କରୁଥିଲା ।

ଆମର ଦୀର୍ଘଶ୍ୱାସରେ ପବନ ହେଉଥିଲା
ସଂତ୍ରାସୀୟ ବତାସ
ଓ ଅଂଧାର ହେଉଥିଲା ଭୟଂକର ବିଷ ।
ଆମେ ଆଉ ଅପେକ୍ଷା କରି ପାରିଲୁନି
ନିଜ ନିଜ ଦ୍ୱୀପକୁ ଫେରିଗଲୁ ।

ପାଇକ ସାହି, ସୋରଭା, ନୟାହାଟ,
ପୁରୀ-୭୫୨୧୦୭

# ଗାନ୍ଧିଜୀ ଓ ଓଡ଼ିଶା

**ଅଧ୍ୟାପକ ଡ଼ଃ ଅଶୋକ କୁମାର ମହାନ୍ତି**

ସଂସାରରେ ବଡ଼ଲୋକର ଅଭାବ ନାହିଁ । ଅଭାବ ମହାପୁରୁଷମାନଙ୍କର । ଅଭାବ ଭଲ ଲୋକର । ଲିଙ୍କନ୍, ଲେନିନ୍, ଷ୍ଟାଲିନ୍, ଚର୍ଚ୍ଚିଲ ସମସ୍ତେ ମାଟିରୁ ଉଠି ମହଲାର ମଣିଷ ହୋଇଯାଇଥିବା ବେଳେ ଗାନ୍ଧୀ ପୋର ବନ୍ଦରର ତିନି ମହଲାରୁ ସେବାଗ୍ରାମ, ସ୍ୱରାଜ ଆଶ୍ରମ, ସାବରମତୀର ମାଟି କୁଡ଼ିଆର ମଣିଷଟିଏ ପାଲଟି ଯାଇଥିଲେ ।

ବିଲାତ ପଢ଼ୁଆ, ଦକ୍ଷିଣ ଆଫ୍ରିକାରେ ଆଇନ ବ୍ୟବସାୟୀ ଗାନ୍ଧୀଙ୍କ ପୋଷାକ ଥିଲା ଆଣ୍ଠୁ ଲୁଚୁ ନଥିବା ଅଣଓସାରିଆ ଖଦୀ, ଖାଦ୍ୟଥିଲା ଶୁଦ୍ଧ ନିରାମିଷ ଓ ଛେଳି ଦୁଗ୍ଧ, ଶରୀର ଓଜନ ଶହେ ପାଉଣ୍ଡରୁ କମ୍ । ମାତ୍ର ଏହି ସାଧାରଣ ମଣିଷ ଜଣକ ଉପବାସ କଲେ, ଅନଶନ କଲେ ଦେଶ ବିଦେଶରେ ଚହଳ ପଡ଼ିଯାଏ । ପୃଥିବୀର ବଡ଼ବଡ଼ ଖବର କାଗଜର ମୁଖ୍ୟ ପୃଷ୍ଠା ମଣ୍ଡନ କରେ ଏହି ସମ୍ବାଦଟି 'ବାପୁ ଅନଶନ କରିଛନ୍ତି ।'

'ୱେଷ୍ଟ ମିନିଷ୍ଟର ପ୍ୟାଲେସ୍' ବିଲାତ ରାଜା 'ଅଷ୍ଟମ ଏଡ଼ୱାର୍ଡ଼ଙ୍କ' ନଅର । ଗାନ୍ଧୀଙ୍କ ଫୁଙ୍ଗୁଳା ପାଦ ସେଠାରେ ପଡ଼ିବାର ଦେଖି ଚର୍ଚ୍ଚିଲ କହନ୍ତି 'ଲଙ୍ଗଳା ଫକୀର' । କୋଠା ଉପରୁ ଦେଖୁଥିବା ଅଷ୍ଟମ ଏଡ଼ୱାର୍ଡ଼ କହୁଥିଲେ ଚର୍ଚ୍ଚିଲ ଯାହାଙ୍କୁ ଲଙ୍ଗଳା ଫକୀର ବୋଲି କହୁଛନ୍ତି, ସେହି ଦିନେ ବ୍ରିଟିଶ୍ ସରକାରଙ୍କୁ ତଡିଦେବେ । ଏ କଥା ଦିନେ ସତ୍ୟରେ ପରିଣତ ହେଲା ।

୧୮୬୯ ମସିହା ଅକ୍ଟୋବର ଦୁଇ ତାରିଖରେ ପୋରବନ୍ଦର ଏକ କ୍ଷୁଦ୍ର ବଖରାରେ ଜନ୍ମ ନେଇଥିଲେ ଏ ଯୁଗର ନରଶ୍ରେଷ୍ଠ ମୋହନଦାସ କରମଚାନ୍ଦ ଗାନ୍ଧୀ । ତାଙ୍କର ନଥିଲା ପ୍ରଚୁର ଧନସମ୍ପତ୍ତି, ନଥିଲା ସୈନ୍ୟଦଳ । ସେ ବୈଜ୍ଞାନିକ କି ବୈମାନିକ ନଥିଲେ । ତଥାପି କୋଟି କୋଟି ଜନତା, ସୈନ୍ୟସାମନ୍ତ ଓ ବିଭିନ୍ନ ଦେଶର ସରକାର ତାଙ୍କୁ ସମ୍ମାନ ଜଣାନ୍ତି ।

ଆଇନଷ୍ଟାଇନ୍ କହନ୍ତି, 'ଗାନ୍ଧୀ ହେଉଛନ୍ତି ସାରା ବିଶ୍ୱର ବିବେକର ବାଣୀ' । ଭଗବାନ ଓ ଶ୍ରୀମଦ୍ ଭଗବତ ଗୀତାରେ ତାଙ୍କର ଥିଲା ଅଖଣ୍ଡ ବିଶ୍ୱାସ । ସତ୍ୟ ଓ ଅହିଂସା ତାଙ୍କର ଦୁଇଟି ଫୁସ୍‌ଫୁସ୍ ସଦୃଶ । ତରବାରୀର ଜୟରେ ସେ ବିଶ୍ୱାସ କରନ୍ତି ନାହିଁ । ମନର ବଳରେ ସେ ଥିଲେ ବଳିୟାନ ।

୧୯୧୫ ମସିହାରେ ମହାତ୍ମା ଗାନ୍ଧୀ ଦକ୍ଷିଣ ଆଫ୍ରିକାରୁ ଭାରତକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ତାଙ୍କୁ ବ୍ୟଥିତ କରିଥିଲା ଭାରତର ପରାଧୀନତା, ଦେଶୀୟ ରାଜାମାନଙ୍କ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ଓ ଗୃହଯୁଦ୍ଧ । ଗୋପାଳକୃଷ୍ଣ ଗୋଖଲେଙ୍କୁ ଗୁରୁ ରୂପେ ମାନିଥିଲେ ଗାନ୍ଧୀ । ଶପଥ ନେଇଥିଲେ ଭାରତ ଭ୍ରମଣ କରି ଦେଖିବେ ଭାରତର ଦୁରବସ୍ଥା । ୫୬୨ ଗଡଜାତ, କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଓ ପାଞ୍ଚଲକ୍ଷ ଗାଁ ଥିଲା ତାଙ୍କ ସମାଜ ସେବାର ପ୍ରୟୋଗଶାଳା । ସେ ଗଣତନ୍ତ୍ରରେ ବିଶ୍ୱାସ କରୁଥିଲେ । ଗଣତନ୍ତ୍ରର ଅର୍ଥ ହେଲା ପ୍ରତ୍ୟେକ ବ୍ୟକ୍ତିଙ୍କୁ ଶୁଣିବାକୁ ପଡ଼ିବ ଏବଂ ସମସ୍ତଙ୍କୁ ନେଇ ସମୂହ ନିଷ୍ପତ୍ତିରେ ପହଞ୍ଚିବାକୁ ପଡ଼ିବ । Democracy is of the people , by the people, for the people. ତେଣୁ ସଚେତନ ନାଗରିକର ସମାଜରେ ସକ୍ରିୟ ଭୂମିକାକୁ ସେ ଗୁରୁତ୍ୱ ଦେଉଥିଲେ ।

କିନ୍ତୁ ଭାରତ ଭଳି ଏତେବଡ଼ ଦେଶରେ ଏହା ସମ୍ଭବ ହେଉନଥିଲା । ଅଶିକ୍ଷା, କୁଶିକ୍ଷା, ଅନ୍ଧବିଶ୍ୱାସ, କୁସଂସ୍କାର, ଅଖାଦ୍ୟ, ନିଶା ସେବନ, ଅସ୍ପୃଶ୍ୟତା, ବିଭେଦତା, ଭୟ ଓ ପ୍ରାକୃତିକ ବିପର୍ଯ୍ୟୟ ହିଁ ଏ କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରୁଥିଲା । ଗାନ୍ଧିଜୀଙ୍କ ପ୍ରାଣ ବିଳପି ଉଠୁଥିଲା ଭାରତବର୍ଷର ଏ ଦୁର୍ଦ୍ଦଶା ଦେଖି ।

ବିଳପି ଉଠୁଥିଲା ଓଡ଼ିଶାର ଦାରିଦ୍ର୍ୟର କରୁଣ ଚିତ୍ର ଦେଖି । ୧୯୨୧ରୁ ୧୯୪୬ ଭିତରେ ସାତଥର ଗାନ୍ଧୀ ଓଡ଼ିଶା ଆସି ଦୁଇମାସରୁ ଅଧିକ କାଳ ଏ ରାଜ୍ୟରେ କଟାଇବା ପରେ ସେ

କହି ଉଠିଲେ – ଓଡ଼ିଶା ମୋର ପ୍ରେମର ଭୂମି । ଯଦି ଓଡିଶାର କିଛି ସେବା କରିପାରିବି ତେବେ ଭାରତର ସେବା କଲି ବୋଲି ଜାଣିବି । ଓଡ଼ିଶା ମୋ ପାଇଁ ଗୋଟିଏ ତୀର୍ଥକ୍ଷେତ୍ର ହୋଇଯାଇଛି । ଓଡ଼ିଶାର ସମ୍ମାନ ହେଲା ଜଗନ୍ନାଥ ପୁରୀ ଭଳି ଗୋଟିଏ ପ୍ରସିଦ୍ଧ ତୀର୍ଥ ସେଠାରେ ଅଛି । ଏହା ସତ୍ତ୍ୱେ ମନେ ହେଉଛି, ସତେ ଯେପରିକି ଈଶ୍ୱର ଏହାକୁ ପରିତ୍ୟାଗ କରି ଦେଇଛନ୍ତି । ଶତ ଶତ ନରନାରୀ, ବାଳକବାଳିକା ଅସ୍ଥି କଙ୍କାଳସାର ହୋଇଛନ୍ତି । ଦେହରେ ଟିକେହେଲେ ମାଂସ ନାହିଁ । ଏପରି ଦୃଶ୍ୟ ମୋତେ ବିଚଳିତ କରିଛି । ଜାଗ୍ରତ ଓ ସ୍ୱପ୍ନ ଅବସ୍ଥାରେ ଓଡ଼ିଶା ମୋ ମନରେ ସବୁବେଳେ ଚାପି ହୋଇ ରହିଛି । ଏହାର ଯଦି ପୁନର୍ଜନ୍ମ ହେବ ସମଗ୍ର ଭାରତର ପୁନର୍ଜନ୍ମ ହେଲା ବୋଲି ମୁଁ ଭାବିବି ।

୧୯୨୧, ୧୯୨୫, ୧୯୨୭, ୧୯୨୮, ୧୯୩୪, ୧୯୩୮ ଓ ୧୯୪୬ ମସିହାରେ ଓଡ଼ିଶାର ଗାଁ ଗଣ୍ଡାରେ ବୁଲିବା ଭିତରେ ଗାନ୍ଧିଜୀ ଓଡ଼ିଆଙ୍କ ପ୍ରାଣକୁ ଛୁଇଁ ପାରିଥିଲେ । 'ଭୟ' ହିଁ ଓଡ଼ିଶାର ବ୍ୟାଧି ଓ ଏ ରୋଗ ବନ୍ୟା ବା ଦୁର୍ଭିକ୍ଷଠାରୁ ମାରାତ୍ମକ ବୋଲି କହି ସାହସର ସହିତ ଅନ୍ୟାୟର ପ୍ରତିରୋଧ କରିବାକୁ ଲୋକଙ୍କୁ କହିଥିଲେ ।

୧୯୨୦ ମସିହାରେ ସେ କହିଥିଲେ ଯେତେବେଳେ ଜାତୀୟ ଜୀବନର ଚେତନା ଉଦ୍‌ବେଳିତ ହେଉଛି ସେତେବେଳେ ଓଡ଼ିଶା ବିଷୟରେ ଆମେ ବିଶେଷ କିଛି ଜାଣିନାହୁଁ । ଆମ ଭିତରୁ ଅଧିକାଂଶଙ୍କ ପାଇଁ ଏଇଟି ହେଉଛି ଭୂଗୋଳ ବହିରେ ଥିବା ଗୋଟିଏ ନାମ ମାତ୍ର ।

୧୯୨୧ରେ ସେ ଓଡ଼ିଶା ଆସି ଲେଖିଥିଲେ – 'ଆମ ଦେଶର ଶୋଚନୀୟ ଦୁର୍ଦ୍ଦଶାର ଓଡ଼ିଶା ହେଉଛି ଗୋଟିଏ ଦର୍ଶନୀୟ ନମୁନା । ସାରା ଭାରତରେ ଓଡ଼ିଶା ଦରିଦ୍ରତମ ହୋଇ ରହିବାର କୌଣସି କାରଣ ନାହିଁ । ଅନ୍ୟାନ୍ୟ ଅଞ୍ଚଳର ଲୋକଙ୍କ ତୁଳନାରେ ସେଠାର ଲୋକେ କୌଣସି ଗୁଣରେ ନ୍ୟୁନ ନୁହନ୍ତି । ତାହାର ଇତିହାସ ବଡ଼ ଗୌରବମୟ । ସେ କହିଥିଲେ– ଯଦି ଏହି ଗୌରବୋଜ୍ଜ୍ୱଳ  ଜାତି କୌଣସି ଉଚିତ୍ କାରଣ ନଥାଇ ଚାରି ଭାଗରେ ଖଣ୍ଡିତ ହୋଇଯିବ ତେବେ ତାହା କଦାପି ସ୍ୱାଭାବିକ ପ୍ରଗତି କରି ପାରିବ ନାହିଁ । ଆମର ଏ ଭରସା ରହିଛି ଯେ ଲୋକେ ଓଡ଼ିଶା ଆନ୍ଦୋଳନକୁ ସହାନୁଭୂତିର ସହିତ ଦେଖିବେ ଓ ବୁଝିବେ । ସେ କହୁଥିଲେ ଭାରତର ଉତ୍କଳ ସବୁଠାରୁ ଦରିଦ୍ର ଓ ଉତ୍କଳର ସେବା କଲେ ଦରିଦ୍ର ନାରାୟଣଙ୍କ ସେବା ହେବ ବୋଲି ସେ ବିଚାରୁ ଥିଲେ । ଅନୁଗୁଳରେ ସରକାରୀ ଉଦ୍ୟମରେ ରହିବାକୁ ଘର ନମିଳିବାରୁ ଉଦୁଉଦିଆ ଖରାରେ ଆମ୍ବତୋଟା ତଳେ ଚିରା ଦଦରା ତମ୍ବୁ ଭିତରୁ ହଜାରହଜାର ଲୋକଙ୍କୁ ନିର୍ଭୀକତାର ମନ୍ତ୍ରରେ ଦୀକ୍ଷିତ କଲାବେଳେ ପୁରୀରୁ ଭଦ୍ରକ ପର୍ଯ୍ୟନ୍ତ 'ପ୍ରଚଣ୍ଡ ଧର୍ମ ଯାତ୍ରା' କରି ରାସ୍ତା କଡ଼ରେ ଗଛମୂଳରେ ରାତ୍ରି ଯାପନ କରି ଅସ୍ପୃଶ୍ୟତା କଳଙ୍କକୁ ଦୂର କରିବାକୁ ଆବେଗମୟ ଆହ୍ୱାନ ଜଣାଇଥିଲେ ଗାନ୍ଧୀ ।

୧୯୨୧ ମାର୍ଚ୍ଚ ୨୪ ତାରିଖ ଦିନ କଟକରେ ଗୁଜୁରାଟୀ ଓ ମାରୁୱାଡ଼ିମାନଙ୍କୁ ଉଦ୍‌ବୋଧନ ଦେଇ ଓଡ଼ିଶାର ସେବାରେ ସେମାନେ ନିଜ ନିଜକୁ ନିୟୋଜିତ କରିବାକୁ ପରାମର୍ଶ ଦେଇ ଗାନ୍ଧିଜୀ କହିଥିଲେ– ଆପଣମାନେ ଓଡ଼ିଶାରେ ବ୍ୟବସାୟ କରୁଥିବାରୁ ଓଡ଼ିଆମାନଙ୍କଠାରୁ ବହୁତ ମୁନାଫା ବା ଲାଭ କରୁଛନ୍ତି । ତେଣୁ ଓଡ଼ିଶାବାସୀଙ୍କ ସହ ମିଶି ଆପଣ ସ୍ୱରାଜ ପାଇଁ ଚାନ୍ଦା ଆଦାୟ କରିବା ଉଚିତ୍ । ଦକ୍ଷିଣ ଆଫ୍ରିକାରୁ ଗାନ୍ଧିଙ୍କ ପ୍ରତ୍ୟାବର୍ତ୍ତନ ପୂର୍ବରୁ ଗୋପବନ୍ଧୁ ଓଡ଼ିଶାରେ ଛାତ୍ରାବସ୍ଥାରୁ ରୋଗୀସେବା, ବନ୍ୟାଦୁର୍ଗତଙ୍କ ସେବା, କୁଷ୍ଠାଶ୍ରମ, ଉତ୍କଳ ସମ୍ମିଳନୀ, ବ୍ରାହ୍ମଣ ସମିତି ଛାତ୍ରାବାସ, କଟକର କର୍ତ୍ତବ୍ୟବୋଧିନୀ ସମିତି, କଲିକତାରେ ଓଡ଼ିଆ ଶ୍ରମିକ ସଂଘ, ସତ୍ୟବାଦୀ ବନ ବିଦ୍ୟାଳୟ ଗଠନ, ସତ୍ୟବାଦୀ ପତ୍ରିକା ପ୍ରକାଶନ କରି ନିଜର ସାହିତ୍ୟ ରଚନା ମାଧ୍ୟମରେ ଗଣତନ୍ତ୍ର, ସ୍ୱରାଜ, ଗ୍ରାମ ପଞ୍ଚାୟତ, ନିଶା ନିବାରଣ, ଖଦଡ଼ ପରିଧାନ, ଜାତୀୟ ସଂହତିର ବାର୍ତ୍ତା ପ୍ରଚାର କରିଥିବାରୁ ଗାନ୍ଧୀ କହି ଉଠିଥିଲେ– ମତେ ଯଦି ଶହେ ଜଣ ଗୋପବନ୍ଧୁ ମିଳିଯିବେ ତେବେ ବର୍ଷକ ମଧ୍ୟରେ ମୁଁ ଦେଶକୁ ସ୍ୱାଧୀନତା ଆଣିଦେବି । ଗାନ୍ଧୀଙ୍କ ଉଦ୍ୟମରେ ଏ ରାଜ୍ୟ ପାଇଁ ସ୍ୱତନ୍ତ୍ର ପ୍ରାଦେଶିକ କଂଗ୍ରେସ (ଉତ୍କଳ) କମିଟି ଗଠିତ ହୋଇ ସେବା ଓ ତ୍ୟାଗର ଯେଉଁ ପରମ୍ପରା ଓଡ଼ିଶା ପ୍ରତିଷ୍ଠା କରିପାରିଥିଲା, ତାହା ଗାନ୍ଧୀଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା ।

୧୯୨୫ ରେ ବିଂଶ ଶତାବ୍ଦୀର ଆଉ ଜଣେ ଶ୍ରେଷ୍ଠ ଓଡ଼ିଆ ବାରିଷ୍ଟର ମଧୁସୂଦନ ଦାସଙ୍କ ନିମନ୍ତ୍ରଣରେ କଟକ ଆସି ତାଙ୍କରି ଅତିଥି ହୋଇଥିଲେ ଗାନ୍ଧୀ । ତାଙ୍କ ପ୍ରବର୍ତ୍ତିତ ମୌଳିକ ଶିକ୍ଷା ଯୋଜନା ପାଇଁ ଗାନ୍ଧୀ ମଧୁବାବୁଙ୍କଠାରୁ ପ୍ରେରଣା ପାଇଥିଲେ ବୋଲି ସ୍ୱୀକାର କରିଛନ୍ତି । ଚମ୍ପତି ମୁଣ୍ଡା, ବେରବୋଇ, ଅଳଗୁମ, ମେଣ୍ଟାଶାଳ ଆଦି ସ୍ଥାନରେ ଗାନ୍ଧୀ ପ୍ରବର୍ତ୍ତିତ ମୌଳିକ ବିଦ୍ୟାଳୟମାନ ପରବର୍ତ୍ତୀ ସମୟରେ ପ୍ରତିଷ୍ଠିତ ହୋଇ ପାରିଥିଲା । ୧୯୨୭ରେ ଭାଷାକୋଷ ପ୍ରଣେତା ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ପାଣ୍ଡିତ୍ୟରେ ପ୍ରଭାବିତ ହୋଇ  ଗୋଟିଏ ରାତି ତାଙ୍କ ଘରେ କଟାଇଥିଲେ ।

ପଦଯାତ୍ରାବେଳେ ରାତ୍ରି ରହଣି କାଳରେ ସେ ହରିଜନ ମାନଙ୍କୁ ଖାଇବାକୁ ନିମନ୍ତ୍ରଣ କରି ନିଜେ ଖାଇବାର ତଦାରଖ କରୁଥିଲେ । ସମ୍ବଲପୁର ସହର ଉପକଣ୍ଠରେ ଗୋଟିଏ ଗାଁରେ ଗୋଟିଏ ରାତି କଟାଇଥିଲେ । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସର ବର୍ଣ୍ଣନା ବେଳେ ଦୁଇଟି ଅନିବାର୍ଯ୍ୟ ଅଧ୍ୟାୟ ସୃଷ୍ଟି ହୁଏ । ସେଥିମଧ୍ୟରୁ ଗୋଟିଏ ହେଲା 'ସ୍ୱରାଜ ଆଶ୍ରମ' ଓ ଅନ୍ୟଟି ହେଲା କଟକର ବାଖରାବାଦସ୍ଥିତ ଗୋକୁଳାନନ୍ଦ ଚୌଧୁରୀଙ୍କ କୋଠି । ଏହି କୋଠିର ଦାୟାଦ ଗୋପବନ୍ଧୁ ଚୌଧୁରୀ– ରମାଦେବୀ , ନବକୃଷ୍ଣ ଚୌଧୁରୀ– ମାଳତୀ ଦେବୀ, ମନମୋହନ– ସୁମିତ୍ରାଦେବୀ ଓ ଅନ୍ନପୂର୍ଣ୍ଣା– ଶରତ ମହାରଣା ହେଉଛନ୍ତି ଏ ଜାତିର ସଂପତ୍ତି, ଗୌରବ ଓ ଗର୍ବ । ରମାଦେବୀଙ୍କ ତ୍ୟାଗ, ସର୍ବୋଦୟ ଚିନ୍ତାଧାରା, ଅଦ୍ଭୁତ ସଂଗଠନ ଶକ୍ତି ଗାନ୍ଧୀଙ୍କୁ ଅପାର ଆନନ୍ଦ ଦେଇଥିଲା । ମୁଁ ତାଙ୍କ ପ୍ରେମରେ ପଡ଼ିଯାଇଛି ବୋଲି କହିଥିଲେ ଗାନ୍ଧୀ ।

ଗାନ୍ଧୀଙ୍କ ଅନୁରୋଧରେ ବିଶ୍ୱ ପ୍ରସିଦ୍ଧ ଇଂଜିନିୟର 'ସାର୍ ବିଶେଶ୍ୱରାୟ' ଓଡ଼ିଶା ଆସି ଏ ରାଜ୍ୟର ବନ୍ୟା ପ୍ରତିକାର ସଂପର୍କରେ ବିସ୍ତୃତ ରିପୋର୍ଟ ପ୍ରସ୍ତୁତ କରିଥିଲେ । ସେତେବେଳେ ତାଙ୍କର ଦୈନିକ ଫି' ୧୦ ହଜାର ଟଙ୍କା ଥିଲା । ମହାତ୍ମାଙ୍କ ନିର୍ଦ୍ଦେଶ ତାଙ୍କୁ ଗୌରବ ଆଣିଦେଇଛି କହି ସେ ଗୋଟାଏ ବି ଟଙ୍କା ନେଲେ ନାହିଁ ଓ ପାଞ୍ଚଦିନ ପରିବର୍ତ୍ତେ ଏଗାର ଦିନ ରହିଥିଲେ । ଓଡ଼ିଆ ଲୋକଙ୍କ ଦୁଃଖ ଲାଘବ ପାଇଁ ବିଭିନ୍ନ ସମୟରେ ଠକ୍କର ବାପା, ଈଶ୍ୱରଲାଲ୍ ବ୍ୟାସ ଓ ପୁରୁବାଈଙ୍କ ଭଳି ବ୍ୟକ୍ତିଙ୍କୁ ସେ ଗୁଜୁରାଟରୁ ଓଡ଼ିଶା ପଠାଇଥିଲେ ।

୧୯୩୪ ମସିହା ମେ ମାସର 'ହରିଜନ' ପଦଯାତ୍ରା ପୂର୍ବରୁ ପୁରୀରେ 'ସମାଜ' ପାଇଁ ଶ୍ରୀଯୁକ୍ତ ରାଧାନାଥ ରଥଙ୍କୁ ସାକ୍ଷାତ କଲାବେଳେ ଗାନ୍ଧିଜୀ କହିଥିଲେ – 'ଉତ୍କଳ ମୋର ପ୍ରିୟ ସ୍ଥଳୀ । ମୋ ଶକ୍ତିରେ ଯଦି କିଛି ଦାନ ଦେବାର ଥାଏ, ତେବେ ସେ ଦାନର ସର୍ବୋତ୍କୃଷ୍ଟ ଭାଗ ଉତ୍କଳକୁ ଦେବା ଉଚିତ୍' ।

୧୯୩୮ ମାର୍ଚ୍ଚ ୨୫ ତାରିଖଠାରୁ ଗାନ୍ଧୀ ରହିଥିଲେ ବେରବୋଇଠାରେ । ବେରବୋଇର ମେଳଣ ପଡ଼ିଆ ଓ ବ୍ରହ୍ମେଶ୍ୱରଙ୍କ ପୋଖରୀହୁଡ଼ା ହୋଇଥାଏ ଜନ ସମୁଦ୍ର । ବାପୁଜୀ ଆସିଥାନ୍ତି 'ଗାନ୍ଧୀ ସେବା ସଂଘ' ଚତୁର୍ଥ ବାର୍ଷିକ ଅଧିବେଶନର ମୁଖ୍ୟ ପୁରୋଧା ଭାବେ । ସାଙ୍ଗରେ ଥାଆନ୍ତି କସ୍ତୁରବା, ମହାଦେବ ଦେଶାଇ, ଗାନ୍ଧୀ ସେବାସଂଘର ସଭାପତି କିଶୋରଲାଲ୍ ମଶ୍ରୁୱାଲା, ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍, ଆଚାର୍ଯ୍ୟ କୃପାଳିନୀ, ରାଜେନ୍ଦ୍ର ପ୍ରସାଦ, ମୌଲାନା ଆବୁଲ୍‌କଲାମ୍ ଆଜାଦ୍, ଗୋପବନ୍ଧୁ ଚୌଧୁରୀ ଓ ଅନ୍ୟମାନେ । ସଭାସ୍ଥଳରେ ଗାନ୍ଧିଜୀ ପହଞ୍ଚିଲେ ସକାଳ ୮ ଟା ୧୫ ମିନିଟ୍‌ରେ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଧାଇଁ ଆସିଥାଆନ୍ତି ହଜାର ହଜାର ଲୋକ । ସତ୍ୟ ଅହିଂସାର ପୂଜାରୀ ବାପୁଜୀଙ୍କୁ ଦେଖି ଜନତା ବଶୀଭୂତ ହୋଇପଡ଼ିଥିଲେ । ଗ୍ରାମ୍ୟ ଶିଳ୍ପ ପ୍ରଦର୍ଶନୀ ପଡ଼ିଆରେ ପତକା ଉତ୍ତୋଳନ ହେଲା । ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ପ୍ରାର୍ଥନା ଗାନ କଲେ । ସ୍ୱାଗତ ଦେଲେ 'ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ' । ଶିଳ୍ପ ମେଳାକୁ ଉଦ୍‌ଘାଟନ କରି ଗାନ୍ଧିଜୀ ନମ୍ର ସ୍ୱରରେ କହିଲେ– ସେ ଓଡ଼ିଶାକୁ ଭଲ ପାଆନ୍ତି । ଠକ୍କର ବାପାଙ୍କ ସହ ସେ ଓଡ଼ିଶାର ଚାରିକୋଣ ବୁଲିଛନ୍ତି । ଓଡ଼ିଶାର କଳା, ଭାସ୍କର୍ଯ୍ୟ, ଗ୍ରାମୀଣ ଶିଳ୍ପ ତାଙ୍କୁ ବିମୁଗ୍ଧ କରିଛି । କିନ୍ତୁ ସେ ବ୍ୟସ୍ତ ହୋଇପଡ଼ିଛନ୍ତି ଓଡ଼ିଶାର ଦାରିଦ୍ର୍ୟକୁ ଦେଖି, ତଥାପି ସେ ଆଶାବାଦୀ । ଓଡ଼ିଆମାନେ କେବଳ କୃଷି ଉପରେ ନିର୍ଭର ନକରି ଗ୍ରାମ୍ୟ ଶିଳ୍ପ ଉପରେ ଗୁରୁତ୍ୱ ଦେବେ । ସତ୍ୟ ଅହିଂସାକୁ ପାଥେୟ କରି ଚାଲିବେ । ଏ ହେବ ପୂର୍ଣ୍ଣ ସ୍ୱରାଜ ହାସଲର ସଫଳ ଆଲେଖ୍ୟ । ଗାନ୍ଧିଜୀଙ୍କ ହାତର ବାଡ଼ିକୁ ଉପହାର ସ୍ୱରୂପ ପ୍ରଦାନ କରିଥିଲେ ଆଚାର୍ଯ୍ୟ ହରିହର । ସକାଳୁ ସକାଳୁ କଣ୍ଟାବାଉଁଶକୁ ଦେଖି ପରୀକ୍ଷା ନିରୀକ୍ଷା କରୁଥିବା ଗାନ୍ଧୀ ମହାତ୍ମାଙ୍କ ମନୋବୃତ୍ତିକୁ ଠଉରାଇ ନେଇ ଆଚାର୍ଯ୍ୟ ହରିହର ଶୀଘ୍ର ଏକ ବାଡ଼ି ତିଆରି କରି ତାଙ୍କୁ ଧରାଇ ଦେଇଥିଲେ ଓ ବେରବୋଇରେ ଗାନ୍ଧିଜୀଙ୍କ ବାଡ଼ି ଧରା ପ୍ରତିମୂର୍ତ୍ତି ରହିଛି । ୧୯୪୭ରେ ଗାନ୍ଧିଜୀ ପ୍ରଧାନମନ୍ତ୍ରୀ ମହତାବଙ୍କୁ ପରାମର୍ଶ ଦେଇ କହିଥିଲେ, କୃଷିଭିତ୍ତିକ ଶିଳ୍ପ ପ୍ରତିଷ୍ଠା କରିବାକୁ । ଜାନୁୟାରୀ ୩୦,୧୯୪୮ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା । ଆତତାୟୀର ଗୁଳିରେ ଟଳିପଡ଼ିବା ବେଳେ ତାଙ୍କ କଣ୍ଠରୁ ସ୍ୱତଃ ବାହାରି ପଡ଼ିଥିଲା 'ହେ ରାମ' ।

ସତ୍ୟ ନ୍ୟାୟର ଶେଷ ପ୍ରଦୀପ ଲିଭିଗଲା । ସମବେଦନାପୂର୍ଣ୍ଣ ୩୪୪୧ ଟେଲିଗ୍ରାମ ପାଇଥିଲେ ଭାରତ ସରକାର । ପୃଥିବୀର ରାଜନେତାଙ୍କ ଠାରୁ ସାଧାରଣ ଜନତାଙ୍କ ପର୍ଯ୍ୟନ୍ତ ସମସ୍ତେ ଶୋକରେ ଭାଙ୍ଗି ପଡ଼ିଲେ । ଆନ୍ତର୍ଜାତିକ ଅନୁଷ୍ଠାନ କେବଳ ନୁହେଁ ସମଗ୍ର ମାନବ ଜାତିର ପତାକା ଆପେ ଆପେ ନଇଁ ଯାଇଥିଲା । ପଣ୍ଡିତ ନେହେରୁ କାନ୍ଦି କାନ୍ଦି ଜାତି ଉଦ୍ଦେଶ୍ୟରେ କହିଥିଲେ, Light has gone out. ଗାନ୍ଧୀ ମଣିଷରୁ ମହାମାନବ ହୋଇ ଶେଷରେ ମହାତ୍ମା ପାଲଟିବା ଏକ ବାସ୍ତବତା ତଥା ଏକ ଆଦର୍ଶ ।

ଡେଲାଙ୍ଗ କଲେଜ
ଡେଲାଙ୍ଗ, ପୁରୀ

# ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଅବଦାନ

ଜୟଶଙ୍କର ନାୟକ

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଇତିହାସରେ ପ୍ରତି ଭାରତୀୟଙ୍କ ପାଇଁ ଏକ ଗର୍ବ ଓ ଗୌରବର ସ୍ମାରକୀ ବହନ କରୁଥିବା ବେଳେ ଆମ ଓଡ଼ିଶାରେ ଓଡ଼ିଆଙ୍କ ଅବଦାନ ବି କୌଣସି ଗୁଣରେ କମ୍ ନୁହେଁ । ସର୍ବଭାରତୀୟ ସ୍ତରରେ ସ୍ୱାଧୀନତା ଆନ୍ଦୋଳନ ୧୮୫୭ ମସିହାରୁ ଆରମ୍ଭ ହୋଇଥିଲା ଓ ଏହାର ବହୁ ପୂର୍ବରୁ ୧୮୦୩ ମସିହାରେ ଓଡ଼ିଆମାନେ ଏଥିପାଇଁ ପ୍ରସ୍ତୁତି ଆରମ୍ଭ କରି ଦେଇଥିଲେ । ସେଥିପାଇଁ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଓଡ଼ିଆମାନଙ୍କର ଭୂମିକା ଅବିସ୍ମରଣୀୟ । ସେମାନେ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟ, ଘରଦ୍ୱାର ତ୍ୟାଗ କରି ଦେଶମାତୃକାର ସେବାରେ ନିଜକୁ ଉତ୍ସର୍ଗ କରିଥିଲେ । ଆମ ପାଇଁ ସ୍ୱାଧୀନତା ଏକ ଦାନ ସ୍ୱରୂପ ନଥିଲା । ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆମର ଚିର ନମସ୍ୟ । ସେମାନଙ୍କୁ ସ୍ମରଣ କରି ରଖିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ । ବିଶେଷ କରି ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ମୌଲନା ଆଜାଦ୍, ସରୋଜିନୀ ନାଇଡ଼ୁ ଓ ଓଡ଼ିଶାର ସୁଭାଷ ଚନ୍ଦ୍ର ବୋଷ, ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ଦଳ ବେହେରା, ମାଧବ ରାଉତରାୟ, ମଧୁସୂଦନ ଦାସ, ଗୋପବନ୍ଧୁ ଦାସ, ହରିହର ଦାସ, ନୀଳକଣ୍ଠ ଦାସ, ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ବୀର ସୁରେନ୍ଦ୍ର ସାଏ, ସାରଦା ପ୍ରସନ୍ନ ମହାପାତ୍ର, କୃଷ୍ଣ ମୋହନ ପଟ୍ଟନାୟକ, ହରେକୃଷ୍ଣ ମହତାବ, ରମାଦେବୀ, ମାଳତୀ ଚୌଧୁରୀ, ନିରଞ୍ଜନ ପଟ୍ଟନାୟକ, ବିଶ୍ୱନାଥ ଦାସ, ଲକ୍ଷ୍ମଣ ନାଏକ, ଦୋରା ବିଷୋଇ, ଚକରା ବିଷୋଇ, ରତ୍ନା ନାୟକ, ନନ୍ଦ ନାୟକ, ଧରଣୀ ନାୟକ, ନିର୍ମଳ ମୁଣ୍ଡା, ମାଦ୍ରୀ କାଲୋ ପ୍ରମୁଖ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ଯେଉଁମାନେ ତ୍ୟାଗ ତଥା ଆତ୍ମୋତ୍ସର୍ଗ କରି ପ୍ରାଣବଳି ଦେଇ ଶହୀଦ ହୋଇଛନ୍ତି, ଭାରତବାସୀ ଆଜି ତାଙ୍କ ନିକଟରେ ଚିରକୃତଜ୍ଞ । ଆଜି ତାଙ୍କରି ଯୋଗୁଁ ଭାରତ ଅନ୍ୟ ବିଦେଶୀ ରାଷ୍ଟ୍ରଭଳି ତା'ର ବିଜୟୀ ପତାକା ଫରଫର ହୋଇ ଉଡ଼ାଇ ପାରିଛି । ବହୁଦିନ ବ୍ରିଟିଶ ଶାସନାଧୀନ ହୋଇ ରହିବା ପରେ ଆମ ଦେଶ ଏହି ଦିବସରେ ବିଦେଶୀ କବଳରୁ ମୁକ୍ତିଲାଭ କରି ଏକ ସ୍ୱାଧୀନ ଓ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହୋଇଛି ।

ଯଦିଓ ୧୮୫୭ ମସିହାରେ ପ୍ରଥମେ ଭାରତରେ ଇଂରେଜ କବଳରୁ ମୁକ୍ତିଲାଭ ପାଇଁ ବିଦ୍ରୋହ ହୋଇଥିଲା କିନ୍ତୁ ଆମ ଓଡ଼ିଶା ମାଟିରେ ୧୮୦୩ ମସିହାରେ ବ୍ରିଟିଶ ଶାସନରୁ ମୁକ୍ତି ପାଇଁ ଆନ୍ଦୋଳନ ଆରମ୍ଭ ହୋଇଥିଲା । ୧୮୫୭ ମସିହାରେ ସିପାହୀ ବିଦ୍ରୋହ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି କେତେକ ଐତିହାସିକ ମତବ୍ୟକ୍ତ କରିଛନ୍ତି । ଉକ୍ତ ବିଦ୍ରୋହଟି ଇଂରେଜ ସାମ୍ରାଜ୍ୟ ତଥା ପ୍ରଶାସନକୁ ହୁଲସ୍ଥୁଲ କରିଦେଇ ଥିଲା । ସେହି ସିପାହୀ ବିଦ୍ରୋହରେ କେବଳ ସିପାହୀମାନେ ଯୋଗ ଦେଇଥିଲେ ତାହା ନୁହେଁ, ସେମାନଙ୍କ ସାଙ୍ଗରେ ତାଂତିଆ ଟୋପେ, ବାହାଦୂର ଶାହା ଓ ଝାନ୍ସୀର ରାଣୀ ଲକ୍ଷ୍ମୀବାଈ ମଧ୍ୟ ସଂଶ୍ଳିଷ୍ଟ ଥିଲେ । ଉକ୍ତ ସଂଗ୍ରାମରେ ଓଡ଼ିଶାରୁ ଯୋଗ ଦେଇଥିଲେ ବୀର ସୁରେନ୍ଦ୍ର ସାଏ ଓ ଚନ୍ଦନ ହଜୁରୀ । ଝାନ୍ସୀର ରାଣୀ ଲକ୍ଷ୍ମୀବାଈ ନିଜର ନାବାଳକ ପୋଷ୍ୟପୁତ୍ର ପାଇଁ ଝାନ୍ସୀ ରାଜଗାଦି ସୁରକ୍ଷିତ ରଖିବା ଉଦ୍ଦେଶ୍ୟରେ ଇଂରେଜ ଶାସନର ବିରୋଧୀ ହେଲେ । ଝାନ୍ସୀର ରାଣୀ ଲକ୍ଷ୍ମୀବାଈ ନିଜର ବୀରା ରମଣୀ ରୂପରେ ସଜାଇ ଫିରିଙ୍ଗି ଶାସନକୁ ଉପଯୁକ୍ତ ଜବାବ ଦେଇ ପାରିଥିଲେ । ଦେହରେ ସାଞ୍ଜୁ, ହାତରେ ଢ଼ାଲ ଓ ଖଣ୍ଡା ଧରି ସମର କ୍ଷେତ୍ରରେ ଯୁଦ୍ଧ କରିବାକୁ ଆଗେଇ ଯାଇଥିଲେ । ପୁରୀର ଚନ୍ଦନ ହଜୁରୀ ନାମରେ ପରିଚିତ ଚାଖୀ ଖୁଣ୍ଟିଆ ସିପାହୀ ବିଦ୍ରୋହରେ ଯୋଗଦେଇ ଝାନ୍ସୀ ରାଣୀ ଲକ୍ଷ୍ମୀବାଈଙ୍କୁ ସାହାଯ୍ୟ

କରିଥିଲେ । ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ସିପାହୀ ବିଦ୍ରୋହରେ ଯୋଗ ଦେଇଥିଲେ । ବୀର ସୁରେନ୍ଦ୍ର ସାଏ ଓଡ଼ିଶାରେ ଏହି ସଂଗ୍ରାମକୁ ୧୮୬୨ ମସିହା ପର୍ଯ୍ୟନ୍ତ ଜାହିର କରି ରଖିଥିଲେ । ଶେଷରେ ଇଂରେଜମାନଙ୍କ ଦ୍ୱାରା କାରାଗାରରେ ବନ୍ଦୀ ହୋଇ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

୧୮୦୪ ମସିହାରେ ଜୟୀ ରାଜଗୁରୁଙ୍କ ତତ୍ତ୍ୱାବଧାନରେ ଖୋର୍ଦ୍ଧା ବିଦ୍ରୋହ ଥିଲା ଅନ୍ୟତମ । ସେହି ସମୟରେ ଗଜପତି ରାଜା ଥିଲେ ଦ୍ୱିତୀୟ ମୁକୁନ୍ଦ ଦେବ ନାବାଳକ ଓ ଜୟୀ ରାଜଗୁରୁ ହେଲେ ତାଙ୍କର ପ୍ରଧାନମନ୍ତ୍ରୀ । ସେ ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ କରି ଫାଶି ପାଇଥିଲେ । ସେଥିପାଇଁ ଜୟୀ ରାଜଗୁରୁ ହୋଇଥିଲେ ଭାରତବର୍ଷର ପ୍ରଥମ ଶହୀଦ୍ ।୧୮୧୭ ମସିହାରେ ଇଂରେଜମାନଙ୍କ ବିରୋଧରେ ଓଡ଼ିଶା ହିଁ ପ୍ରଥମ ସ୍ୱର ଉତ୍ତୋଳନ କରିଥିଲା । ସିପାହୀ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ଓଡ଼ିଶାର ପାଇକମାନେ ବିଦ୍ରୋହ ଆରମ୍ଭ କରିଥିଲେ । ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବର ରାଏଙ୍କ ନେତୃତ୍ୱରେ ପାଇକ ବିଦ୍ରୋହ ହୋଇଥିଲା । ବକ୍ସି ଜଗବନ୍ଧୁଙ୍କ ସହିତ ଖୋର୍ଦ୍ଧାଗଡ଼ର ରାଜ ପୁରୋହିତ ଜୟକୃଷ୍ଣ ରାଜଗୁରୁ ତଥା ତାପଙ୍ଗ ଦଳବେହେରା ପ୍ରମୁଖ ସହଯୋଗୀ ପାଇକମାନଙ୍କ ସହ ବିଦ୍ରୋହରେ ନେତୃତ୍ୱ ନେଇଥିଲେ । ପରିସ୍ଥିତିର ଚାପରେ ପଡ଼ି ଶେଷରେ ବକ୍ସି ଜଗବନ୍ଧୁ ୧୮୨୫ ମସିହାରେ କଟକଠାରେ ଇଂରେଜମାନଙ୍କ ନିକଟରେ ଆତ୍ମସମର୍ପଣ କରିଥିଲେ । ବାଣପୁର ଓ ଖୋର୍ଦ୍ଧାର ଅନତି ଦୂରରେ ତାପଙ୍ଗଠାରେ କୃତିବାସ ପାଟ୍ଟଶାହାଣୀ ଓ ଦଳ ବେହେରା ମାଧବ ରାଉତରାୟଙ୍କ ନେତୃତ୍ୱରେ ଇଂରେଜମାନଙ୍କ ବିରୋଧରେ ବିଦ୍ରୋହ ହୋଇଥିଲା ।

ଦକ୍ଷିଣ ଓଡ଼ିଶାର କନ୍ଧମାନଙ୍କ ଉପରେ ଇଂରେଜମାନଙ୍କର ପ୍ରଭୁତ୍ୱ ଜାରି ବିରୋଧରେ ବିଦ୍ରୋହ ହୋଇଥିଲା । ଏହା ଇତିହାସରେ ଘୁମୁସର ବିଦ୍ରୋହ ନାମରେ ଖ୍ୟାତ । କନ୍ଧ ସଂପ୍ରଦାୟର ଦୁଇଜଣ ମହାନ ନେତା ଦୋରା ବିଷୋଇ ଓ ଚକରା ବିଷୋଇ ଇଂରେଜ ଶାସନ ବିରୋଧରେ ସଂଗ୍ରାମ କରି ଇଂରେଜ ଶାସନକୁ ଦୋହଲାଇ ଦେଇଥିଲେ । ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହ ସଂଗଠିତ କରି ଶହୀଦ୍ ହୋଇଥିବା ରତ୍ନା ନାୟକ, ଶହୀଦ ନନ୍ଦ ନାୟକ ଓ ଧରଣୀଧର ଥିଲେ ଅନ୍ୟତମ । ସେମାନେ ଥିଲେ ଭୂୟାଁ ଜାତିର ଯୋଗଜନ୍ମା ପୁରୁଷ । ସେମାନେ ଆହୁରି ମଧ୍ୟ ଥିଲେ ଭୂୟାଁ ସ୍ୱାଭିମାନର ପ୍ରଥମ ଜାଗ୍ରତ ପ୍ରହରୀ । ବେଠି, ବେଗାରୀ ତଥା କୁଶାସନ ବିରୋଧରେ ଉତ୍କ୍ଷିପ୍ତ ହୋଇ ସେମାନଙ୍କର ନ୍ୟାଯ୍ୟ ଦାବି ହାସଲ କରିବା ପାଇଁ ଏକ ଗଣଆନ୍ଦୋଳନ କରିଥିଲେ । ଏହି ଗଣ ଆନ୍ଦୋଳନ କେନ୍ଦୁଝର ଜିଲ୍ଲା କାହିଁକି ସମଗ୍ର ଭାରତବର୍ଷରେ ମୁକ୍ତି ସଂଗ୍ରାମ ବିଦ୍ରୋହର ସୂତ୍ରପାତ କରିଥିଲା । କେଉଁଝରର ଭୂୟାଁ ସମ୍ପ୍ରଦାୟର ସୁନାମଧନ୍ୟ ବ୍ୟକ୍ତି ଥିଲେ ରତ୍ନା ନାୟକ, ନନ୍ଦ ନାୟକ ଓ ଧରଣୀଧର ନାୟକ । ସେମାନଙ୍କର ବିଦ୍ରୋହକୁ ଯଥାକ୍ରମେ ୧୮୬୮ ମସିହାରେ ରତ୍ନା ମେଳି ଓ ୧୮୯୧ ମସିହାରେ ଧରଣୀଧର ମେଳି ବା ଭୂୟାଁ ମେଳି ଭାବରେ ପରିଚିତ ହୁଏ । ରତ୍ନା ନାୟକ ଓ ନନ୍ଦ ନାୟକ ପରି ଭୂୟାଁ ସର୍ଦ୍ଦାରମାନେ ୧୮୬୮ ମସିହାର ଅପ୍ରେଲ ୨୮ ତାରିଖରେ ରାଜତନ୍ତ୍ର ଏବଂ ଇଂରେଜ ସରକାରଙ୍କ ବିରୋଧରେ ବିଦ୍ରୋହ ଘୋଷଣା କରିଥିଲେ । କଟକ ଜେଲରେ ସର୍ଦ୍ଦାର ରତ୍ନା ନାୟକ, ନନ୍ଦ ନାୟକ ଓ ଅନ୍ୟମାନଙ୍କୁ ଫାଶି ଦିଆଗଲା । ୨୭ ଜଣ ବିଦ୍ରୋହୀଙ୍କୁ ଦ୍ୱୀପାନ୍ତର (କଳାପାଣି) ଏବଂ ନନ୍ଦ ପ୍ରଧାନ ଓ ଅନ୍ୟମାନଙ୍କୁ ବିଭିନ୍ନ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

ଗାଂଗପୁର ରାଜ୍ୟରେ ନିର୍ମଳ ମୁଣ୍ଡାଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଗଠିତ ହୋଇଥିଲା । ରାଜାଙ୍କ ପୋଲିସ ଓ ପ୍ରଜାଙ୍କ ମଧ୍ୟରେ ସଂଘର୍ଷ ଘଟି ୨୮ ଜଣ ପ୍ରଜା ନିହତ ଓ ୨୫ ଜଣ ଆହତ ହୋଇଥିଲେ । ସୁନ୍ଦରମଣି ପଟେଲ, ହରିହର ପଟେଲ, ନାରଦ ଗୋସ୍ୱାମୀ ଓ ଧନଞ୍ଜୟ ମହାନ୍ତି ପ୍ରମୁଖ ପ୍ରଜାମଣ୍ଡଳର ନେତୃତ୍ୱ ନେଇଥିଲେ । ଗାଙ୍ଗପୁର ରାଜ୍ୟର ନିରୀହ ଭୂୟାଁ ଆଦିବାସୀ ପ୍ରଜାମାନେ କୁଶାସନ ବିରୋଧରେ ଉତ୍କ୍ଷିପ୍ତ ହୋଇ ସେମାନଙ୍କର ନ୍ୟାଯ୍ୟ ଦାବି ହାସଲ କରିବା ପାଇଁ ଏକ ଗଣ ଆନ୍ଦୋଳନ କରିଥିଲେ ।

୧୮୫୭ ମସିହାରେ ଓଡ଼ିଆମାନେ ସର୍ବଭାରତୀୟ ସ୍ତରରେ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିବାର ଜଣାଯାଏ । ଏହି ସଂଗ୍ରାମକୁ ସିପାହୀ ବିଦ୍ରୋହ ବୋଲି ଐତିହାସିକମାନେ ଆଖ୍ୟା ଦେଇଥିଲେ । ତନ୍ମଧ୍ୟରୁ କଟକ ଜିଲ୍ଲାର ରାମକୃଷ୍ଣ ସାମନ୍ତ ସିଂହାର, ପୁରୀ ଜିଲ୍ଲାର ଚାଖି ଖୁଣ୍ଟିଆ ଓ ସମ୍ବଲପୁର ଜିଲ୍ଲାର ବୀର ସୁରେନ୍ଦ୍ର ସାଏ ମାଧୋ ସିଂ ତଥା ତାଙ୍କ ପୁତ୍ର ହାତୀ ସିଂହଙ୍କ ନେତୃତ୍ୱରେ ସଂଗ୍ରାମ ସଂଗଠିତ ହୋଇଥିଲା । ୧୮୫୮ ରୁ ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ପର୍ଯ୍ୟନ୍ତ ୨୭ ବର୍ଷର ସମୟ ଥିଲା ରାଜନୈତିକ ବା ଜାତୀୟ ଏକତାର ଜାଗରଣ ସମୟ । ସେହି ସମୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠା ହୋଇଥିଲା । ତନ୍ମଧ୍ୟରୁ ସମ୍ବଲପୁର ଜିଲ୍ଲା ସ୍କୁଲ, ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓଙ୍କ ଦ୍ୱାରା ବାରିପଦାଠାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ, ୧୮୭୯ କଟକରେ ପ୍ୟାରୀମୋହନ ଏକାଡ଼େମୀ, ବାଲେଶ୍ୱରରେ ବୈକୁଣ୍ଠନାଥ ଦେ ତଥା ଫକୀର ମୋହନ ସେନାପତିଙ୍କ ପ୍ରଚେଷ୍ଟାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଉଲ୍ଲେଖଯୋଗ୍ୟ । ଦ୍ୱିତୀୟତଃ ରାଜନୈତିକ ଜାଗରଣ

ସୃଷ୍ଟି କରିବା ଦିଗରେ ଛାପାଖାନା ପ୍ରତିଷ୍ଠା ଥିଲା ମୁଖ୍ୟ ଉଦ୍ଦେଶ୍ୟ । ୧୮୬୬ରେ ବିଚିତ୍ରାନନ୍ଦ ଦାସଙ୍କ ଦ୍ୱାରା କଟକ ପ୍ରିଣ୍ଟିଂ ପ୍ରେସ, ବାଲେଶ୍ୱରରେ ଫକୀର ମୋହନଙ୍କ ଦ୍ୱାରା ଉତ୍କଳ ପ୍ରେସ୍, ବୈକୁଣ୍ଠନାଥ ଦେଙ୍କ ଦ୍ୱାରା ଦେ ପ୍ରେସ୍, ବାମଣ୍ଡାର ରାଜା ବାସୁଦେବ ସୁଢ଼ଳ ଦେବଙ୍କ ଦ୍ୱାରା ସୁଢ଼ଳ ପ୍ରେସ୍ ଓ ବାରିପଦାରେ ମୟୂରଭଞ୍ଜ ପ୍ରେସ୍ ସ୍ଥାପିତ ହୋଇଥିଲା ।

୧୮୮୫ ମସିହା ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ବମ୍ବେଠାରେ ଉମେଶ ଚନ୍ଦ୍ର ବାନାର୍ଜିଙ୍କ ଅଧକ୍ଷତାରେ ଅନୁଷ୍ଠିତ ହୋଇଥିଲା ଓ ଏଥିରେ ଓଡ଼ିଶାର ବ୍ରହ୍ମପୁରର ଆଇନଜୀବୀ ବିଶେଶ୍ୱର ଆୟାର ଯୋଗ ଦେଇଥିଲେ । ୧୮୮୬ ମସିହା ମାର୍ଚ୍ଚ ୩ ତାରିଖରେ ମଧୁସୂଦନ ଦାସଙ୍କ ଅଧକ୍ଷତାରେ କଟକରେ ଏକ ସଭା ଅନୁଷ୍ଠିତ ହୋଇଥିଲା ଯାହାକି ଓଡ଼ିଶାର ଜାତୀୟ କଂଗ୍ରେସର ପ୍ରଥମ ସଭା । ତା'ପରେ ମଧୁସୂଦନ ଦାସଙ୍କ ଦ୍ୱାରା ୧୯୦୩ ମସିହା ଡ଼ିସେମ୍ବର ମାସ ୩୦ ତାରିଖ ଦିନ କଟକ ସ୍ଥିତ ଇଦ୍‌ଗା ପଡ଼ିଆରେ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲା । ୧୯୦୫ ମସିହାରେ ବଙ୍ଗ ବିଭାଜନକୁ କେନ୍ଦ୍ରକରି ଏକ ଆନ୍ଦୋଳନ ଗଢ଼ି ଉଠିଥିଲା । ଭାରତର ଭାଇସରାୟ ଲର୍ଡ଼ କର୍ଜନ ବଙ୍ଗଦେଶକୁ ଦୁଇ ଭାଗରେ ବିଭକ୍ତ କରିବାକୁ ଆଦେଶ ଦେଲେ । ସେତେବେଳେ ବଙ୍ଗବାସୀ ଇଂରେଜ ସରକାରଙ୍କ ବିରୋଧରେ ଭାରତରୁ ବ୍ରିଟିଶ ସରକାରଙ୍କ ମୂଳ ଉତ୍ପାଟନ ନିମନ୍ତେ ଆନ୍ଦୋଳନ କରିଥିଲେ । ଏହି ଆନ୍ଦୋଳନରେ ଜଗତସିଂହପୁର ଅଞ୍ଚଳର ସାରଦା ପ୍ରସନ୍ନ ମହାପାତ୍ର, କବି କୃଷ୍ଣମୋହନ ପଟ୍ଟନାୟକ ଓ ବାରିନ ଘୋଷ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ୧୯୦୫ ରୁ ୧୯୧୪ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ଇଂରେଜମାନଙ୍କ ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତି ବିରୋଧରେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ ହୋଇଥିଲା । ବାଲେଶ୍ୱର ଇଞ୍ଚୁଡ଼ି ଓ ଭଦ୍ରକର ଇରମ ଠାରେ ଲବଣ ସତ୍ୟାଗ୍ରହ ଚାଲିଥିଲା ବେଳେ ପୋଲିସ ଗୁଳିରେ ଜଣଙ୍କ ପରେ ଜଣେ ଟଳି ପଡ଼ିଥିଲେ । ଇରମ ରକ୍ତତୀର୍ଥରେ ପରିଣତ ହୋଇଯାଇଥିଲା । ମଦ, ଅଫିମ, ଗଂଜା ଓ ବିଦେଶୀ ଦ୍ରବ୍ୟ ବିକ୍ରୟ କରୁଥିବା ଦୋକାନ ସମ୍ମୁଖରେ ଆନ୍ଦୋଳନକାରୀ ବିକ୍ଷୋଭ ପ୍ରଦର୍ଶନ କରୁଥିଲେ । ୧୯୩୬ ମସିହା ଏପ୍ରିଲ ମାସ ୧ ତାରିଖ ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯାଇଥିଲା । ୨୬ ଟି ଗଡ଼ଜାତ ବ୍ୟତୀତ ନୂତନ ଓଡ଼ିଶା ପ୍ରଦେଶରେ ୬ଟି ଜିଲ୍ଲା ଥିଲା । ସେଗୁଡ଼ିକ ଥିଲା– କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ । ୧୯୩୬ ନିର୍ବାଚନରେ ସ୍ୱାଧୀନତା ସଂଗ୍ରାମୀ ଜାତୀୟ କଂଗ୍ରେସକୁ ଜୟଯୁକ୍ତ କରାଇ ଓଡ଼ିଶାରେ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠିତ ହେଲା ଏବଂ ଗଡ଼ଜାତ ପ୍ରଜାମାନେ ବିଦ୍ରୋହରେ ମାତି ଉଠିଲେ । ୧୯୩୭ ମସିହାର ଜୁନ୍ ୨୬ ତାରିଖରେ ସର୍ବଭାରତୀୟ ଷ୍ଟାଣ୍ଡିଂ କମିଟିର ଜନୈକ ଉଦ୍ୟୋକ୍ତା ଡ଼ଃ ପଟାଭି ସୀତାରାମାୟା ଓଡ଼ିଶା ପରିଦର୍ଶନରେ ଆସି ସମ୍ମିଳନୀରେ ଅଧକ୍ଷତା କରିଥିଲେ ଏବଂ ଉକ୍ତ ସମ୍ମିଳନୀର ନାମ ଓଡ଼ିଶା ଷ୍ଟେଟ୍ ପିପୁଲସ୍ କନ୍‌ଫରେନ୍ସ ରଖାଯାଇଥିଲା ଏବଂ ସ୍ୱର୍ଗତ ସାରଙ୍ଗଧର ଦାସ ଏହାର ସଂପାଦକ ଥିଲେ ।

ଓଡ଼ିଶାରେ ବିଭିନ୍ନ ଗଡ଼ଜାତଗୁଡ଼ିକରେ ୧୯୩୮ ମସିହାରେ ପ୍ରଜାମଣ୍ଡଳ ଗଠିତ ହେଲା । ଗଡ଼ଜାତଗୁଡ଼ିକ ଯଥାକ୍ରମେ– ନୀଳଗିରି, ଢ଼େଙ୍କାନାଳ, ତାଳଚେର, ସୋନପୁର, ଆଠଗଡ଼, ନୟାଗଡ଼, ପାଲଲହଡ଼ା, ତିଗିରିଆ, ମୟୂରଭଞ୍ଜ, କେନ୍ଦୁଝର ଓ ଗାଙ୍ଗପୁର ଥିଲା ଅନ୍ୟତମ । ସୂଚନାଯୋଗ୍ୟ ଯେ ସାରା ଭାରତରେ ନୀଳଗିରି ଗଡ଼ଜାତ ମିଶ୍ରଣରେ ପ୍ରଥମ କରି ଓଡ଼ିଶାରେ ୧୯୪୭ ମସିହା ନଭେମ୍ବର ୧୭ ତାରିଖରେ ମିଶିଥିବା ବେଳେ ଓଡ଼ିଶାର ମୟୂରଭଞ୍ଜକୁ ଛାଡ଼ି ଅନ୍ୟ ଗଡ଼ଜାତଗୁଡ଼ିକ ୧୯୪୮ ମସିହା ଜାନୁଆରୀ ୧ ତାରିଖରେ ମିଶ୍ରଣ ହୋଇଥିଲା । ମୟୂରଭଞ୍ଜ ରାଜ୍ୟ ୧୯୪୯ ମସିହା ଜାନୁୟାରୀ ୧ ତାରିଖରେ ମିଶ୍ରଣ ହୋଇଥିଲା । ମୟୂରଭଞ୍ଜର ମିଶ୍ରଣ ବିଳମ୍ବିତ ଯୋଗୁଁ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାରୁ ଚାଲି ଯାଇଥିଲା ବୋଲି ଆଲୋଚିତ ହୁଏ । ରଣପୁର ଗଡ଼ଜାତରୁ ବନମାଳୀରାମ, କୃପାସିନ୍ଧୁ ମିଶ୍ର, ରଘୁ ମହାନ୍ତି ଓ ଦିବାକର ପରିଡ଼ାଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଗଠିତ ହୋଇଥିଲା । ଏହି ଆନ୍ଦୋଳନରେ ପଲିଟିକାଲ୍ ଏଜେଣ୍ଟ ମେଜର ବେଜେଲଗେଟ ନୟାଗଡ଼ରୁ ଆସି ୧୯୩୯ ମସିହା ଜାନୁୟାରୀ ୫ ତାରିଖରେ ରଣପୁରରେ ପହଞ୍ଚି ଥିଲେ ଏବଂ ତାଙ୍କୁ ଗାଁ ଭିତରକୁ ନେଇ ବାଡ଼ିରେ ପିଟି ପିଟି ମାରି ଦେଲେ । ନୀଳଗିରି ଦେଶୀୟ ରାଜ୍ୟରେ କୈଳାସ ଚନ୍ଦ୍ର ମହାନ୍ତିଙ୍କ ନେତୃତ୍ୱରେ ଜନସାଧାରଣଙ୍କ ରାଜନୈତିକ ଓ ସାମାଜିକ ଅଧିକାର ଲାଗି ଆନ୍ଦୋଳନ ହୋଇଥିଲା । ଢ଼େଙ୍କାନାଳ ଆନ୍ଦୋଳନରେ ୧୨ ବର୍ଷର ବାଳକ ବାଜି ରାଉତଙ୍କ ସହିତ ୧୮ ଜଣ ସାଧାରଣ ଲୋକ ପ୍ରାଣ ହରାଇଥିଲେ । ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ନେତୃତ୍ୱରେ ସଶସ୍ତ୍ର ସଂଘର୍ଷ ହୋଇ କାମାକ୍ଷ ନଗର ସବ୍‌ଡ଼ିଭିଜନକୁ ୧୦ ଦିନ ପାଇଁ ଦଖଲ କରିଥିଲେ, ତାଳଚେରରେ ପବିତ୍ର ମୋହନ ପ୍ରଧାନଙ୍କ ନେତୃତ୍ୱରେ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଏହି ଆନ୍ଦୋଳନରେ ଚନ୍ଦ୍ରବିଲ ଗ୍ରାମର ଦିବାକର ନାୟକ ପୋଲିସ ଗୁଳିର ଶିକାର ହୋଇଥିଲେ । ହିନ୍ଦୋଳରେ ବାଲୁକେଶ୍ୱର ଆଚାର୍ଯ୍ୟଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଗଠିତ ହୋଇଥିଲା । ସେହିପରି ପାଟଣା ରାଜ୍ୟରେ ପ୍ରଜାମଣ୍ଡଳ କର୍ମୀମାନେ କୃଷକ ଦଳ ନାମରେ ଏକ ରାଜନୈତିକ ସଂଗଠନ କରି ଆନ୍ଦୋଳନ କରିଥିଲେ । ୧୯୩୮ ମସିହାରେ

ଆଠଗଡ଼ରେ ରାଧାନାଥ ରଥଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଗଠନ କରାଯାଇଥିଲା । ନୟାଗଡ଼ ରାଜ୍ୟରେ ଶ୍ରୀଧର ଦାସ, ଲକ୍ଷ୍ମଣ ମହାରଣା ପ୍ରମୁଖଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଗଠିତ ହୋଇଥିଲା । ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ନୟାଗଡ଼ ପ୍ରଜାମଣ୍ଡଳ ଓ ରାଜାଙ୍କ ସିପାହୀ ମଧ୍ୟରେ ସଂଘର୍ଷ ଘଟି କୋଷ୍ଟି ଡ଼ାକୁଆ ଶହୀଦ୍ ହୋଇଥିଲେ । ସେହପରି ଗାଙ୍ଗପୁର ରାଜ୍ୟରେ ନିର୍ମଳ ମୁଣ୍ଡାଙ୍କ ନେତୃତ୍ୱରେ ମୁଣ୍ଡାମାନେ ସେଠାକାର ରାଣୀ ଓ ଇଂରେଜ ବିରୋଧରେ ଆନ୍ଦୋଳନ କରି ଆମକୋ– ସିମକୋ ସ୍ଥାନରେ ସଭା କରୁଥିବା ଅବସ୍ଥାରେ ପୋଲିସ ଗୁଳିରେ ପ୍ରାୟ ୪୦ ଜଣ ମୃତ୍ୟୁବରଣ କରିଥିଲେ । ବୌଦ୍ଧ ରାଜ୍ୟରେ ଦାମୋଦର ଷଣ୍ଢୁଆସୀ ଏବଂ ମୟୂରଭଞ୍ଜ ରାଜ୍ୟରେ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳ ଗଠିତ ରାଜଶାସନ ବିରୋଧରେ ଆନ୍ଦୋଳନ ହୋଇଥିଲା ।

ପ୍ରତ୍ୟେକ ପ୍ରଜାମଣ୍ଡଳ ନାଗରିକ ଅଧିକାର ଦାୟିତ୍ୱପୂର୍ଣ୍ଣ ସରକାର, ରାଜସ୍ୱ ବ୍ୟବସ୍ଥାର ଉନ୍ନତି ସାଧକ, ସମସ୍ତ ବେଆଇନ ଟିକସ, ବେଠି, ଭେଟି, ଉଚ୍ଛେଦ ପାଇଁ ଦାବି କରିଥିଲେ । ଅନ୍ୟ ପକ୍ଷରେ ରାଜାମାନେ ପ୍ରଜାମାନଙ୍କ ବିଦ୍ରୋହକୁ ଦମନ କରିବା ନିମନ୍ତେ ଭିତିରି ଷଡଯନ୍ତ୍ର ତଥା ପୋଲିସ ଫୋର୍ସର ସାହାଯ୍ୟ ଇଂରେଜମାନଙ୍କଠାରୁ ପାଇଥିଲେ କାରଣ ଇରେଜ ପ୍ରଶାସକମାନେ ସେମାନଙ୍କୁ ଘଣ୍ଟ ଘୋଡ଼ାଇ ରଖୁଥିଲେ । ଇତି ମଧ୍ୟରେ ୧୯୩୮ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ହରିପୁରା ଅଧିବେଶନରେ ଗୃହୀତ ପ୍ରସ୍ତାବରେ ଘୋଷଣା କରିଥିଲେ ଯେ ପୂର୍ଣ୍ଣ ସ୍ୱରାଜ୍ୟର ଆଭିମୁଖ୍ୟରେ ଗଡ଼ଜାତ ରାଜ୍ୟକୁ ସ୍ୱାଧୀନ କରିବା ଏକ କର୍ତ୍ତବ୍ୟ । ପ୍ରକୃତ ପକ୍ଷେ ସେହି ଅଧିବେଶନଠାରୁ ପ୍ରଜାମାନେ ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ପ୍ରତି ଆକୃଷ୍ଟ ହୋଇଥିଲେ । ପରବର୍ତ୍ତୀ ସମୟରେ ପ୍ରଜାମଣ୍ଡଳ ଆନ୍ଦୋଳନ ସ୍ୱାଧୀନତା ଆନ୍ଦୋଳନ ମହାସ୍ରୋତରେ ମିଶି ଯାଇଥିଲା ।

୧୯୪୧ ମସିହାରେ ବ୍ୟକ୍ତିଗତ ସତ୍ୟାଗ୍ରହ ହୋଇଥିଲା । ଏହି ବ୍ୟକ୍ତିଗତ ସତ୍ୟାଗ୍ରହର ପ୍ରଥମ ବ୍ୟକ୍ତି ଭାବରେ ଗାନ୍ଧିଜୀ ବିନୋବା ଭାବେଙ୍କୁ ମନୋନୀତ କରିଥିଲେ । ଯୁଦ୍ଧ ବିରୋଧରେ ପ୍ରଚାର କରି ବିନୋବା ବ୍ୟକ୍ତିଗତ ସତ୍ୟାଗ୍ରହ ନେତୃତ୍ୱ ନେଇ କାରାଗାରରେ ବନ୍ଦୀ ହେଲେ, ଏହି ବ୍ୟକ୍ତିଗତ ସତ୍ୟାଗ୍ରହରେ ମଧ୍ୟ ଓଡ଼ିଶାର ବହୁତ ବ୍ୟକ୍ତି ଅଂଶଗ୍ରହଣ କରି କାରାବରଣ କରିଥିଲେ ।

୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନରେ ଇଂରେଜମାନଙ୍କୁ ଭାରତ ଛାଡ଼ି ଚାଲିଯିବା ପାଇଁ ଦାବି କରିଥିଲେ ଭାରତୀୟମାନେ । ଉକ୍ତ ଗଣ ବିପ୍ଳବରେ ମଧ୍ୟ ଓଡ଼ିଶାବାସୀଙ୍କ ଅବଦାନ ଅବିସ୍ମରଣୀୟ । ଭାରତ ଛାଡ଼ ଆନ୍ଦୋଳନ ଓଡ଼ିଶାରେ ସମ୍ପୂର୍ଣ୍ଣ ସଫଳ ହୋଇଥିଲା । ଭାରତୀୟ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟି ସଦସ୍ୟ ହରେକୃଷ୍ଣ ମହତାବ ବମ୍ବେଠାରେ ଗିରଫ ହୋଇଥିଲେ । ଓଡ଼ିଶାରୁ ସମସ୍ତ କଂଗ୍ରେସ ନେତା ଗିରଫ ହେବା ସହିତ କୋରାପୁଟର ଲକ୍ଷ୍ମଣ ନାଏକଙ୍କୁ ଜେଲରଙ୍କ ଉପସ୍ଥିତିରେ ବ୍ରହ୍ମପୁର ଜେଲରେ ଫାଶି ଦିଆଗଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷ କଟକରେ ଜନ୍ମ ଗ୍ରହଣ କରି ନିଜର ମେଧା ଓ ଧୀଶକ୍ତି ବଳରେ ଇଣ୍ଡିଆନ ସିଭିଲ ସର୍ଭିସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧ୍ୟ ଚାକିରିରେ ଯୋଗ ନ ଦେଇ ଅଳ୍ପ ବୟସରୁ ଜନନୀ ଜନ୍ମଭୂମିଶ୍ଚ ସର୍ଗାଦପି ଗରୀୟସୀ ନୀତିରେ କାର୍ଯ୍ୟ କରି ଦେଶ ମାତୃକାର ସେବା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ଗାନ୍ଧିଜୀଙ୍କ ନୀତି ଅହିଂସା ଓ ନିରସ୍ତ୍ର ହେଲେ ସୁଭାଷଙ୍କ ନୀତି ଥିଲା ସଶସ୍ତ୍ର । ତ୍ରିପୁରା ଅଧିବେଶନରେ କଂଗ୍ରେସ ସଭାପତି ପଦରୁ ଓହରି ଯାଇ ବ୍ରିଟିଶମାନେ ସତର୍କତା ଅବଲମ୍ବନ କରିବା ସତ୍ତ୍ୱେ ନେତାଜୀ ଛଦ୍ମବେଶରେ ଭାରତ ଛାଡ଼ି ଚାଲିଯାଇ ଦେଶର ସ୍ୱାଧୀନତା ପାଇଁ ଇଟାଲୀ ଜର୍ମାନୀ ପ୍ରଭୃତି ବୈଦେଶିକ ସୈନ୍ୟର ସାହାଯ୍ୟ ଚାହିଁଥିଲେ । ୧୯୪୩ ମସିହା ଜୁନ ୪ ତାରିଖରେ ସିଙ୍ଗାପୁରରେ ଆଜାଦ୍ ହିନ୍ଦ ଫୌଜର ନେତୃତ୍ୱ ନେଇ ସୁଭାଷ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଅଧିକାର କରି ଶହୀଦ୍ ଓ ସ୍ୱରାଜ ନାମରେ ନାମିତ କଲେ । ଗାନ୍ଧିଜୀଙ୍କର ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନର ମହାମନ୍ତ୍ର କର ବା ମରରେ ଦୀକ୍ଷିତ ହୋଇ ମାଳତୀ ଚୌଧୁରୀ ବମ୍ବେ (ମୁମ୍ବାଇ) ରୁ ଓଡ଼ିଶା ଫେରିବା ପରେ ଇଂରେଜ ସରକାର ତାଙ୍କୁ ଗିରଫ କରିଥିଲେ ।

ଏହିପରି ଭାବରେ ଭାରତର ସ୍ୱାଧୀନତା ସଂଗ୍ରାମର ମହାନ୍ ସ୍ରୋତରେ ଓଡ଼ିଶାର ସଂଗ୍ରାମୀମାନଙ୍କ ଅବଦାନ ସମଗ୍ର ଦେଶରେ ଏଇ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିଥିଲା । ଏହି ସ୍ୱାଧୀନତା ସଂଗ୍ରାମୀନେ ଭାରତର ହୃତ ଗୌରବ ଫେରାଇ ଆଣିବା ପାଇଁ ବୀରତ୍ୱର ସହିତ କଳ, ବଳ, କୌଶଳ ଓ ଅହିଂସା ମଧ୍ୟରେ ଆମ ଦେଶଙ୍କୁ ସ୍ୱାଧୀନ କରିଥିଲେ । ବାସ୍ତବିକ ଭାରତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ ଓଡ଼ିଶାବାସୀଙ୍କ ଅବଦାନ ଅତୁଳନୀୟ ଅଟେ । ଦେଶ ଓ ଜାତି ପାଇଁ ସମାଜର ସକଳ ବାଧା ବନ୍ଧନକୁ ଛିନ୍ନ କରି ଯେଉଁ ଦେଶ ମାତୃକାର ମୁକ୍ତି ପାଇଁ ସେମାନେ ନିଜର ଜୀବନକୁ ଆତ୍ମୋତ୍ସର୍ଗ କରିଯାଇଛନ୍ତି, ସେମାନଙ୍କର ତ୍ୟାଗର କାହାଣୀ ସବୁଦିନ ପାଇଁ ଦେଶବାସୀଙ୍କୁ ଅନୁପ୍ରାଣିତ କରୁ, ଏହା ହିଁ କାମନା ।

ଗ୍ରାମ / ପୋ.ଅ – ଖୁଚିଂ
ଜିଲ୍ଲା– ମୟୂରଭଞ୍ଜ–୭୫୭୦୩୯

ଚଳନ୍ତିକା

# ଇସ୍ରାଏଲ୍-ପାଲେଷ୍ଟାଇନ୍ ଯୁଦ୍ଧର ସମାଧାନ ସମ୍ଭବ

ମହାମେଘବାହନ ଐର ଖାରବେଳ ସ୍ୱାଇଁ

ଗତ କେତେ ସପ୍ତାହ ମଧ୍ୟରେ ମଧ୍ୟ ପ୍ରାଚ୍ୟର ଗାଜାରେ ଚାଲିଥିବା ଇସ୍ରାଏଲ-ପାଲେଷ୍ଟାଇନ୍ ଯୁଦ୍ଧକୁ ନେଇ ଭାରତ ବିଚିତ୍ର ଆଚରଣ ପ୍ରଦର୍ଶନ କରିଛି। ଏହି ଲଢ଼େଇ ପାଖାପାଖି ମାସେ ହେବ ଲାଗିଲାଣି ଓ ଏଥିରେ ୧,୭୦୦ରୁ ଅଧିକ ବ୍ୟକ୍ତି ପ୍ରାଣ ହରାଇଲେଣି, ଯେଉଁମାନଙ୍କ ମଧ୍ୟରୁ ୧,୬୦୦ରୁ ଅଧିକ ହେଉଛନ୍ତି ଗାଜାବାସୀ। ଏହି ଲଢ଼େଇକୁ ନେଇ ଭାରତର ସଂସଦରେ ବିରୋଧୀଦଳମାନଙ୍କ ଚାପ ଯୋଗୁଁ ବିତର୍କ ହୋଇଥିଲା। କିନ୍ତୁ ପାଲେଷ୍ଟାଇନକୁ ସମର୍ଥନ କରି ଏକ ପ୍ରସ୍ତାବ ଆଗତ ହେବା ଯୁକ୍ତିକୁ ମୋଦି ସରକାର ବିରୋଧ କରିଥିଲେ। ଏନ୍.ଡି.ଏ.ସରକାରଙ୍କ ପକ୍ଷରୁ କୁହାଯାଇଥିଲା ଯେ, ଭାରତ ଏ ବିଷୟରେ ହେଉଛି ନିରପେକ୍ଷ। ତେଣୁ କୌଣସି ଗୋଟିଏ ପକ୍ଷକୁ ସମର୍ଥନ କରି ଭାରତର ସଂସଦରେ ଏକ ପ୍ରସ୍ତାବ ଗୃହୀତ ହେବା କଥାକୁ ସରକାର ସମର୍ଥନ କରନ୍ତି ନାହିଁ।

ଅତୀତରେ ନେହେରୁଙ୍କ ସରକାରଙ୍କଠାରୁ ଆରମ୍ଭ କରି କଂଗ୍ରେସ ନେତୃତ୍ୱାଧୀନ ମନମୋହନ ସିଂହଙ୍କ ସରକାରଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ସରକାର (୧୯୭୭ର ଜନତା ପାର୍ଟି ସରକାର ଓ ୧୯୯୮ର ବାଜପେୟୀ ସରକାରଙ୍କୁ ବାଦ୍ ଦେଇ) ପାଲେଷ୍ଟାଇନକୁ ସମର୍ଥନ କରି ଆସିଛନ୍ତି। ପାଲେଷ୍ଟାଇନ ରାଜ୍ୟକୁ ଏକପ୍ରକାର ସରକାରୀ ମାନ୍ୟତା ଦେଇ ଆସିଛନ୍ତି। ପୂର୍ବତନ ପାଲେଷ୍ଟାଇନର ରାଷ୍ଟ୍ରପତି ଓ ପାଲେଷ୍ଟାଇନର 'ଅଲ୍-ଫତାହ' ଆନ୍ଦୋଳନର ମୁଖ୍ୟ ୟାସେର ଆରାଫତ୍‌ଙ୍କୁ ଏକ ସ୍ୱୀକୃତ ରାଷ୍ଟ୍ରର ରାଷ୍ଟ୍ରମୁଖ୍ୟଙ୍କ ସମ୍ମାନ ପ୍ରଦର୍ଶନ କରି ଆସିଛନ୍ତି। ଆରାଫତ୍ ସେଥିପାଇଁ ଅତୀତରେ ବାରମ୍ବାର ଭାରତ ଆସିଛନ୍ତି ଓ ରାଜକୀୟ ସମ୍ମାନ ପାଇ ଫେରିଛନ୍ତି। ଜାତିସଙ୍ଘଠାରୁ ଆରମ୍ଭକରି ଅଧିକାଂଶ ଆନ୍ତର୍ଜାତିକ ସଂଗଠନମାନଙ୍କରେ ଯେଉଁଠି ସୁଯୋଗ ମିଳିଛି, ଭାରତ, ପାଲେଷ୍ଟାଇନକୁ ସମର୍ଥନ ଦେଇ ଆସିଛି। ତେଣୁ ଯେତେବେଳେ ଏ ସମ୍ପର୍କିତ କୌଣସି ପ୍ରସ୍ତାବ ଗ୍ରହଣ କରିବାକୁ ଏନ୍.ଡି.ଏ. ସରକାର ମନା କରିଦେଲେ, ସେତେବେଳେ ମନେହେଲା, ପ୍ରଥମ ଥର ପାଇଁ ଏହି ଅଣକଂଗ୍ରେସ ସରକାର ଭାରତର ବିଦେଶ ନୀତିରେ ଏକ ମୌଳିକ ପରିବର୍ତ୍ତନ ଆଣିଲେ।

ପୂର୍ବରୁ କୁହାଯାଉଥିଲା ଯେ, ପାଲେଷ୍ଟାଇନକୁ ସମର୍ଥନ ଦେଇ କଂଗ୍ରେସ ଦଳ ଭାରତର ମୁସଲମାନମାନଙ୍କୁ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଥିଲା ତଥା ନିର୍ବାଚନରେ ସେମାନଙ୍କ ଭୋଟ ପାଇବାକୁ ଚେଷ୍ଟା କରୁଥିଲା। ସେତେବେଳେ ସାରା ବିଶ୍ୱର ମୁସଲମାନ ସମ୍ପ୍ରଦାୟ ପାଲେଷ୍ଟାଇନକୁ ଇସ୍ରାଏଲ ବିରୁଦ୍ଧରେ ସମର୍ଥନ ଜଣାଉଥିଲେ।

କିନ୍ତୁ ଦୁଇ ସପ୍ତାହ ତଳେ ଓ ଭାରତର ସଂସଦରେ ପାଲେଷ୍ଟାଇନକୁ ସମର୍ଥନ କରି ପ୍ରସ୍ତାବ ଗ୍ରହଣ କରା ନଗଲା ପରେ ଜେନେଭାଠାରେ ଅନୁଷ୍ଠିତ ଜାତିସଙ୍ଘର ମାନବିକ ଅଧିକାର କମିଶନ୍‌ର ଏକ ବୈଠକରେ ଆସିଥିବା ପାଲେଷ୍ଟାଇନକୁ ସମର୍ଥନ କରୁଥିବା ପ୍ରସ୍ତାବ ସପକ୍ଷରେ ଭାରତ ଭୋଟ ଦେଇଛି ଏବଂ ମାତ୍ର ସପ୍ତାହକ ମଧ୍ୟରେ ଦୁଇଟି ଅଲଗା ପ୍ରକାର ସଂକେତ ଦେଇ ଭାରତ ସମସ୍ତଙ୍କୁ ଚକିତ କରି ଦେଇଛି। ଜାତିସଙ୍ଘରେ ପାଲେଷ୍ଟାଇନ ସପକ୍ଷରେ ଭୋଟ ଦେଇ ମୋଦି ସରକାର ସଙ୍କେତ ଦେଇଛନ୍ତି ଯେ, ଏ ସମ୍ପର୍କରେ ତାଙ୍କ ପୂର୍ବବର୍ତ୍ତୀ କଂଗ୍ରେସ ନେତୃତ୍ୱାଧୀନ ୟୁପିଏ ସରକାର ଓ ତାଙ୍କର ମତ ସମାନ। ଭାରତରେ ଥିବା ଅଗଣିତ ଇସ୍ରାଏଲ ସପକ୍ଷବାଦୀମାନେ ଏହାକୁ ନେଇ ଘୋର କ୍ଷୁବ୍ଧ। କାହିଁକି ମୋଦି ସରକାର ଏପରି କଲେ, ତାହା ସେମାନେ ବୁଝି ପାରୁନାହାନ୍ତି। ସେମାନେ ଯୁକ୍ତି କରୁଛନ୍ତି ଯେ, ଯଦିବି ପାଲେଷ୍ଟାଇନ ବିରୁଦ୍ଧରେ ଭୋଟ ଦେବାକୁ ଭାରତ ନଚାହିଁଲା, ତେବେ ଅନ୍ତତଃ

ଭୋଟ ଦାନରୁ ବିରତ ରହିଥାନ୍ତା। ଭାରତର ସଂସଦରେ ନିଜକୁ ଏହି ବିବାଦରେ ନିରପେକ୍ଷ ବୋଲି ବର୍ଣ୍ଣନା କରିଥିବା ଏନ.ଡି.ଏ. ସରକାର ଜାତିସଙ୍ଘ ମଞ୍ଚରେ ଭୋଟ ନଦେଇ ନିଜର ସେହି ନିରପେକ୍ଷତା ସାବ୍ୟସ୍ତ କରିପାରିଥାନ୍ତେ ! ସେଠାରେ ଭୋଟ ଦେଇ ନିଜକୁ ପକ୍ଷପାତୀ ବୋଲି ଉପସ୍ଥାପିତ କଲେ କାହିଁକି ?

କେନ୍ଦ୍ର ସରକାରଙ୍କ ପକ୍ଷରୁ ଯୁକ୍ତି କରାଯାଉଛି ଯେ, ଭାରତ ଚାହିଁଲେ ମଧ୍ୟ ଭୋଟ ଦାନରୁ ବିରତ ରହିପାରିନଥାନ୍ତା । କାରଣ, ଜୁଲାଇ ତୃତୀୟ ସପ୍ତାହରେ ବ୍ରାଜିଲଠାରେ ଯେଉଁ 'ବ୍ରିକ୍ସ' ରାଷ୍ଟ୍ରଗୋଷ୍ଠୀର ସମ୍ମେଳନ ହୋଇଥିଲା ଓ ଯେଉଁଥିରେ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ଯୋଗ ଦେଇଥିଲେ ସେଥିରେ ପାଲେଷ୍ଟାଇନ ପ୍ରସଙ୍ଗକୁ ନେଇ ଗୋଟିଏ ପ୍ରସ୍ତାବ ସର୍ବସମ୍ମତ ଭାବେ ଗୃହୀତ ହୋଇଥିଲା । ଏହି ରାଷ୍ଟ୍ରଗୋଷ୍ଠୀରେ ବିଶ୍ୱର ନବ୍ୟ ବିକାଶଶୀଳ ରାଷ୍ଟ୍ର, ବ୍ରାଜିଲ, ରୁଷିଆ, ଭାରତ, ଚୀନ୍ ଓ ଦକ୍ଷିଣଆଫ୍ରିକା ସଦସ୍ୟ ରାଷ୍ଟ୍ର ରୂପେ ଯୋଗ ଦେଇଥିଲେ । ସେଥିରେ ଯେଉଁ ପ୍ରସ୍ତାବ ଗୃହୀତ ହୋଇଥିଲା ସେଥିରେ ଅଛି, 'ଦୁଇ ରାଷ୍ଟ୍ରୀୟ ସମାଧାନ ଯେଉଁଥିରେ ପରସ୍ପରକୁ ଲାଗିକରି ରହୁଥିବା ଓ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ହୋଇପାରୁଥିବା ଏକ ସ୍ୱାଧୀନ ପାଲେଷ୍ଟାଇନ ରାଷ୍ଟ୍ର ଇସ୍ରାଏଲକୁ ଲାଗିକରି ରହିବା ଉଚିତ, ଯେଉଁଥିରେ ୪ ଜୁନ, ୧୯୬୭ରେ ଥିବା ସୀମାରେଖାକୁ ଦ୍ୱିପାକ୍ଷିକ ସ୍ତରରେ ତଥା ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତି ଦିଆଯିବା ଦରକାର ତଥା ପୂର୍ବ ଜେରୁଜେଲମ୍‌କୁ ଏହାର (ପାଲେଷ୍ଟାଇନର) ରାଜଧାନୀ ରୂପେ ଗ୍ରହଣ କରାଯିବ.....।

ଏଠାରେ ଉଲ୍ଲେଖନୀୟ ଯେ, କୌଣସି ରାଷ୍ଟ୍ରଗୋଷ୍ଠୀର ସମ୍ମେଳନରେ ଏକ ମିଳିତ ପ୍ରସ୍ତାବ ଗୃହୀତ ହେଲେ ତାହା ଦିନେ ଦୁଇଦିନ ମଧ୍ୟରେ ଗୃହୀତ ହୋଇନଥାଏ । ବାସ୍ତବ ସମ୍ମେଳନର କେତେ ମାସ ପୂର୍ବରୁ ସଦସ୍ୟ ରାଷ୍ଟ୍ରମାନଙ୍କର ପଦସ୍ଥ ଅଧିକାରୀମାନେ ମିଳିତ ହୋଇ ଚିଠା ପ୍ରସ୍ତାବଟିକୁ ପ୍ରସ୍ତୁତ କରିଥାନ୍ତି । ବାସ୍ତବ ସମ୍ମେଳନରେ ସେହି ଚିଠା ପ୍ରସ୍ତାବଟିକୁ ସାମାନ୍ୟ ଅଦଳ ବଦଳ କରି ଗୃହୀତ କରାଯାଇଥାଏ । 'ବ୍ରିକ୍ସ' ସମ୍ମେଳନ କ୍ଷେତ୍ରରେ କେତେ ମାସ ତଳୁ ଏହି ପ୍ରସ୍ତାବର ଚିଠା ପ୍ରସ୍ତୁତ ହୋଇଥିବ ଯେତେବେଳେ ୟୁପିଏ ସରକାର କ୍ଷମତାସୀନ ଥିଲେ। ୟୁପିଏ ସରକାରଙ୍କ ନୀତି ଅନୁସାରେ ସେତେବେଳେ ପାଲେଷ୍ଟାଇନ ସପକ୍ଷରେ ଏକ ପ୍ରସ୍ତାବ ପ୍ରସ୍ତୁତ ହୋଇଥିବା ଏକାନ୍ତ ସ୍ୱାଭାବିକ। ଏହି ରାଷ୍ଟ୍ରଗୋଷ୍ଠୀର ଅନ୍ୟ ସଦସ୍ୟ ରୂପେ ରୁଷିଆ ଓ ଚୀନ ଥିବାରୁ ତଥା ସେମାନେ ସଦାବେଳେ ଆନ୍ତର୍ଜାତିକ ସ୍ତରରେ ଆମେରିକାର ବିରୋଧ କରୁଥିବାରୁ ଏ କ୍ଷେତ୍ରରେ ପାଲେଷ୍ଟାଇନକୁ ସମର୍ଥନ ଦେଇଛନ୍ତି। କାରଣ, ସଦାବେଳେ ଆମେରିକା, ଇସ୍ରାଏଲକୁ ପୂର୍ଣ୍ଣ ରୂପେ ପୃଷ୍ଠପୋଷକତା କରି ଆସିଛି। ବ୍ରାଜିଲ ମଧ୍ୟ ଏହି ପ୍ରସଙ୍ଗରେ ପାଲେଷ୍ଟାଇନକୁ ସମର୍ଥନ ଦେଇ ଆସିଛି। ଭାରତ ହୁଏତ ଏକାକୀ ଏହାର ବିରୋଧ କରିପାରିଥାନ୍ତ । ଯାହା ସେ କରିନାହିଁ।

ଇତିହାସକୁ ପର୍ଯ୍ୟାଲୋଚନା କଲେ, ଦୁଇ ହଜାର ବର୍ଷ ତଳେ ଯେତେବେଳେ ଯୀଶୁଖ୍ରୀଷ୍ଟ ଜନ୍ମ ନେଲେ, ସେତେବେଳେ ପାଲେଷ୍ଟାଇନରେ ଇହୁଦୀ ସାମ୍ରାଜ୍ୟ ଥିଲା। ପାଲେଷ୍ଟାଇନର ରାଜା ଇହୁଦୀ ଥିଲେ। ଯୀଶୁଖ୍ରୀଷ୍ଟ ଏକ ନୂଆ ଧର୍ମ ପ୍ରତିଷ୍ଠା କରିବାରୁ ତାଙ୍କୁ ଇହୁଦୀ ସମ୍ରାଟ ବିରୋଧ କଲେ। ଯୀଶୁଖ୍ରୀଷ୍ଟ ନିଜେ ଇହୁଦୀ ଥିଲେ ମଧ୍ୟ ତାଙ୍କୁ ଇହୁଦୀମାନେ କ୍ରୁଶବିଦ୍ଧ କରି ମାରିଦେଲେ। କିନ୍ତୁ ଯୀଶୁଖ୍ରୀଷ୍ଟଙ୍କ ମୃତ୍ୟୁ ପରେ ଖ୍ରୀଷ୍ଟଧର୍ମର ପ୍ରସାର ବ୍ୟାପକ ହେବାରୁ ଖ୍ରୀଷ୍ଟିଆନମାନେ ଅଧିକ ପ୍ରଭାବଶାଳୀ ହୋଇ ଅତ୍ୟାଚାରୀ ଇହୁଦୀମାନଙ୍କୁ ପାଲେଷ୍ଟାଇନରୁ ତଡ଼ିଦେଲେ। ଏହା ପରେ ଦୀର୍ଘ ୨୦୦ ବର୍ଷ ଧରି ଇହୁଦୀମାନେ ନିଜ ରାଷ୍ଟ୍ର ଛାଡ଼ି ସାରା ପୃଥିବୀରେ ବିଛାଡ଼ି ହୋଇ ପଡ଼ିଲେ। ୟୁରୋପ, ଆମେରିକା ଓ ଭାରତରେ ମଧ୍ୟ ସେମାନେ ବସବାସ କରିବାକୁ ଲାଗିଲେ ଶତାବ୍ଦୀ ଶତାବ୍ଦୀ ଧରି।

ଇହୁଦୀମାନେ କିନ୍ତୁ ଅତି ବୁଦ୍ଧିମାନ ଓ ବ୍ୟବସାୟୀ ଥିଲେ। ସେମାନଙ୍କ ସଂବୃଦ୍ଧି ସେମାନଙ୍କୁ ସ୍ଥାନୀୟ ଲୋକମାନଙ୍କର ଈର୍ଷାର କାରଣ ରୂପେ ଠିଆ କରି ଦେଲା। ବିଖ୍ୟାତ ଇଂରାଜୀ ନାଟ୍ୟକାର ସେକ୍ସପିୟରଙ୍କର 'ମର୍ଚ୍ଚେଣ୍ଟ ଅଫ୍ ଭେନିସ୍' ନାଟକରେ 'ସାଇଲକ୍' ବୋଲି ଯେଉଁ କୃପଣ, ଅତ୍ୟାଚାରୀ ଓ ଧନପିପାସୁ ଚରିତ୍ରର ବର୍ଣ୍ଣନା ଅଛି,ସେ ହେଉଛି ଇହୁଦୀ । ଭାରତର ଅଟଳବିହାରୀ ବାଜେପେୟୀଙ୍କ ସରକାର ବେଳେ ସେନାବାହିନୀର ଜଣେ ବିଶିଷ୍ଟ ସେନାଧକ୍ଷ ଥିବା ଲେଫ୍ଟନାଣ୍ଟ ଜେନେରାଲ୍ ଜାକବ୍‌ଙ୍କୁ ପଞ୍ଜାବର ରାଜ୍ୟପାଳ କରାଯାଇଥିଲା । ଜର୍ମାନୀରେ ସେମାନେ ସଂବୃଦ୍ଧ ଥିବାହେତୁ, ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ସେଠାକାର ଏକ ନାୟକ ହିଟଲର୍, ସେମାନଙ୍କ ମଧ୍ୟରୁ ପ୍ରାୟ ତିନିଲକ୍ଷଙ୍କୁ ଗ୍ୟାସ୍ ଚାମ୍ବର ମଧ୍ୟରେ ରଖି, ବିଷାକ୍ତ ଗ୍ୟାସ ପ୍ରୟୋଗ କରି ମାରି ଦେଇଥିଲେ । ଜର୍ମାନୀର ଅଧୋଗତି ପାଇଁ ହିଟଲର ସେମାନଙ୍କୁ ହିଁ ଦାୟି କରିଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଜୟୀ ଇଂଲାଣ୍ଡ ନେତୃତ୍ୱାଧୀନ ମିତ୍ରପକ୍ଷ, ହିଟଲର୍ ନିର୍ଯାତିତ ଏହି ଅସହାୟ ଜାତିକୁ

ପାଲେଷ୍ଟାଇନରେ ଜାଗା ଦେଇଥିଲେ ଏକ ନୂଆରାଷ୍ଟ୍ର ଗଠନ ପାଇଁ । ସେତେବେଳେ ପାଲେଷ୍ଟାଇନରେ ମୁସଲମାନ ଓ ଇହୁଦୀଙ୍କର ସଂଖ୍ୟା ପ୍ରାୟ ସମାନ ଥିଲା । ପାର୍ଶ୍ୱବର୍ତ୍ତୀ ଇସଲାମୀ ରାଷ୍ଟ୍ର, ଇଜିପ୍ଟ, ଜୋର୍ଡାନ୍, ସିରିଆ, ଲେବାନନ୍ ଆଦି ପାଲେଷ୍ଟାଇନକୁ ସମର୍ଥନ ଦେଉଥିଲେ । ସେମାନେ ସମସ୍ତେ ଥିଲେ ନୂଆ ପାଲେଷ୍ଟାଇନ ରାଷ୍ଟ୍ରର ବିରୋଧୀ । ସେମାନେ ଏକ ମିଳିତ ସେନା ଗଠନ କରି ଇସ୍ରାଏଲ ବିରୁଦ୍ଧରେ ଲଢ଼େଇ ଆରମ୍ଭ କଲେ । ସେତେବେଳେ ପାଲେଷ୍ଟାଇନ ବ୍ରିଟିଶ୍ ଶାସନାଧୀନ ଥିଲା । କିନ୍ତୁ ସେମାନେ ସେହି ଅଞ୍ଚଳ ଛାଡ଼ିବାକୁ ଏକ ନିର୍ଦ୍ଦିଷ୍ଟ ତାରିଖ ଘୋଷଣା କରିବାରୁ ଇହୁଦୀ ଓ ମୁସଲମାନମାନଙ୍କ ମଧ୍ଯରେ ଘୋର ଯୁଦ୍ଧ ଆରମ୍ଭ ହେଲା । ବ୍ରିଟିଶ୍‌ମାନେ ଇହୁଦୀମାନଙ୍କୁ ଜାଗା ଦେଇଥିଲେ ମଧ୍ୟ ସେ ଜାଗାକୁ ଦଖଲ କରିବା ପାଇଁ ସେମାନେ ତାଙ୍କୁ (ଇହୁଦୀମାନଙ୍କୁ) କୌଣସି ସାହାଯ୍ୟ କଲେ ନାହିଁ । ଭାରତର ବ୍ରିଟିଶ ସରକାର ସ୍ୱାଧୀନତା ଆନ୍ଦୋଳନ ବେଳେ ମୁସଲିମ୍ ଲିଗ୍‌କୁ ପରୋକ୍ଷ ସମର୍ଥନ ଦେବା ପରି ପାଲେଷ୍ଟାଇନକୁ ମଧ୍ୟ ସେଠାରେ ପରୋକ୍ଷ ସମର୍ଥନ ଦେଲେ । କିନ୍ତୁ ଇହୁଦୀମାନେ ସେମାନଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା କରି ଯେମିତି ଅସାଧାରଣ ବୀରତ୍ୱର ସହିତ ଲଢ଼ିଲେ ତାହା ବିଶ୍ୱ ଇତିହାସରେ ଲିପିବଦ୍ଧ ହୋଇ ରହିଛି । ନୂଆକରି ବିଶ୍ୱର ବିଭିନ୍ନ ଦେଶରୁ ଆସି ଇସ୍ରାଏଲରେ ପହଁଞ୍ଚିଥିବା ଓ ଭାଷା ମଧ୍ୟ ଜାଣିନଥିବା ଇହୁଦୀମାନେ ଯେମିତି ପିତୃଭୂମି ପାଇଁ ଲଢ଼ିଲେ ଓ ପ୍ରାଣବଳି ଦେଲେ ତାହା ଅବିଶ୍ୱାସ୍ୟ । ଗୋଟିଏ ପଟରେ ଇହୁଦୀମାନଙ୍କର ଐକ୍ୟବଦ୍ଧ ସଂଗ୍ରାମ ବେଳେ ଅନ୍ୟ ପକ୍ଷରେ ପାଲେଷ୍ଟାଇନକୁ ସମର୍ଥନ କରୁଥିବା ବିଭିନ୍ନ ପଡ଼ୋଶୀ ଇସଲାମୀ ରାଷ୍ଟ୍ରମାନେ କେମିତି ପାଲେଷ୍ଟାଇନ ଦଖଲ ବେଳେ ନିଜେ ଅନ୍ୟ ମିତ୍ର ରାଷ୍ଟ୍ର ଅପେକ୍ଷା ଅଧିକ ଅଞ୍ଚଳ ମାଡ଼ି ବସିବେ ସେହି ଲକ୍ଷ୍ୟରେ ରହିଲେ । ପାଲେଷ୍ଟାଇନ ରାଷ୍ଟ୍ର ବରଂ ପ୍ରତିଷ୍ଠା ନହେଉ, କିନ୍ତୁ ଅନ୍ୟ ପଡ଼ୋଶୀ ଇସଲାମୀ ରାଷ୍ଟ୍ର ଯେମିତି ଅଞ୍ଚଳ ଦଖଲ କରିବାରେ ସଫଳ ନହେଉ, ତାହା ଥିଲା ସେମାନଙ୍କର ଅସଲ ଲକ୍ଷ୍ୟ । ତେଣୁ ଇଜିପ୍ଟ, ଜୋର୍ଡାନ, ସିରିଆ ତଥା ପାଲେଷ୍ଟାଇନ ମୁକ୍ତି ସଂଗଠନ ଆଦି ପାରସ୍ପରିକ କଳହ ଓ ତର୍ଣ୍ଣିକଟା ନୀତିରେ ବ୍ୟସ୍ତ ରହିବାରୁ ଇହୁଦୀମାନେ ସେମାନେ ଚାହୁଁଥିବା ଅନେକ ଅଞ୍ଚଳ ଦଖଲ କରି ନେଲେ, ଯଦିଓ ସେମାନଙ୍କର ସ୍ୱପ୍ନର ଜେରୁସେଲମ୍ ସହର ସେମାନଙ୍କର ନିୟନ୍ତ୍ରଣ ବାହାରେ ରହିଗଲା । ଯୁଦ୍ଧ ବିରତି ଘୋଷଣା ବେଳକୁ ଏହି ସ୍ଥିତି ଥିଲା ।

ଏସବୁ ଘଟଣା ଘଟିଥିଲା ୧୯୪୮ରେ ଯେତେବେଳେ ଭାରତ ମଧ୍ୟ ସ୍ୱାଧୀନତା ପାଇଲା । ଏହାପରେ କିନ୍ତୁ ଇସ୍‌ଲାମୀ ରାଷ୍ଟ୍ରମାନେ ଇସ୍ରାଏଲକୁ ପୃଥିବୀ ପୃଷ୍ଠରୁ ଲୋପ କରିଦେବାକୁ ବାରମ୍ବାର ଚେଷ୍ଟା କଲେ । ଆତ୍ମରକ୍ଷା ପାଇଁ ଇସ୍ରାଏଲକୁ ୧୯୪୮ ଓ ୧୯୬୭ ଏମିତି ୧୯ ବର୍ଷ ଧରି ଅଦମ୍ୟ ପ୍ରୟାସ କରିବାକୁ ପଡ଼ିଲା । ମୁଖ୍ୟତଃ ଆମେରିକା ଓ ତା'ର ବନ୍ଧୁ ରାଷ୍ଟ୍ରମାନଙ୍କର ସ୍ୱୀକୃତି ଓ ସହଯୋଗ ଯୋଗୁଁ ଇସ୍ରାଏଲ ସେତେବେଳେ କୌଣସି ପ୍ରକାର ବଞ୍ଚିଗଲା ।

କିନ୍ତୁ ୧୯୬୭ରେ ଯେତେବେଳେ ପୂର୍ବବର୍ଣ୍ଣିତ ଇସଲାମୀ ରାଷ୍ଟ୍ରମାନେ ମିଳିତ ଭାବେ ଚାରିପଟୁ ଇସ୍ରାଏଲ ଉପରେ ଆକ୍ରମଣ କରି ମାତ୍ର ସପ୍ତାହକ ମଧ୍ୟରେ ଏ ଦେଶକୁ ପୃଥିବୀ ପୃଷ୍ଠରୁ ଲୋପ କରିଦେବେ ବୋଲି ବାହାସ୍ଫୋଟ ମାରୁଥିଲାବେଳେ ଯୁଦ୍ଧ ଆରମ୍ଭ ହେବାର ମାତ୍ର ୭ ଦିନ ମଧ୍ୟରେ ଇସ୍ରାଏଲ ତା'କୁ ଆକ୍ରମଣ କରିଥିବା ସମସ୍ତ ପଡ଼ୋଶୀ ଦେଶର ଯୁଦ୍ଧ ବିମାନମାନଙ୍କୁ ଧ୍ୱଂସ କରିଦେବା ସଙ୍ଗେସଙ୍ଗେ ସିରିଆର ଗୋଲାନ୍ ହାଇଟସ୍, ଇଣ୍ଟର ସାଏନାଇ ମରୁଭୂମି, ପାଲେଷ୍ଟାଇନର ପଶ୍ଚିମତଟ (ଗୋଲାନ୍ ହାଇଟ୍‌ସ୍ ଓ ଗାଜାପଟି) ଅଞ୍ଚଳକୁ ଦଖଲ କରିନେଲା । କେବଳ ସେତକ ନୁହେଁ, ୧୯୪୮ରେ ଜେରୁସେଲମ୍ ସହର ଦଖଲ କରିବାରେ ସେମାନେ ଯେଉଁ ବିଫଳ ହୋଇଥିଲେ, ତାହାକୁ ଏଥର ସଫଳତାରେ ପରିଣତ କରି ନିଜର ରାଜଧାନୀ ତେଲ୍‌ଆଭିଭ୍‌କୁ ସେଠାରୁ ଉଠାଇନେଲେ । ପାଲେଷ୍ଟାଇନକୁ ଅତୀତରେ ପୂର୍ଣ୍ଣ ସମର୍ଥନ ଦେଇ ଆସିଥିବା ଇସ୍‌ଲାମୀ ରାଷ୍ଟ୍ରମାନେ ଏତେବେଳେ କେବଳ କିଛି ବିବୃତି ଦେଇ ନିଜର କର୍ତ୍ତବ୍ୟ ସମାପନ କଲେ । ଏହାପରେ ଅନେକବାର ଛୋଟ ଛୋଟ ଯୁଦ୍ଧ ହୋଇଛି ଯେଉଁଥିରେ ସଦାବେଳେ ଇସ୍ରାଏଲ ହିଁ ଜିତି ଆସିଛି । କିନ୍ତୁ ୧୯୭୨ରେ ଜର୍ମାନୀର ବର୍ଲିନଠାରେ ଯେଉଁ ଅଲିମ୍ପିକସ୍ ଖେଳ ହୋଇଥିଲା ସେଠାରେ ପାଲେଷ୍ଟାଇନ ଉଗ୍ରବାଦୀମାନେ ସାରା ଇସ୍ରାଏଲର ଖେଳାଳୀମାନଙ୍କୁ ଗୁଳିକରି ହତ୍ୟା କରିଥିଲେ ।

ପାଲେଷ୍ଟାଇନକୁ ଏକ ସ୍ୱତନ୍ତ୍ର ରାଷ୍ଟ୍ରରେ ପରିଣତ କରିବା ପାଇଁ ଚେଷ୍ଟା ଏଯାଏ ସଫଳ ହୋଇନାହିଁ । ଇରାନର ପୂର୍ବତନ ରାଷ୍ଟ୍ରପତି ମହମ୍ମଦ ଅହମେଦୀ ନେଜାଦ୍ ଗୋଟିଏ ପଟରେ ପରମାଣୁ ଅସ୍ତ୍ର ନିର୍ମାଣ ପାଇଁ ପ୍ରୟାସ ଜାରି ରଖିଥିବାବେଳେ ଅନ୍ୟ ପଟରେ 'ଇସ୍ରାଏଲକୁ ପୃଥିବୀ ପୃଷ୍ଠରୁ ଲୋପ କରି ଦିଆଯିବ' ବୋଲି ବାରମ୍ବାର ବିବୃତି ଦେଇ ବାତାବରଣକୁ ଉତ୍ତେଜିତ କରି ରଖିଛନ୍ତି । ଅନ୍ୟ ପକ୍ଷରେ 'ହମାସ୍' ବୋଲି ଏକ ଉଗ୍ରବାଦୀ ସଂଗଠନ ପାଲେଷ୍ଟାଇନରେ ଗଢ଼ି ଉଠିଛି ଯିଏ ଇସ୍ରାଏଲକୁ ପୃଥିବୀ ପୃଷ୍ଠରୁ ଲୋପ କରିଦେବାକୁ ନିଜର ମୁଖ୍ୟ ଲକ୍ଷ୍ୟ ବୋଲି ଘୋଷଣା

କରିଆସିଛି। ଏହି ଉଗ୍ରବାଦୀ ସଂଗଠନକୁ ଇରାନ ଓ ଅନ୍ୟ ଇସଲାମୀ ରାଷ୍ଟ୍ରମାନେ ଅତୀତରେ ସମର୍ଥନ ଦେଇ ଆସିଛନ୍ତି। ଏହି ସଂଗଠନ ବାରମ୍ବାର ଇହୁଦୀମାନଙ୍କୁ ଅପହରଣ କରିବା, ଇସ୍ରାଏଲ ମଧ୍ୟକୁ ଆତ୍ମଘାତୀ ବୋମା ବିସ୍ଫୋରକ ପଠାଇ ବିସ୍ଫୋରଣ କରିବା, ଇହୁଦୀମାନଙ୍କୁ ସୁଯୋଗ ପାଇଲେ ହତ୍ୟା କରିବା, ଇସ୍ରାଏଲ ମଧ୍ୟକୁ ହଜାର ହଜାର ସଂଖ୍ୟାରେ ରକେଟ୍ ମାଡ଼ କରି ସେଠାରେ କ୍ଷୟକ୍ଷତି ଘଟାଇବା କାର୍ଯ୍ୟ କରି ଚାଲିଛି। ଇସ୍ରାଏଲ କିନ୍ତୁ ଏସବୁ ଘଟଣାର ଅତି କଡ଼ା ପ୍ରତିଶୋଧ ନେଇଛି। ଗାଜା ଓ ପଶ୍ଚିମ ତଟକୁ ସେନାବାହିନୀ ପଠାଇ ସେ ଅଞ୍ଚଳରେ ଆତଙ୍କବାଦୀମାନଙ୍କୁ ଧରିବା ଓ ହତ୍ୟା କରିବା, ଉଗ୍ରବାଦୀମାନଙ୍କ ଘାଟିଗୁଡ଼ିକ ଉପରକୁ ପ୍ରଚଣ୍ଡ ତୋପ ଓ ବିମାନ ଆକ୍ରମଣ କରି ସେସବୁକୁ ମାଟିରେ ମିଶାଇଦେବା ଆଦି କାର୍ଯ୍ୟ କରିଛି। ଗୋଟିଏ ଇହୁଦୀର ହତ୍ୟାର ପ୍ରତିଶୋଧରେ ସେମାନେ ଶହ ଶହ ପାଲେଷ୍ଟାଇଲ ନିବାସୀଙ୍କୁ ହତ୍ୟା କରିଛନ୍ତି ଯେମିତିକି ସେମାନେ ଭବିଷ୍ୟତରେ ଆଉ ଆକ୍ରମଣ କରିବେ ନାହିଁ। ୨୦୧୨ରେ ହମାସ୍ ପକ୍ଷରୁ ଇସ୍ରାଏଲ ମଧ୍ୟକୁ ରକେଟ୍ ଆକ୍ରମଣ କରାଯିବାରୁ ଇସ୍ରାଏଲ ସେନା ପାଲେଷ୍ଟାଇଲ ମଧ୍ୟକୁ ପ୍ରବେଶ କରି ବୋମା ମାରି ଧ୍ୱଂସଲୀଳା ସାଧନ କରିଥିଲେ ଏବଂ ଉଗ୍ରବାଦୀ ଓ ସେମାନଙ୍କ ଘାଟିଗୁଡ଼ିକୁ ସଫା କରି ଦେଇଥିଲେ। ସ୍ୱାଭାବିକ ଭାବରେ ଏହି ପ୍ରକ୍ରିୟାରେ ଅନେକ ସାଧାରଣ ନାଗରିକ ପ୍ରାଣ ମଧ୍ୟ ଦେଇଥିଲେ। ବହୁ କଷ୍ଟରେ ଆମେରିକା ଓ ଅନ୍ୟ ଦେଶମାନଙ୍କ ମଧ୍ୟସ୍ଥତାରେ ସେଠାରେ ଶାନ୍ତି ସ୍ଥାପନ ହୋଇଥିଲା।

ଏଥରର ଇସ୍ରାଏଲ–ପାଲେଷ୍ଟାଇନ ଯୁଦ୍ଧ ଆରମ୍ଭ ହେବାର କାରଣ ହେଲା, ୩୦ ଦିନ ତଳେ ୩ଟି ଇହୁଦୀଙ୍କୁ ଅପହରଣ କରି ନିଆଗଲା। ଇସ୍ରାଏଲର ଧାରଣା 'ହମାସ୍' ଉଗ୍ରବାଦୀମାନେ ଏହା କରିଛନ୍ତି। ତେଣୁ ଇସ୍ରାଏଲ ସେନା ପଶ୍ଚିମତଟ ଗାଜା ଅଞ୍ଚଳକୁ ପ୍ରବେଶ କରି ଅପହୃତ ଇହୁଦୀମାନଙ୍କୁ ଖୋଜିଲେ ଓ ଉଗ୍ରବାଦୀମାନଙ୍କୁ ଗିରଫ କଲେ। ତେଣୁ 'ହମାସ୍' ପକ୍ଷରୁ ଇସ୍ରାଏଲ ଉପରେ ରକେଟ୍ ଆକ୍ରମଣ ହେଲା, ପ୍ରତିଜବାବରେ ଇସ୍ରାଏଲ ବିମାନ ଆକ୍ରମଣ କରି ଗାଜା ଅଞ୍ଚଳକୁ ଧ୍ୱଂସ ସ୍ତୂପରେ ପରିଣତ କରି ଦେଲାଣି।

ପାଲେଷ୍ଟାଇନ ଅଞ୍ଚଳରେ ଇସ୍ରାଏଲକୁ ଛାଡ଼ିଦେଲେ ଯେଉଁ ଅଞ୍ଚଳ ଏବେ ଦେଶଶୂନ୍ୟ ହୋଇ ପଡ଼ିଛି ତାହା ହେଉଛି ପାଲେଷ୍ଟାଇନ ନିବାସୀଙ୍କ ଅଞ୍ଚଳ। ଏହା ଦୁଇ ଭାଗରେ ବିଭକ୍ତ, ପଶ୍ଚିମତଟ ଓ ଗାଜା। ପଶ୍ଚିମତଟକୁ ଯେଉଁ ସଂଗଠନ ଦଖଲ କରିଛି ତା'ର ରାଷ୍ଟ୍ରପତି ହେଲେ ମହମ୍ମଦ ଆବ୍‌ବାସ୍। ସେହି ସଂଗଠନକୁ ନିର୍ବାଚନରେ ୨୦୦୬ରେ ପରାସ୍ତ କରି 'ହମାସ୍' ଗାଜା ଅଞ୍ଚଳକୁ ଅକ୍ତିଆର କରିଥିଲା। 'ହମାସ'ର ବିଜୟ ପରେ ଇସ୍ରାଏଲ–ପାଲେଷ୍ଟାଇନ ବିବାଦ ଆହୁରି ବଢ଼ିଛି।

ଏଠାରେ ଉଲ୍ଲେଖନୀୟ ଯେ, ପୂର୍ବପରି 'ହମାସ୍' ବା ପାଲେଷ୍ଟାଇନକୁ ଆଉ ଇସଲାମୀ ରାଷ୍ଟ୍ରମାନଙ୍କ ସମର୍ଥନ ନାହିଁ। ୨୦୧୧ରେ ଆରବ ରାଷ୍ଟ୍ରମାନଙ୍କରେ ଯେଉଁ 'ବସନ୍ତି ବିପ୍ଳବ' ହୋଇ ଟିଉନିସିଆ, ଇଜିପ୍ଟ, ଲିବ୍ୟା, ୟେମେନ୍ ଆଦି ରାଷ୍ଟ୍ରମାନଙ୍କର ବହୁଦିନର ଏକଛତ୍ରପତି ଶାସକମାନଙ୍କୁ କ୍ଷମତାଚ୍ୟୁତ କଲା, ତାହା ସେଠାକାର ଶାସକମାନଙ୍କୁ ଭୟଭୀତ କରିଛି। ସେମାନେ ଆଉ କୌଣସି ଇସଲାମୀ ସଂଗଠନକୁ ସମର୍ଥନ ଦେବାକୁ ରାଜି ନୁହନ୍ତି। ସେମାନେ ଡରୁଛନ୍ତି ଯେ,ଏହି ଇସଲାମୀ ସଂଗଠନମାନେ ହୁଏତ ଭବିଷ୍ୟତରେ ସେମାନଙ୍କ ପାଇଁ ଭସ୍ମାସୁର ସାଜିପାରନ୍ତି। ତେଣୁ ଯେଉଁ 'ମୁସଲିମ୍ ବ୍ରଦର୍ ହୁଡ୍' ମୌଳବାଦୀ ସଂଗଠନ ଇଜିପ୍ଟର ଏକଛତ୍ରବାଦୀ ହୁସନି ମୁବାରକଙ୍କର ସରକାରର ପତନ କରାଇ ପ୍ରଥମ ଗଣତାନ୍ତ୍ରିକ ନିର୍ବାଚନରେ ଜିତିଥିଲା, ତା'କୁ ସେଠାକାର ସେନାବାହିନୀ କ୍ଷମତାଚ୍ୟୁତ କରି ନିଜେ କ୍ଷମତା ଏକପ୍ରକାର ଦଖଲ କରିଛି। ପୂର୍ବରୁ 'ହମାସ୍' ସଂଗଠନକୁ 'ଇଣ୍ଟାର ମୁସଲିମ୍ ବ୍ରଦରହୁଡ୍' ସଂଗଠନ ପୂର୍ଣ୍ଣ ସମର୍ଥନ ଦେଇ ଆସିଥିବାରୁ ଏବେକାର ଇଜିପ୍ଟର ସେନାନିୟନ୍ତ୍ରିତ ସରକାର 'ହମାସ'କୁ କୌଣସି ସାହାଯ୍ୟ ଦେଉନାହାନ୍ତି। ଇଜିପ୍ଟର ପାଲେଷ୍ଟାଇନ ସୀମାନ୍ତି ଫାଟକଗୁଡ଼ିକୁ ବନ୍ଦ କରି ଦେଇଛନ୍ତି। ଇଜିପ୍ଟ ଓ ଗାଜା ସୀମାରେ ଥିବା ସବୁ ସୁଡ଼ଙ୍ଗମାନଙ୍କୁ ପୋତି ଦେଇଛନ୍ତି। ପୂର୍ବରୁ ଇଜିପ୍ଟ ଓ ଗାଜା ମଧ୍ୟରେ ଏହି ସୁଡ଼ଙ୍ଗଗୁଡ଼ିକ ଦ୍ୱାରା ଚୋରା କାରବାର ତଥା ଅନ୍ୟାନ୍ୟ ସମ୍ପର୍କ ରହୁଥିଲା। ଇରାନର ରାଷ୍ଟ୍ରପତି ରୌହାନୀ ମଧ୍ୟ ନିର୍ବାଚିତ ହେବା ପରେ ଇସ୍ରାଏଲକୁ ଧ୍ୱଂସ କରିବା ଦରକାର ବୋଲି କୌଣସି ବିବୃତି ଦେଇନାହାନ୍ତି। ଏହାଛଡ଼ା ସେହି ପାଲେଷ୍ଟାଇନର ବଡ଼ ଅଂଶ ପଶ୍ଚିମ ତଟର ଆବ୍‌ବାସ୍ ସରକାରଙ୍କ ସହ 'ହମାସ୍'ର ସମ୍ପର୍କ ଅତି ତିକ୍ତ।

ଏଣୁ ପାଲେଷ୍ଟାଇନକୁ ସମର୍ଥନ ନକଲେ ମୁସଲମାନମାନେ ରାଗି ଯିବେ ବୋଲି ଭାରତ ସରକାର ଭାବିବା ଉଚିତ୍ ନୁହେଁ। ବରଂ 'ହମାସ୍' ପରି ଉଗ୍ରବାଦୀ ଇସଲାମୀ ସଂଗଠନକୁ ନୈତିକ ସାହାଯ୍ୟ ଦେବା ଉଚିତ୍ ନୁହେଁ। ଇରାକ୍ ଓ ସିରିଆରେ ଯେଉଁ ଆଇ.ଏସ୍.ଆଇ.ଏସ. ଇସଲାମୀ ସଂଗଠନର ଅଭ୍ୟୁଦୟ ହୋଇଛି ତାର ନେତା ଅଲ୍ ବାଗଦାଦୀ ଯେମିତି ନିଜକୁ ଇସଲାମୀ ଜଗତର

ଖଲିଫା ଓ ଶାସକ ବୋଲି ଘୋଷଣା କରିଛନ୍ତି, ତାହା ସାରା ବିଶ୍ୱ ଓ ବିଶେଷକରି ଭାରତ ପାଇଁ କ୍ଷତିକାରକ ବୋଲି ବୁଝିବା ଦରକାର। ବରଂ ଭାରତ ଚେଷ୍ଟା କରିବା ଉଚିତ୍ ଯେ, 'ଇସ୍ରାଏଲକୁ ପୃଥିବୀ ପୃଷ୍ଠରୁ ଲୋପ କରିବା ମୁଖ୍ୟ ଲକ୍ଷ୍ୟ' ବୋଲି 'ହମାସ୍' ବାରମ୍ବାର ନକହୁ। ଏହା କହିବା ଦ୍ୱାରା ଇସ୍ରାଏଲ ଏଭଳି ପ୍ରତିଆକ୍ରମଣ କରୁଛି ଯାହା ମୁଖତଃ ଆତ୍ମରକ୍ଷା ପାଇଁ ଉଦ୍ଦିଷ୍ଟ। ଯଦି 'ହମାସ୍', ଇସ୍ରାଏଲ ସହ ଶାନ୍ତିରେ ରହିବାର ଇଚ୍ଛା ପ୍ରକଟ କରନ୍ତା ତେବେ ହୁଏତ ଇସ୍ରାଏଲ ଏତେ ପ୍ରତିକ୍ରିୟାଶୀଳ ହୁଅନ୍ତା ନାହିଁ ଓ ପାଲେଷ୍ଟାଇନ ରାଷ୍ଟ୍ର ଗଠନ ପାଇଁ ସହମତି ପ୍ରକଟ କରନ୍ତା । ଜାତିସଙ୍ଘରେ ଏକ ସ୍ୱାଧୀନ, ସାର୍ବଭୌମ ପାଲେଷ୍ଟାଇନ ରାଷ୍ଟ୍ର ଗଠନ ପାଇଁ ପ୍ରସ୍ତାବ ଗୃହୀତ ହୋଇ ରହିଛି। କେବଳ ଇସ୍ରାଏଲ ସେଥିରେ ଏକମତ ହୋଇଗଲେ ସେ ରାଷ୍ଟ୍ର ଗଠିତ ହୋଇଯାନ୍ତା ।

ଅତୀତରେ ପାଲେଷ୍ଟାଇନ ଅଧିବାସୀମାନେ ଗାଜା ଓ ପଶ୍ଚିମତଟକୁ ଇସ୍ରାଏଲର ଦଖଲ ବିରୋଧରେ ୧୯୮୭ରୁ ୧୯୯୩ ଯାଏ ପ୍ରଥମ 'ଇନ୍ତେଫାଜା'(ବିଦ୍ରୋହ) କରି ସଫଳ ହୋଇଥିଲେ। ସାମନାରେ ରହି ଟେକା ପଥର ଫୋପାଡୁଥିବା ପାଲେଷ୍ଟାଇନ ଶିଶୁ ଓ ମହିଳାମାନଙ୍କୁ କେମିତି ପ୍ରତିହତ କରିବେ ଏହା ଥିଲା ଇସ୍ରାଏଲ ସେନାର ମୂଳ ସମସ୍ୟା। ପରେ ଦ୍ୱିତୀୟ ଇନ୍ତେଫାଜା ୨୦୦୦–୨୦୦୫ ବେଳେ ହମାସ୍, ଇସ୍ରାଏଲକୁ ଆତ୍ମଘାତୀ ବୋମାବାହକ ପଠାଇବାରୁ ଇସ୍ରାଏଲ ସେନା ସେମାନଙ୍କୁ ସହଜରେ ଦମନ କରିଦେଲେ। ତେଣୁ ହିଂସା ମାଧ୍ୟମରେ ପାଲେଷ୍ଟାଇନ ରାଷ୍ଟ୍ର ଯେ ଗଠିତ ହୋଇପାରିବ ନାହିଁ ଏହା ସତ୍ୟ।

ଅନ୍ୟ ପକ୍ଷରେ ଇସ୍ରାଏଲ ହେଉଛି ଭାରତର ସ୍ୱାଭାବିକ ବନ୍ଧୁ। ଦୁଇଟି ଯାକ ରାଷ୍ଟ୍ର ହେଉଛନ୍ତି ଗଣତାନ୍ତ୍ରିକ। ଦୁଇଟି ଯାକ ରାଷ୍ଟ୍ର ଇସଲାମୀ ଆତଙ୍କବାଦର ଶିକାର। ଅବଶ୍ୟ ଅତୀତରେ ଇସ୍ରାଏଲର କ୍ଷତି କରିଥିବା ତଥା ଇହୁଦୀ ହତ୍ୟା କରିଥିବା ଇସଲାମୀ ଆତଙ୍କବାଦୀମାନଙ୍କୁ ଇସ୍ରାଏଲର ବିଶ୍ୱ ବିଖ୍ୟାତ ଗୁଇନ୍ଦା ସଂସ୍ଥା 'ମୋସାଦ୍' ସାରା ପୃଥିବୀରେ ପିଛା କରି କରି ହତ୍ୟା କରିଛି। ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ହିଟ୍‌ଲରଙ୍କର ଯେଉଁ ଫାସିଷ୍ଟ ଅଧିକାରୀମାନେ ଇହୁଦୀମାନଙ୍କର ଗଣହତ୍ୟା କରିଥିଲେ, ସେମାନେ ଆତ୍ମଗୋପନ କରିଥିଲେ ମଧ୍ୟ ଆର୍ଜେଣ୍ଟିନା ପର୍ଯ୍ୟନ୍ତ ଯାଇ ସେଠାରେ ସେମାନଙ୍କୁ ହତ୍ୟା କରିଛନ୍ତି।

ଭାରତ ଅବଶ୍ୟ ଏତେଦୂର ଯାଇ ପାରିବନି। କିନ୍ତୁ ମରୁଭୂମିରେ କେମିତି ଅଳ୍ପ ପାଣିରେ ବେଶି ଚାଷ କରିହୁଏ, ଖୋଦ ପ୍ରଧାନମନ୍ତ୍ରୀ ନରେନ୍ଦ୍ର ମୋଦି ସେ କଥା ଇସ୍ରାଏଲଠାରୁ ଶିଖି ଆସିଛନ୍ତି। କୃଷି ଉତ୍ପାଦନ ବୃଦ୍ଧି କ୍ଷେତ୍ରରେ ତେଣୁ ଇସ୍ରାଏଲ, ଭାରତକୁ ଅନେକ ସାହାଯ୍ୟ କରି ପାରିବ। ଗୁଇନ୍ଦା ତଥ୍ୟ ଓ ବିଶେଷକରି ଆତଙ୍କବାଦୀମାନଙ୍କ ତଥ୍ୟ ଇସ୍ରାଏଲ ଦେଇପାରିବ। ଭାରତର ପ୍ରତିରକ୍ଷା ପାଇଁ, କ୍ଷେପଣାସ୍ତ୍ର ଧ୍ୱଂସ ପାଇଁ ଅସ୍ତ୍ର ଇସ୍ରାଏଲ ଦେଇ ଆସିଛି ଓ ଭବିଷ୍ୟତରେ ଦେଇପାରିବ।

ଏଣୁ ଭାରତ, ତା'ର ବିଦେଶ ନୀତିରେ ପରିବର୍ତ୍ତନ ଆଣୁ। ଇସ୍ରାଏଲ ବିରୋଧୀ ବୋଲି ନିଜକୁ ବିଶ୍ୱ ଦରବାରରେ ପ୍ରମାଣିତ ନକରୁ। ଇସ୍ରାଏଲ ଯାହା କରୁଛି, ତାହା ତା'ର ଆତ୍ମରକ୍ଷା ପାଇଁ। ସେ ଅନ୍ୟ ଦେଶର ଅଞ୍ଚଳ ଦଖଲ ଚାହେଁନା। କେବଳ ପୃଥିବୀ ପୃଷ୍ଠରେ ସେ ଦେଶ ବଞ୍ଚି ରହିବାକୁ ଚାହେଁ। ଅତୀତରେ ଶରଣାର୍ଥୀ ଇହୁଦୀମାନଙ୍କୁ ଭାରତ ଆଶ୍ରୟ ଦେଇ ଆସିଛି। ଏବେ ସେମାନଙ୍କୁ ତିଷ୍ଠି ରହିବାକୁ ସୁଯୋଗ ଦେଉ।

Kharabelaswain@gmail.com

❖ ❖ ❖

# ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହରେ ଓଡ଼ିଶାର ଅବଦାନ

ସୁଷମା ନାୟକ

ଆଜି ଅଗଷ୍ଟ ପନ୍ଦର, ଆମ ଦେଶର ସ୍ୱାଧୀନତା ଦିବସ। ଆମ ପାଇଁ ସ୍ୱାଧୀନତା ଏକ ଦାନ ସ୍ୱରୂପ ନଥିଲା। ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶବାସୀଙ୍କୁ କଠୋର ସଂଗ୍ରାମ ଓ ଅସୀମ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି। ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଆତ୍ମୋତ୍ସର୍ଗ କରିଛନ୍ତି, ସେମାନେ ଆମର ଚିର ନମସ୍ୟ। ସେମାନଙ୍କୁ ସ୍ମରଣ କରି ରଖିବା ପାଇଁ ଆଜି ଦିନଟି ଆମକୁ ସୁଯୋଗ ଦେଇଥାଏ। ବିଶେଷ କରି ମହାତ୍ମା ଗାନ୍ଧୀ, ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ୍, ମୌଲାନା ଆଜାଦ୍, ସରୋଜିନୀ ନାଇଡୁ, ସୁଭାଷ ଚନ୍ଦ୍ର ବୋଷ ଓ ସ୍ୱାଧୀନତା ଆନ୍ଦୋଳନର ଅନ୍ୟ ବହୁ ନେତା, ଯେଉଁମାନଙ୍କ ତ୍ୟାଗ ତଥା ଆତ୍ମୋତ୍ସର୍ଗ ବିନା ଭାରତବର୍ଷ ସ୍ୱାଧୀନତାର ଆଲୋକ ଦେଖିବା ସମ୍ଭବପର ହୋଇପାରି ନଥାନ୍ତା। ସେମାନଙ୍କ ନିକଟରେ ଆମ ଦେଶ ଚିର କୃତଜ୍ଞ। ଆଜି ତାଙ୍କରି ଯୋଗୁଁ ଭାରତବାସୀ ଅନ୍ୟ ବିଦେଶ ରାଷ୍ଟ୍ରଭଳି ତା'ର ବିଜୟୀ ପତାକା ଉଡ଼ାଇ ପାରିଛି। ଏହା ବହୁ ଦିନ ଧରି ବ୍ରିଟିଶ୍ ଶାସନାଧୀନ ହୋଇ ରହିବା ପରେ ଆମ ଦେଶ ଏହି ଦିବସରେ ବିଦେଶୀ କବଳରୁ ମୁକ୍ତିଲାଭ କରି ଏକ ସ୍ୱାଧୀନ ଓ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହୋଇଛି।

ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଅହିଂସା ଆନ୍ଦୋଳନ ଥିଲା ଦେଶବାସୀଙ୍କର ମୁଖ୍ୟ ଅସ୍ତ୍ର ଓ ମାଧ୍ୟମ। ଗାନ୍ଧିଜୀଙ୍କ ନେତୃତ୍ୱ ଯୋଗୁଁ ଅହିଂସା ଆନ୍ଦୋଳନ ଭାରତର ଏକ ପ୍ରଶଂସାତ୍ମକ କାର୍ଯ୍ୟକ୍ରମ ବୋଲି ସର୍ବସାଧାରଣରେ ଗୃହୀତ ହୋଇଥିଲା। ସ୍କୁଲ୍, କଲେଜ ପରିତ୍ୟାଗ କରି ଛାତ୍ର ସମାଜ ଏହି ଆନ୍ଦୋଳନରେ ଯୋଗ ଦେଲେ । ପୁରପଲ୍ଲୀର କୃଷକ ସମାଜ ମଧ୍ୟ ଗଭୀର ମନୋବଳ ନେଇ ମୁକ୍ତି ଯୁଦ୍ଧରେ ଶହୀଦ ହେବାକୁ ବାହାରି ଆସିଲେ। ପ୍ରଥମେ ଅସହଯୋଗ ଆନ୍ଦୋଳନ ପରେ ଆଇନ୍ ଅମାନ୍ୟ ଆନ୍ଦୋଳନ ଏବଂ ଶେଷରେ ଭାରତ ଛାଡ ଆନ୍ଦୋଳନ ଭାରତରେ ଏତେ ଆକର୍ଷଣ କଲା ଯେ ରକ୍ଷଣଶୀଳମାନେ ମଧ୍ୟ ଏଥିରେ ପ୍ରତ୍ୟକ୍ଷ ନହେଲେ ମଧ୍ୟ ପରୋକ୍ଷ ଭାବରେ ସହଯୋଗ କଲେ।

ସେହି ସମୟରେ ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଆନ୍ଦୋଳନ ହୋଇଥିଲା। ଏହି ଆନ୍ଦୋଳନରେ ମୁଖ୍ୟ ପୁରୋଧା ଥିଲେ ମହାମାନବ ମହାତ୍ମା ଗାନ୍ଧୀ। ୧୯୩୦ ମସିହା ଏପ୍ରିଲ୍ ମାସ ୬ ତାରିଖରେ ଦାଣ୍ଡି ପଦଯାତ୍ରା ଆରମ୍ଭ ହୋଇଥିଲା। ବ୍ରିଟିଶ୍ ସରକାରଙ୍କର ଲବଣ ଆଇନ୍ ପ୍ରତ୍ୟାଖ୍ୟାନ କରି ଗାନ୍ଧିଜୀ ଅହମ୍ମଦାବାଦର ସାବରମତୀ ଆଶ୍ରମଠାରୁ ୧୯୩୦ ମସିହା ମାର୍ଚ୍ଚ ମାସ ୧୨ ତାରିଖ ଦିନ ୨୮ ଜଣ ଅନୁଗାମୀଙ୍କ ସହ ସମୁଦ୍ର କୂଳରେ ଅବସ୍ଥିତ ଦାଣ୍ଡି ନାମକ ସ୍ଥାନକୁ ଯାତ୍ରା ଆରମ୍ଭ କରିଥିଲେ । ଅନ୍ୟମାନଙ୍କ ମଧ୍ୟରେ ତାଙ୍କ ସହିତ ସରୋଜିନୀ ନାଇଡୁ ମଧ୍ୟ ଥିଲେ। ଦୀର୍ଘ ୨୪ ଦିନ ଧରି ତିନିଶହ ଚାଳିଶ କିଲୋମିଟର ରାସ୍ତା ପଦଯାତ୍ରା କରି ଏପ୍ରିଲ୍ ୬ ତାରିଖ ଦିନ ଦାଣ୍ଡିଠାରେ ପହଞ୍ଚି ଥିଲେ। ବାଟରେ ଲକ୍ଷ ଲକ୍ଷ ଆବାଳ ବୃଦ୍ଧ ବନିତା ତାଙ୍କ ସହିତ ଯୋଗ ଦେଇଥିଲେ। ଭାରତୀୟମାନଙ୍କୁ ସମୁଦ୍ରରୁ ଲୁଣ ମାରିବା ନିଷିଦ୍ଧ ଥିଲା। କାରଣ ଲୁଣ ବିଦେଶରୁ ଆସି ଭାରତରେ ବିକ୍ରି ହେଉଥିଲା। ଗାନ୍ଧିଜୀ ନିଜେ ଏହି ଲବଣ ଆଇନ୍ ଭଙ୍ଗ କରିବାକୁ ବାହାରି ଥିଲେ। ଦାଣ୍ଡିଠାରେ ପହଞ୍ଚି ସମୁଦ୍ର ଜଳରେ ଲୁଣ ମାରି ଲବଣ ଆଇନ୍ ଅମାନ୍ୟ କରିଥିଲେ। ଏହା ଐତିହାସିକ ଦାଣ୍ଡିଯାତ୍ରା ନାମରେ ପରିଚିତ। ସାରା ଭାରତରେ ଲବଣ ଆଇନ୍ ଭାଙ୍ଗି ଲୁଣ ମରାଗଲା। ବ୍ରିଟିଶ୍ ସରକାରଙ୍କର ଲୁଣ ଆଇନ୍ ପ୍ରତ୍ୟାଖ୍ୟାନ କରି ବମ୍ବେ ନିକଟବର୍ତ୍ତୀ ସମୁଦ୍ର କୂଳର ଦାଣ୍ଡି ନାମକ ସ୍ଥାନରେ ପହଞ୍ଚି ଥିଲେ ।

ଓଡ଼ିଶାରେ ମଧ୍ୟ ଏହି ଆନ୍ଦୋଳନର ପ୍ରଭାବ ପଡ଼ିଥିଲା। ବାଲେଶ୍ୱରର ଇଞ୍ଚୁଡ଼ି ନାମକ ସ୍ଥାନରେ ଏହି ଆନ୍ଦୋଳନ ଆରମ୍ଭ

ହୋଇ ଓଡ଼ିଶାର ସମସ୍ତ ଉପକୂଳବର୍ତ୍ତୀ ଅଞ୍ଚଳରେ ଦେଖା ଦେଇଥିଲା । ଏହି ସତ୍ୟାଗ୍ରହରେ ଯୋଗ ଦେଇଥିବା ଓଡ଼ିଶାବାସୀ କାରାବରଣ କଲେ ଏବଂ ଅନେକ ବ୍ୟକ୍ତି ଇଂରେଜମାନଙ୍କ ନିର୍ମମ ମାଡରେ ମୃତ୍ୟୁବରଣ କଲେ । ଏହି ଆନ୍ଦୋଳନରେ ଓଡ଼ିଶା ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ୧୯୩୦ ମସିହା ଶେଷ ବେଳକୁ ସାରା ଭାରତରେ ଆଇନ୍ ଅମାନ୍ୟ ଆନ୍ଦୋଳନ ଦେଖା ଦେଇଥିଲା । ଲବଣ ସତ୍ୟାଗ୍ରହର ଟିକସ ବନ୍ଦ ହେବା ପର୍ଯ୍ୟନ୍ତ ଏହା ଚାଲୁ ରହିଥିଲା । ଓଡ଼ିଶାର ବହୁତ ନରନାରୀ ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ ।

ଏହି ସତ୍ୟାଗ୍ରହ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଏକ ଉଲ୍ଲେଖନୀୟ ଅଂଶ । ଏହି ଅହିଂସା ଆନ୍ଦୋଳନ ଦ୍ୱାରା ଲୁଣ ମାରିବା ନେଇ ବ୍ରିଟିଶ୍ ସରକାରଙ୍କ ଏକଚାଟିଆ ଅଧିକାରକୁ ବିରୋଧ କରାଯାଇଥିଲା । ଏହି ଐତିହାସିକ ଘଟଣା ପରେ ସାରାଦେଶରେ ଆନୁଷ୍ଠାନିକ ଭାବେ ଆଇନ୍ ଅମାନ୍ୟ ଆନ୍ଦୋଳନର ରୂପ ନେଇଥିଲା । ଯେଉଁଦିନ ଗାନ୍ଧିଜୀ ଲୁଣ ମାରିଥିଲେ ସେହିଦିନ (ଏପ୍ରିଲ୍ ୬ ତାରିଖ ଦିନ ୧୯୩୦ ମସିହା) ନେହେରୁ ଏବଂ କଂଗ୍ରେସର ଅନ୍ୟ କିଛି ନେତାଙ୍କୁ ସଙ୍ଗେ ସଙ୍ଗେ ଗିରଫ କରି ନିଆଯାଇଥିଲା । ଠିକ୍ ମାସେ ପରେ ମେ ୬ ତାରିଖରେ ମହାତ୍ମା ଗାନ୍ଧୀ ମଧ୍ୟ ଗିରଫ ହୋଇଥିଲେ । ତେବେ ଏହି ଦାଣ୍ଡି ଯାତ୍ରା ସମାଜର ସବୁ ବର୍ଗର ଲୋକଙ୍କୁ ଏକାଠି କରି ପାରିଥିଲା । ଅଧିକରୁ ଅଧିକ ଲୋକ ଏହି ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେବାକୁ ବାହାରି ଥିଲେ । ଅସହଯୋଗ ଆନ୍ଦୋଳନ ପରେ ଏହି ଆନ୍ଦୋଳନ ଇଂରେଜମାନଙ୍କ ଉପରେ ଚାପ ସୃଷ୍ଟି କରିବାରେ ସମର୍ଥ ହୋଇଥିଲା । ମହାତ୍ମା ଗାନ୍ଧୀ ସାବରମତୀ ଆଶ୍ରମଠାରୁ ଦାଣ୍ଡି ପଦଯାତ୍ରା ସମୟରେ ବାଟରେ ତାଙ୍କୁ ବିଭିନ୍ନ ଗ୍ରାମର ଅଧିବାସୀମାନେ ବିପୁଳ ସମର୍ଥନ, ସମ୍ବର୍ଦ୍ଧନା, ସହଯୋଗ ଦେଇଥିଲେ । ଶଙ୍ଖ, ହୁଳହୁଳିରେ ନାରୀମାନେ ସମ୍ବର୍ଦ୍ଧନା ଜଣାଇବା ବେଳେ ପୁରୁଷମାନେ ତୋରଣ ତଥା ପୁଷ୍ପମାଲ୍ୟରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ସଙ୍ଗେ ସଙ୍ଗେ କେତେକ ଉତ୍ସାହୀ ତାଙ୍କ ସହ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଭାରତର ବିଭିନ୍ନ ସମୁଦ୍ର କୂଳବର୍ତ୍ତୀ ଗ୍ରାମରେ ମଧ୍ୟ ଲବଣ ସତ୍ୟାଗ୍ରହ ଚାଲିଲା । ବିଶେଷତଃ ବାଲେଶ୍ୱରର ଇଞ୍ଚୁଡ଼ି, ଭଦ୍ରକର ଇରମ୍ ପ୍ରଭୃତି ଅଞ୍ଚଳରେ ଲବଣ ସତ୍ୟାଗ୍ରହ ଚାଲିଥିଲା । ଇଞ୍ଚୁଡ଼ି ଭାରତର ଲବଣ ସତ୍ୟାଗ୍ରହରେ ଦ୍ୱିତୀୟ ସ୍ଥାନରେ ଥିବାବେଳେ ଦାଣ୍ଡି ଲବଣ ସତ୍ୟାଗ୍ରହ ହୋଇଥିଲା ପ୍ରଥମ ସ୍ଥାନ । ଲବଣ ସତ୍ୟାଗ୍ରହୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ହୋଇଥିଲା । ସେମାନଙ୍କର ଲୁଣମରା ହାଣ୍ଡିକୁ ପୋଲିସ୍‌ମାନେ ଭାଙ୍ଗି ଦେଉଥାନ୍ତି । ଲୁଣ ମାରୁଥିବା ସତ୍ୟାଗ୍ରହୀମାନଙ୍କର ହାତ ଆଙ୍ଗୁଳିକୁ ବୁଟ୍ ଯୋତାରେ ଦଳି ଦେଉଥାନ୍ତି ।

ଭାରତୀୟ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ ଆଇନ୍ ଅମାନ୍ୟ ଆନ୍ଦୋଳନ କରିବାକୁ ଯୁଗାନ୍ତକାରୀ ସିଦ୍ଧାନ୍ତ ନେବା ପରେ ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ରଚିତ ହୋଇଥିଲା । ଏ ଦିଗରେ ପ୍ରଥମ ପଦକ୍ଷେପ ଥିଲା ଲବଣ ଆଇନ୍ ଭଙ୍ଗ । ଏହାର ଅନ୍ୟାନ୍ୟ କାର୍ଯ୍ୟକ୍ରମ ଥିଲା ଛାତ୍ର ଓ ସରକାରୀ କର୍ମଚାରୀ ନିଜ ନିଜର କାର୍ଯ୍ୟ କରିବେ ନାହିଁ । ମଦ, ଅଫିମ, ଗଂଜା ଓ ବିଦେଶୀ ଦ୍ରବ୍ୟ ବିକ୍ରୟ କରୁଥିବା ଦୋକାନ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ କରାଯାଉଥିଲା । ୧୯୩୦ ମସିହା ଲବଣ ସତ୍ୟାଗ୍ରହ ୧୯୩୨ ମସିହା ପର୍ଯ୍ୟନ୍ତ ଚାଲିଥିଲା । ଗାନ୍ଧିଜୀ ବିଲାତରେ ୧୯୩୧ ମସିହାରେ ଗୋଲଟେବୁଲ୍ ବୈଠକରେ ବିଫଳ ମନୋରଥ ହୋଇ ଫେରିବା ପରେ ତାଙ୍କୁ ବମ୍ବେ ବନ୍ଦରଠାରୁ ବନ୍ଦୀ କରିନେଲେ । ଭାରତରେ ତାର ପ୍ରତିବାଦରେ ଚାରିଆଡ଼େ ପିକେଟିଂ ଚାଲିଲା । ମଦ ଦୋକାନ ଆଗରେ, ବିଲାତି ଲୁଗା ଦୋକାନ ତଥା ଗଞ୍ଜା ଓ ଅଫିମ ବିକ୍ରୀ କେନ୍ଦ୍ରମାନଙ୍କରେ ପିକେଟିଂ ଚାଲିଲା । ୧୯୩୨ ମସିହା ଶେଷ ବେଳକୁ ତୃତୀୟ ଗୋଲ୍‌ଟେବୁଲ୍ ବୈଠକ ବସିଥିଲା । ଏହି ବୈଠକରେ ଭାରତ ଶାସନ ପାଇଁ ପ୍ରସ୍ତୁତ ହୋଇଥିଲା, ଯାହା ପରବର୍ତ୍ତୀ ସମୟରେ ଭାରତ ଶାସନ ଆଇନ୍ ନାମରେ ପରିଚିତ । ୧୯୩୦ ମସିହା ମାର୍ଚ୍ଚ ମାସ ୧୨ ତାରିଖରେ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କରି ଦାଣ୍ଡିଠାରେ ଏପ୍ରିଲ୍ ମାସ ୬ ତାରିଖରେ ଲୁଣ ମାରି ଲବଣ ଆଇନ୍ ଭଙ୍ଗ କରିଥିଲେ । ଏହାର ପ୍ରଭାବରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ବାଲେଶ୍ୱର ସହରଠାରୁ ପ୍ରାୟ ୧୫ କିଲୋମିଟର ଦୂରରେ ଅବସ୍ଥିତ ଇଞ୍ଚୁଡ଼ିଠାରେ ଲୁଣ ମାରିବା ପାଇଁ ନିଷ୍ପତ୍ତି ନେଇଥିଲେ । ତଦନୁଯାୟୀ କଟକରୁ ୨୧ ଜଣ ସତ୍ୟାଗ୍ରହୀ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହର ଦାସଙ୍କ ନେତୃତ୍ୱରେ ଏପ୍ରିଲ୍ ୬ ତାରିଖ ଦିନ କଟକ ସ୍ୱରାଜ ଆଶ୍ରମରୁ ବାହାରି ଥିଲେ । ହରେକୃଷ୍ଣ ମହତାବ ଅତ୍ୟନ୍ତ ଉତ୍ସାହର ସହିତ ବାଲେଶ୍ୱର ଉପକୂଳରେ ଲବଣ ସତ୍ୟାଗ୍ରହ ସଙ୍ଗଠନରେ ଲାଗିଥିଲେ । ସେମାନେ ପଦଯାତ୍ରା କରି ଯାଉଥିବା ସମୟରେ ଗୋପବନ୍ଧୁ ଚୋଧୁରୀ ଓ ଅଟଳ ବିହାରୀ ଆଚାର୍ଯ୍ୟ କଟକରେ ୮ ତାରିଖ ଦିନ ଏପ୍ରିଲ୍ ମାସରେ ଗିରଫ ହେଲେ ଓ ହରେକୃଷ୍ଣ ମହତାବ ବାଲେଶ୍ୱର ରେଳ ଷ୍ଟେସନରେ ଗିରଫ ହେବା ପରେ ଆଚାର୍ଯ୍ୟ ହରିହର ଦାସ ଓ ବାଲେଶ୍ୱରର ସର୍ଦ୍ଦାର ସୁରେନ୍ଦ୍ର ନାଥ ଦାସ ପ୍ରମୁଖ ନେତାମାନେ

ଇଞ୍ଚୁଡ଼ିଠାରେ ଏପ୍ରିଲ୍ ୧୩ ତାରିଖ ଦିନ ପହଞ୍ଚି ହଜାର ହଜାର ଲୋକଙ୍କ ସମ୍ମୁଖରେ ଲୁଣ ମାରିଥିଲେ। ସତ୍ୟାଗ୍ରହୀମାନଙ୍କୁ ରମାଦେବୀ ଓ ମାଳତୀ ଚୌଧୁରୀ ଫୁଲମାଳ ପିନ୍ଧାଇ ଶୁଭେଚ୍ଛା ଜ୍ଞାପନ କରିଥିଲେ। ପରବର୍ତ୍ତୀ ସମୟରେ ମାଳତୀ, କୋକିଳ, ଜାହ୍ନବୀ, କିରଣବାଳା ଓ କାନନବାଳା ଲବଣ ଆଇନ୍ ଭଙ୍ଗ କରିଥିଲେ। ତନ୍ମଧ୍ୟରୁ କଟକ ଜିଲ୍ଲାରୁ ଗୌରାଙ୍ଗ ଚରଣ ଦାସଙ୍କ ନେତୃତ୍ୱରେ ଲୌହସ୍ତମ୍ଭ ବାହିନୀ, ପୁରୀରୁ ପତିତପାବନ ବାହିନୀ, ଗଞ୍ଜାମ ବାହିନୀ, ସମ୍ବଲପୁର ବାହିନୀ ଲବଣ ଆଇନ୍ ଆନ୍ଦୋଳନରେ ପ୍ରମୁଖ ନାରୀ ନେତ୍ରୀମାନେ ଯୋଗ ଦେଇଥିଲେ । ଇଞ୍ଚୁଡ଼ି ତଥା ଅନ୍ୟ ସ୍ଥାନରୁ ପ୍ରାୟ ୨୦ ମହଣ ଲୁଣ ବାଲେଶ୍ୱର ଅଣାଯାଇଥିଲା। ସେଥିପାଇଁ ଏହାକୁ ଓଡ଼ିଶାର ଦାଣ୍ଡି ବୋଲି କୁହାଯାଏ। ଇଞ୍ଚୁଡ଼ି ବ୍ୟତୀତ ବାଲେଶ୍ୱର ଜିଲ୍ଲାର ସାର୍ଥା, ଭଦ୍ରକ ଜିଲ୍ଲାର ଇରମ, କଟକ ଜିଲ୍ଲାର କୁଜଙ୍ଗ, ପୁରୀ ଜିଲ୍ଲାର ଅସ୍ତରଙ୍ଗ, ଗଞ୍ଜାମ ଜିଲ୍ଲାର ଚିଲିକା, ହୁମା, ଗୋପାଳପୁର ତଥା ଚାଟୁଆ ଆଦି ସ୍ଥାନରେ ଲବଣ ଆଇନ୍ ଭଙ୍ଗ କରାଯାଇଥିଲା। ସମ୍ବଲପୁରରେ ଘନଶ୍ୟାମ ପାଣିଗ୍ରାହୀ, ଦୟାନନ୍ଦ ଶତପଥୀ ଓ ହରିହର ବେହେରାଙ୍କ ନେତୃତ୍ୱରେ ସତ୍ୟାଗ୍ରହ କମିଟି ଗଠନ କରାଯାଇଥିଲା। କୁଜଙ୍ଗରେ ନାରାୟଣ ବୀରବର ସାମନ୍ତ ଓ ଭାଗ୍ୟବତୀ ପାଟ୍ଟମହାଦେଈ, ରମାଦେବୀ, ମାଳତୀ ଚୌଧୁରୀ, ନାରାୟଣ ପାତ୍ର, ଶରତ ଚନ୍ଦ୍ର ଦାସ ଲବଣ ସତ୍ୟାଗ୍ରହରେ ନେତୃତ୍ୱ ନେଇଥିଲେ। ଗଞ୍ଜାମ ଜିଲ୍ଲାର ହୁମାଠାରେ ତତ୍କାଳୀନ ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ନିରଞ୍ଜନ ପଟ୍ଟନାୟକ ୨୩ ଜଣ ସତ୍ୟାଗ୍ରହୀଙ୍କୁ ନେଇ ୧୯୩୦ ମସିହା ଏପ୍ରିଲ୍ ୩୦ ତାରିଖରେ ଲବଣ ଆଇନ୍ ଭଙ୍ଗ କରିଥିଲେ। ତାଙ୍କ ସହିତ ଥିଲେ ତାଙ୍କର ସ୍ତ୍ରୀ କିଶୋର ମଣି ଦେଈ ଓ ଅନ୍ୟ ଜଣେ କୁନ୍ଦଲତା ଦେଈ । ଓଡ଼ିଶାରେ ଲବଣ ସତ୍ୟାଗ୍ରହର ସାଫଲ୍ୟ ପାଇଁ ଗାନ୍ଧିଜୀ ଉଚ୍ଛ୍ୱସିତ ପ୍ରଶଂସା କରି ଏକ ଅଭିନନ୍ଦନ ଚିଠି ପଠାଇଥିଲେ।

ଲବଣ ସତ୍ୟାଗ୍ରହ ବ୍ୟତୀତ ବିଦେଶୀ ବସ୍ତ୍ର ବର୍ଜନ, ଚୌକିଦାରୀ ଟିକସ ବର୍ଜନ, ମଦ ଦୋକାନ ସମ୍ମୁଖରେ ବିକ୍ଷୋଭ ପ୍ରଦର୍ଶନ ଆଦି କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା। ସେହି ସମୟରେ ବାଲେଶ୍ୱରରୁ ପ୍ରଜାତନ୍ତ୍ରକୁ ଦୈନିକ ପତ୍ରିକା ପ୍ରକାଶ କରି ଲୋକଙ୍କ ନିକଟରେ ସତ୍ୟାଗ୍ରହ ବାର୍ତ୍ତା ପହଞ୍ଚାଇ ଥିଲେ। ଆଉ ଗୋଟିଏ ବାଲେଶ୍ୱରର ସ୍ୱରାଜ ଆଶ୍ରମରୁ ବନ୍ଦେ ମାତରଂ ନାମକ ଦୈନିକ ସମ୍ବାଦ ପତ୍ରିକା ପ୍ରକାଶ କରାଗଲା। ଓଡ଼ିଶାର ବାଲେଶ୍ୱର, ଭଦ୍ରକ ଉପକୂଳ, କଟକର କୁଜଙ୍ଗ ତଥା ପୁରୀ ଓ ବ୍ରହ୍ମପୁର ସମୁଦ୍ର ଉପକୂଳରେ ଲୁଣମରା ଚାଲିଥିଲା। ସମଗ୍ର ଦେଶରେ ଲବଣ ସତ୍ୟାଗ୍ରହ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା। ଲବଣ ସତ୍ୟାଗ୍ରହ ବେଳେ ଉତ୍ସାହିତ କରିବା ପାଇଁ ଲେଖକମାନେ ଅନେକଗୁଡ଼ିଏ ରଚନା ପ୍ରକାଶ କରିଥିଲେ। ହରେକୃଷ୍ଣ ମହତାବଙ୍କ ପଲାସିର ଅବସାନେ, ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଲୁଣମରା ଗୀତ ଓ ନିତ୍ୟାନନ୍ଦ ମହାପାତ୍ରଙ୍କ ସ୍ୱରାଜ୍ୟ ପାଲା ବାଲେଶ୍ୱର ଜିଲ୍ଲାରୁ ପ୍ରକାଶିତ ହୋଇଥିଲା। ଏହି ବହିଗୁଡ଼ିକୁ ସରକାର ବାଜ୍ୟାପ୍ତ କରିଥିଲେ। ଇଞ୍ଚୁଡ଼ି ନିକଟବର୍ତ୍ତୀ ଶ୍ରୀଜଙ୍ଗ ଗ୍ରାମର ଗୌରମୋହନ ଦାସ ଓ ବିଦ୍ୟାଧର ରାଉତଙ୍କ ନେତୃତ୍ୱରେ ଲୋକେ ଚୌକିଦାରୀ ଟିକସ ନଦେଇ ଏକ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ। ଲବଣ ସତ୍ୟାଗ୍ରହ ପରେ ଚୌକିଦାରୀ ଟିକସ ବନ୍ଦ ଆନ୍ଦୋଳନ ଚାଲିଲା ଓ ଶ୍ରୀଜଙ୍ଗରେ ପୋଲିସ୍ ଅତ୍ୟାଚାର ବିରୁଦ୍ଧରେ ଆଇନ୍ ଅମାନ୍ୟ ଚାଲିଥିଲା। ଏପ୍ରିଲ୍ ୧୬ ତାରିଖରେ ହରେକୃଷ୍ଣ ମହତାବ ଗିରଫ ହୋଇ ଏକବର୍ଷ କାରାଦଣ୍ଡ ଭୋଗିଥିଲେ। ଲବଣ ସତ୍ୟାଗ୍ରହର ଆଉ ଗୋଟିଏ ବିଶେଷ ଘଟଣା ହେଲା ବାନର ସେନା ଗଠନ। ୧୭ ବର୍ଷ ବୟସରୁ କମ୍ ପିଲାମାନେ ସ୍ୱେଚ୍ଛାସେବକ ହୋଇ ଲୁଣ ମାରିବା, ପିକେଟିଂ କରିବା ଇତ୍ୟାଦି କାର୍ଯ୍ୟରେ ଯୋଗ ଦେଲେ। ପୋଲିସ୍ ସେମାନଙ୍କୁ ଧରି ବେତମାଡ଼ ଦେଇ ନିର୍ଜନ ସ୍ଥାନରେ ଛାଡ଼ିଦେଇ ଆସୁଥିଲେ। ସେମାନେ କିନ୍ତୁ ଫେରି ଆସି ଲୁଣ ମାରିବା ଓ ପିକେଟିଂ ଇତ୍ୟାଦି କାର୍ଯ୍ୟ କରୁଥିଲେ। ସେମାନଙ୍କୁ ଆୟତ୍ତ କରିବା ସରକାରଙ୍କ ପକ୍ଷରେ ଏକ ଗୁରୁତର ସମସ୍ୟା ହୋଇ ଉଠିଥିଲା। ହଜାର ହଜାର ସ୍ୱେଚ୍ଛାସେବକ ଓ ଜନସାଧାରଣ ମିଶି ଲୁଣ ମାରିବାକୁ ଲାଗିଲେ। ପୋଲିସ୍ କେତେକଙ୍କୁ ଗିରଫ କଲେ ଓ ଅନ୍ୟମାନଙ୍କ ଉପରେ ଲାଠି ପ୍ରହାର କରି ସେମାନଙ୍କୁ ଘଉଡାଇ ଦେବାକୁ ଚେଷ୍ଟା କଲେ, କିନ୍ତୁ ଚେଷ୍ଟା ବିଶେଷ ଫଳପ୍ରଦ ହେଲା ନାହିଁ। ସେମାନେ ପୋଲିସ୍‌କୁ ଭ୍ରୂକ୍ଷେପ ନ କରି ନିର୍ଭୀକ ଭାବରେ ଲୁଣ ମାରିବାକୁ ଲାଗିଲେ। ଏହିପରି ଭାବରେ ୧୯୩୦ ମସିହା ଗାନ୍ଧିଜୀଙ୍କ ଲବଣ ସତ୍ୟାଗ୍ରହ ଓ ଦାଣ୍ଡି ଯାତ୍ରା ଅଭିଯାନ ଓଡ଼ିଶାରେ ମଧ୍ୟ ପ୍ରଭାବ ପକାଇଥିଲା।

ଏଚ.ଆଇ.ଜି– ୯୧, ଫେଜ୍ – ୧
କାନନ ବିହାର, ପୋ.ଅ– ପଟିଆ,
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର ।
ପିନ୍ ନଂ– ୭୫୧୦୩୧

# ଘୁମୁସର ବିଦ୍ରୋହରେ ଦୋରା ଓ ଚକରା ବିଷୋୟୀଙ୍କ ଭୂମିକା

ଡକ୍ଟର ସୁରେଶ ଚନ୍ଦ୍ର ପଣ୍ଡା

ଅନନ୍ତ ଆକାଶକୁ ନ ଦେଖିଲେ ଯେମିତି ତା'ର ବିଶାଳତାକୁ ଉପଲବ୍ଧି କରି ହୁଏନା, ସାଗରର ବିସ୍ତୃତି ପ୍ରତି ଦୃଷ୍ଟି ନିକ୍ଷେପ ନକଲେ ତା'ର ଗଭୀରତାକୁ ଯେଭଳି ମାପ କରି ହୁଏନା, ଠିକ୍ ସେହିପରି ଉତ୍କଳର ଗୌରବମୟ ଐତିହ୍ୟ ସମ୍ପର୍କରେ କହିଲାବେଳେ ଏହାର ଭୌଗୋଳିକ ସରହଦ ମଧ୍ୟରେ ଅବସ୍ଥିତ ଘୁମୁସର ସମ୍ପର୍କରେ ନକହିଲେ ଉତ୍କଳର ଇତିହାସ ପୂର୍ଣ୍ଣତା ଲାଭ କରିପାରେନା । କାରଣ କାଳର ପ୍ରବାହରେ ଦିନେ ଏପରି ସମୟ ଆସିଛି, ଯେତେବେଳେ ଓଡ଼ିଆ ଭାଷା ତଥା ଜାତିର ସ୍ଥିତି ଉପରେ ପ୍ରଶ୍ନ ଉଙ୍କି ମାରିଛି । ଏପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଘୁମୁସରରେ ଜନ୍ମଲାଭ କରିଥିବା ମହାନ୍ କବି ଉପେନ୍ଦ୍ର ଭଞ୍ଜଙ୍କ ଚଳଚଞ୍ଚଳ ଲେଖନୀ ନିଃସୃତ ଅଜସ୍ର କାବ୍ୟଗ୍ରନ୍ଥ ଓଡ଼ିଆ ଭାଷା ତଥା ଜାତିକୁ ବଞ୍ଚାଇ ଦେଇଛି । ପୁଣି ପରାଧୀନ ଜନ୍ମଭୂମିର କ୍ରନ୍ଦନକୁ ଉପଲବ୍ଧି କରି ଏହାର ସ୍ୱାଧୀନତାକୁ ଫେରାଇ ଆଣିବା ପାଇଁ ଏହି ମାଟି ଦିନେ ରକ୍ତରଂଜିତ ହୋଇଉଠିଛି । ଏ ଜାତିର ଦୁର୍ଦ୍ଦିନରେ ସାମ୍ରାଜ୍ୟବାଦୀ ବିଦେଶୀ ଶାସନର ମୂଳୋତ୍ପାଟନ ନିମନ୍ତେ ରଣହୁଙ୍କାର ଦେଇ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଦୁଃସାହସିକ ସଂଗ୍ରାମକୁ ଜାରି ରଖୁଥିବା ଅନ୍ୟ ଦୁଇଜଣ ପ୍ରବାଦ ପୁରୁଷ ହେଉଛନ୍ତି ଘୁମୁସରର ସୁଯୋଗ୍ୟ ସନ୍ତାନ ସଂଗ୍ରାମୀ ବୀର ଦୋରା ବିଷୋୟୀ ଓ ଚକରା ବିଷୋୟୀ ।

ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦକ୍ଷିଣ ଓଡ଼ିଶାର ଭଞ୍ଜ ରାଜୁତିର ସୁରକ୍ଷା ଏବଂ କନ୍ଧମାନଙ୍କ ଉପରେ ଇଂରେଜମାନଙ୍କର ପ୍ରଭୁତ୍ୱ ଜାରି ବିରୋଧରେ ବିଦ୍ରୋହ ହୋଇଥିଲା । ଏହା ଇତିହାସରେ ଘୁମୁସରର ବିଦ୍ରୋହ ନାମରେ ଖ୍ୟାତ । କନ୍ଧ ସଂପ୍ରଦାୟର ଦୁଇଜଣ ମହାନେତା ଦୋରା ବିଷୋୟୀ ଓ ଚକରା ବିଷୋୟୀ ଏହି ଇଂରେଜ ବିରୋଧୀ ବିଦ୍ରୋହର ନେତୃତ୍ୱ ନେଇଥିଲେ ।

ଚକରା ଓ ଦୋହରାଙ୍କ ସଂଗ୍ରାମ ଜୀବନର ଅବତାରଣା କରାଯିବା ପୂର୍ବରୁ ଘୁମୁସରର ଐତିହାସିକ ପୃଷ୍ଠଭୂମି ଉପରେ ସମ୍ୟକ୍ ଆଲୋଚନା ନିତାନ୍ତ ଆବଶ୍ୟକ । ବୌଦରେ ଭଞ୍ଜବଂଶର ରାଜାମାନେ ରାଜୁତି କରୁଥିଲେ । ଏତିକିବେଳେ ତତ୍କାଳୀନ ବୌଦର ରାଜା ରଘୁନାଥ ଭଂଜ ଘୁମୁସର ରାଜ୍ୟ ପ୍ରତିଷ୍ଠା କରିଥିଲେ । ଏହି ସମୟରୁ ହିଁ ଏଠାରେ ଭଂଜ ବଂଶର ରାଜୁତି ଆରମ୍ଭ ହେଲା । ଏହାପରେ ଘୁମୁସର କେତେବେଳେ ମୋଗଲମାନଙ୍କ ପରୋକ୍ଷ ଶାସନରେ ରହିଛି ତ କେତେବେଳେ ମରହଟ୍ଟା, ଫରାସୀ ଓ ଇଂରାଜୀ କର୍ତ୍ତୃତ୍ୱାଧୀନ ହୋଇଛି । ତଥାପି ଘୁମୁସରର ଭୌଗୋଳିକ ଅବସ୍ଥିତ ଅତୁଟ ରହିବା ସହିତ ଭଂଜବଂଶର ରାଜାମାନେ ଏହାର ପ୍ରତ୍ୟକ୍ଷ ଶାସନରେ ରହିଛନ୍ତି । ଘୁମୁସରର ପ୍ରବଳ ପ୍ରତାପୀ ରାଜା କୃଷ୍ଣ ଚନ୍ଦ୍ର ଭଂଜ ବିଦେଶୀମାନଙ୍କ ପ୍ରଭାବକୁ ଲୋପ କରିବା ନିମନ୍ତେ ୧୭୬୩ ଖ୍ରୀଷ୍ଟାବ୍ଦରେ ଏଠାରେ ସଂଗ୍ରାମର ଅୟମାରମ୍ଭ କରିଥିଲେ ।

୧୭୬୬ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟ ଦ୍ୱିତୀୟ ଶାହାଆଲାମଙ୍କ ସ୍ୱୀକୃତି ଲାଭ କରିବା ଫଳରେ ଘୁମୁସରର ମାଡ୍ରାସ ପ୍ରେସିଡ଼େନ୍‌ସି ଭୁକ୍ତ ହୋଇ ଇଂରେଜ ଶାସନାଧୀନ ହୋଇଥିଲା । ସେହିଦିନଠାରୁ ଘୁମୁସର ରାଜ୍ୟର ସ୍ୱାଧୀନତାକୁ ଫେରାଇ ଆଣିବା ନିମନ୍ତେ ଏଠାରେ ସଂଗ୍ରାମ ଜାରି ରହିଥିଲା । ୧୮୩୬ ମସିହା ବେଳକୁ ଘୁମୁସରର ରାଜା ଥିଲେ ଧନଞ୍ଜୟ ଭଂଜ । ସେ ଥିଲେ ଜଣେ ପ୍ରଭାବଶୀଳ ତଥା ସ୍ୱାଭିମାନୀ ଶାସକ । ତାଙ୍କର ପ୍ରଧାନ ସେନାପତି ଥିଲେ ଦୋରା ବିଷୋୟୀ । ଧନଞ୍ଜୟ ଭଞ୍ଜ ଇଂରେଜ ସରକାରଙ୍କୁ ଘୁମୁସରର ରାଜସ୍ୱ ପଇଠ ନକରିବାରୁ ତାଙ୍କୁ ଗାଦିଚ୍ୟୁତ କରାଗଲା । ଫଳରେ ପୂର୍ବରୁ କୁହୁଳୁଥିବା ସଂଗ୍ରାମ ଏକ ମୁକ୍ତି ଆନ୍ଦୋଳନରେ ରୂପାନ୍ତରିତ ହୋଇଥିଲା । ଏହାର ନେତୃତ୍ୱ ନେଇଥିଲେ ବିଶ୍ୱସ୍ତ ଦେଶଭକ୍ତ ତଥା ମହାନ୍ ସ୍ୱାଧୀନତା ସଂଗ୍ରାମୀ

ଦୋହରା ବିଷୋୟୀ। ୧୮୩୫ ମସିହାରୁ ୧୮୩୭ ମସିହା ପର୍ଯ୍ୟନ୍ତ ସେ ସଂଗ୍ରାମକୁ ଜାରିରଖି ଇଂରେଜମାନଙ୍କ ଅଶେଷ କ୍ଷତି ଘଟାଇ ଥିଲେ।

ଏହି ସମୟରେ କନ୍ଧ ସଂପ୍ରଦାୟର ମୁଖ୍ୟ ପ୍ରତିନିଧି ଦୋରା ବିଷୋୟୀ ଧନଞ୍ଜୟ ଭଞ୍ଜଙ୍କ ଅନୁଗାମୀ ଭାବରେ କନ୍ଧମାନଙ୍କୁ ଏକାଠି କରି ଇଂରେଜ ଶାସନ ବିରୋଧରେ ସଂଗ୍ରାମ କରିଥିଲେ। କନ୍ଧମାନେ ଇଂରେଜ ସେନାବାହିନୀ ଉପରେ ଆକ୍ରମଣ କରି ସେମାନଙ୍କୁ କ୍ଷତିଗ୍ରସ୍ତ କରିଥିଲେ। ଧନୁତୀର ପରି ପୁରାତନ ଅସ୍ତ୍ର ଧରି ଯୁଦ୍ଧ କରୁଥିବା କନ୍ଧମାନଙ୍କୁ ଦମନ କରିବା ପାଇଁ ମାନ୍ଦ୍ରାଜରୁ ଇଂରେଜ ସୈନ୍ୟବାହିନୀକୁ ଡ଼କାଯାଇଥିଲା।

ଦୋରା ବିଷୋୟୀଙ୍କ ନେତୃତ୍ୱରେ କନ୍ଧମାନେ ଇଂରେଜ ସେନା ଉପରେ ଆକ୍ରମଣ କରି ୧୩ଜଣ ସୈନ୍ୟ ଏବଂ ଦୁଇଜଣ ଇଂରେଜ ସେନାପତିଙ୍କୁ ହତ୍ୟା କରିଥିଲେ। ଫଳରେ ବାଧ୍ୟ ହୋଇ ଇଂରେଜମାନେ କନ୍ଧମାନଙ୍କ ବିରୋଧରେ ହେଉଥିବା ଯୁଦ୍ଧ ବନ୍ଦ କଲେ। କନ୍ଧମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଇଂରେଜମାନେ ଚେଷ୍ଟା କଲେ। କନ୍ଧମାନଙ୍କୁ କୌଣସି କର ଦେବାକୁ ହେବ ନାହିଁ ବୋଲି ଘୋଷଣା କରାଗଲା। ଏହା ସତ୍ତ୍ୱେ କନ୍ଧନେତାମାନେ ଇଂରେଜ ଶାସନ ବିରୋଧରେ ସଂଗ୍ରାମ ଜାରି ରଖିଲେ। ତେଣୁ ବିଦ୍ରୋହୀ ନେତା ଦୋରା ବିଷୋୟୀଙ୍କୁ ଧରିବା ପାଇଁ ଇଂରେଜ ସରକାର ଚେଷ୍ଟା କଲେ। ତାଙ୍କୁ ଧରାଇ ଦେଲେ ପାଞ୍ଚହଜାର ଟଙ୍କା ପୁରସ୍କାର ଦିଆଯିବ ବୋଲି ଘୋଷଣା କରାଗଲା।

ପ୍ରବଳ ପ୍ରତାପୀ ଇଂରେଜ ସେନାର ଗୁଳିଗୋଳା ସମ୍ମୁଖରେ ପାରମ୍ପରିକ ଖଣ୍ଡାଢ଼ାଲ ଓ ବର୍ଛା, ଧନୁ ପରି ଅସ୍ତ୍ର ଧରି ଦୋରା ବେଶି କାଳ ତିଷ୍ଠି ପାରି ନଥିଲେ। ଶେଷରେ ଅନୁଗୁଳଠାରେ ଧରା ପଡ଼ିଲେ। ବନ୍ଦୀ ଭାବରେ ତାଙ୍କୁ ମାନ୍ଦ୍ରାଜ ନିଆଗଲା। ସେଠାରେ ତାଙ୍କର ମୃତ୍ୟୁ ଘଟିଲା।

୧୮୨୩ ମସିହା ଶାମ୍ବ ଦଶମୀରେ ଉତ୍କଳର ଭାଗ୍ୟାକାଶରେ ଏକ ବିସ୍ମୟ ଶିଶୁର ଆବିର୍ଭାବ ଘଟିଥିଲା। ଘୁମୁସରର ପ୍ରକୃତି ମଧ୍ୟରେ କୁଆଁ କୁଆଁ ରାବକରି ଏହାର ନିସ୍ତବ୍ଧତାକୁ ଭଙ୍ଗ କରିଥିବା ସେହି ନବଜାତ ଶିଶୁଟି ଥିଲା ଚକରା ବିଷୋୟୀ। ବାସ୍ତବିକ ସେଦିନ ପିତାମାତାଙ୍କ କୋଳ ମଣ୍ଡନ କରିଥିବା ଶିଶୁକୁ ପାଇ ବିଷୋୟୀ ପରିବାର ଧନ୍ୟ ହୋଇଥିଲେ। ସତେ ଯେପରି ଜନ୍ମଭୂମିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଏବଂ ଦୋରାଙ୍କ ସଂଗ୍ରାମକୁ ଜାରି ରଖିବାର ଦୁର୍ବାର ସ୍ୱପ୍ନ ନେଇ ସେ ଜନ୍ମ ହୋଇଥିଲା। ପିତାମାତାଙ୍କ କୋଳରେ ବଢ଼ୁଥିବା ଚକରା ବିଷୋୟୀ ଉପରେ ସ୍ୱାଧୀନତା ସଂଗ୍ରାମର ପ୍ରଭାବ ପଡ଼ିଥିଲା। କାରଣ ଏହି ପରିବାରର ବ୍ରିଟିଶ ଶାସନକୁ ହଟାଇବା ପାଇଁ ଦୋରା ବିଷୋୟୀଙ୍କର ରକ୍ତ ତାଙ୍କ ଶରୀରରେ ପ୍ରବାହିତ ହେଉଥିଲା। ସୁତରାଂ ସେ ନିଜ ପିତୃସ୍ୱଦଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ଜନ୍ମଭୂମିର ସେବା କରିବା ନିମନ୍ତେ ବ୍ରତୀ ହୋଇଥିଲେ। ସେ ଚାହିଁଥିଲେ ନିଜ ସାଂସାରିକ ଜୀବନକୁ ଭୋଗ ବିଳାସରେ କଟାଇ ପାରିଥାନ୍ତେ କିନ୍ତୁ ଜନ୍ମଭୂମି ମୁକ୍ତିର ସ୍ୱପ୍ନରେ ବିଭୋର ହୋଇ ତୁଳିତଳ୍ପ ପରିତ୍ୟାଗ ପୂର୍ବକ ସେ ଆପଣେଇ ନେଇଥିଲେ ସଂଗ୍ରାମ ପଥକୁ।

ଦୋରା ବିଷୋୟୀଙ୍କ ସମୟରେ କନ୍ଧମାନଙ୍କୁ ଦିଆଯାଇଥିବା ପ୍ରତିଶ୍ରୁତି ଇଂରେଜମାନେ କାର୍ଯ୍ୟକାରୀ କଲେ ନାହିଁ। କନ୍ଧମାନଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ଥିବା ବେଳେ ଇଂରେଜ ସରକାର ସେମାନଙ୍କ ଉନ୍ନତି ପାଇଁ କୌଣସି ପଦକ୍ଷେପ ନନେଇ ସେମାନଙ୍କର ସ୍ୱାଧୀନତା ଉପରେ ବାରମ୍ବାର ହସ୍ତକ୍ଷେପ କରୁଥିଲେ। ଫଳରେ କନ୍ଧମାନେ କ୍ଷୁବ୍ଧ ହୋଇ ଇଂରେଜମାନଙ୍କ ବିରୋଧରେ ପୁଣି ବିଦ୍ରୋହ କରିଥିଲେ। ଚକରା ବିଷୋୟୀ ଏବଂ ତାଙ୍କର ଅନୁଗାମୀମାନେ ବଣ ପାହାଡ଼ରେ ଲୁଚି ରହି ଇଂରେଜ ସୈନ୍ୟମାନଙ୍କ ଉପରେ ହଠାତ୍ ଆକ୍ରମଣ କରୁଥିଲେ। ଏହି ଯୁଦ୍ଧରେ ମୁକାବିଲା କରିବା ପାଇଁ ଇଂରେଜ ସୈନ୍ୟମାନେ ବିଫଳ ହୋଇଥିଲେ।

ଚକରାଙ୍କୁ ଦମନ କରିବା ନିମନ୍ତେ ସରକାର କ୍ୟାପ୍‌ଟେନ୍ ମେକ୍‌ଫର ସନ୍ ଓ ପରେ କର୍ଣ୍ଣେଲ କ୍ୟାମ୍ପବେଲଙ୍କ ପରି ସେନା ଅଫିସର୍‌ମାନଙ୍କୁ ପଠାଇଥିଲେ। ହେଲେ ଚକରାଙ୍କୁ ସେନାମାନେ ଧରି ପାରିଲେ ନାହିଁ କିମ୍ବା ଆନ୍ଦୋଳନ ବନ୍ଦ ହେଲା ନାହିଁ। ଚକରାଙ୍କ ବିଦ୍ରୋହରେ ତତ୍କାଳୀନ ଭାରତର ବଡ଼ଲାଟ୍ ଲର୍ଡ଼ ଡ଼େଲହାଉସୀ ମଧ୍ୟ ବ୍ୟସ୍ତ ହୋଇ ପଡ଼ିଲେ। ଚକରାଙ୍କୁ ଧରିବା ପାଇଁ ଦୀନବନ୍ଧୁ ପଟ୍ଟନାୟକଙ୍କ ପରି କେତେ ଦେଶଦ୍ରୋହୀ ଇଂରେଜ ସରକାରଙ୍କୁ ସାହାଯ୍ୟ କରିଥିଲେ। ତଥାପି ତାଙ୍କୁ ଧରିବାରେ ଇଂରେଜ ପ୍ରଶାସନ ବ୍ୟର୍ଥ ହୋଇଥିଲେ।

ଚକରା ବିଷୋୟୀଙ୍କ ୧୮୪୨ ମସିହାରୁ ୧୮୫୬ ମସିହା ପର୍ଯ୍ୟନ୍ତ ଦୀର୍ଘ ୧୫ବର୍ଷର ଅଦମ୍ୟ ସଂଗ୍ରାମ କେବଳ ଘୁମୁସର କାହିଁକି ସମଗ୍ର ଭାରତବର୍ଷର ଜନଗଣଙ୍କ ମଧ୍ୟରେ ଜାତୀୟତାର ବହ୍ନିକୁ ଜଳାଇ ପାରିଥିଲା। ଫଳରେ ଏହାର ପରବର୍ତ୍ତୀ ସମୟରେ ସିପାହୀ ବିଦ୍ରୋହ ଆରମ୍ଭ ହୋଇଥିଲା। ଆଉ ପ୍ରଥମ କରି ଭାରତୀୟମାନେ ଗୋଟିଏ ସୂତ୍ରରେ ଆବଦ୍ଧ ହୋଇ ଇଂରେଜ

ଶାସନକୁ ଲୋପ କରିବା ନିମନ୍ତେ ସଂଗ୍ରାମ କରିଥିଲେ। ଚକରା ବିଷୋୟୀ ନିଜ ସ୍ୱାର୍ଥ ପାଇଁ କେବେ ବିପ୍ଳବ କରି ନଥିଲେ କିମ୍ବା ଶାସନଗାଦିର ମୋହ ତାଙ୍କର ନଥିଲା। ବରଂ ଜଣେ ନିଃସ୍ୱାର୍ଥପର ସଚ୍ଚା ଦେଶପ୍ରେମୀଭାବେ ମାତୃଭୂମି ପ୍ରତି ଗଭୀର ମମତ୍ୱବୋଧ ଓ ଉଗ୍ର ଜାତୀୟତାବୋଧ ତାଙ୍କୁ ବ୍ରିଟିଶ ବାହିନୀ ବିରୁଦ୍ଧରେ ବିପ୍ଳବ କରିବା ନିମନ୍ତେ ପ୍ରେରଣା ଯୋଗାଇ ଥିଲା। ଦୁର୍ଦ୍ଧର୍ଷ ବ୍ରିଟିଶସେନା ଚକରାଙ୍କର ଗରିଲା ଯୁଦ୍ଧର ସମ୍ମୁଖୀନ ହୋଇ ନପାରି ଯେତେବେଳେ ତାଙ୍କୁ ନାନା ପ୍ରଲୋଭନ ଦେଖାଇ ସନ୍ଧି ପ୍ରସ୍ତାବ ଦେଇଥିଲେ, ସେତେବେଳେ ଚକରା କହିଲେ – 'ମୁଁ ଆଉ କିଛି ଚାହେଁନା, ମୁଁ ଚାହେଁ ମୋର ଜନ୍ମମାଟିର ମୁକ୍ତି।' ଏପରିକି ତାଙ୍କୁ ଧରାଇ ଦେଲେ ପ୍ରଚୁର ଅର୍ଥ ପୁରସ୍କାର ମଧ୍ୟ ଘୋଷଣା କରାଯାଇଥିଲା। ହେଲେ ସବୁ ଶ୍ରେଣୀର ଲୋକଙ୍କଠାରୁ ସେ ସର୍ବଦା ସହଯୋଗ ପାଉଥିଲେ। ୧୮୪୮ ମସିହାରେ ଭାରତର ତତ୍କାଳୀନ ବଡ଼ଲାଟ୍ ଲର୍ଡ଼ ଡ଼େଲହାଉସୀ ମାନ୍ଦ୍ରାଜ ପ୍ରେସିଡ଼େନ୍ସିକୁ କଡ଼ା ନିର୍ଦ୍ଦେଶ ଦେଇଥିଲେ ଚକରାଙ୍କୁ ଧରିବା ପାଇଁ। ଏହାର ପ୍ରତ୍ୟୁତ୍ତରରେ ଇଷ୍ଟଇଣ୍ଡିଆ କମ୍ପାନୀର ବୋର୍ଡ଼ ଅଫ୍ କଣ୍ଟ୍ରୋଲର ପ୍ରେସିଡ଼େଣ୍ଟଙ୍କ ନିକଟକୁ ଏକ ପତ୍ରରେ ଲେଖିଥିଲେ– 'ଚକରା ବିଷୋୟୀ ହେଉଛନ୍ତି ଜଣେ ଦୁଃସାହସୀ ବିଦ୍ରୋହୀ। ତାଙ୍କୁ ଧରିବା ପାଇଁ ପର୍ବତ କନ୍ଦରରୁ ଉପତ୍ୟକା ପର୍ଯ୍ୟନ୍ତ ଖୋଜା ଚାଲିଛି। ହେଲେ ତାଙ୍କର ସନ୍ଧାନ ପାଇବା କଷ୍ଟକର ହୋଇପଡ଼ିଛି। ତଥାପି ତାଙ୍କୁ ଓ ତାଙ୍କର ଅନୁଗାମୀମାନଙ୍କୁ ଦିନେ ନା ଦିନେ ଧରାଯିବ।' ଏହି ଚିଠିରୁ ଚକରାଙ୍କର ଅସାଧାରଣ ମୁକ୍ତି ସଂଗ୍ରାମ ସମ୍ପର୍କରେ ସୂଚନା ମିଳେ। ଏହାଛଡ଼ା ସରକାରଙ୍କ ସମସ୍ତ ପ୍ରଲୋଭନକୁ ପରିତ୍ୟାଗ କରି ସେ ଯେଉଁ ଅପୂର୍ବ ସଂହତି ଓ ତ୍ୟାଗ ଭାବର ପରାକାଷ୍ଠା ପ୍ରଦର୍ଶନ କରି ଯାଇଛନ୍ତି, ତାହା ତାଙ୍କ ଦେଶ ପ୍ରେମର ଉଜ୍ଜ୍ୱଳ ନିଦର୍ଶନ ଅଟେ।

ଚକରା ବିଷୋୟୀଙ୍କ ଜୀବନର ଅନ୍ୟ ଏକ ଦିଗ ହେଲା ସେ ଜଣେ ପ୍ରଖ୍ୟାତ ଦେବୀ ସାଧକ ଥିବାର ଜଣାଯାଏ। ଲେମ୍ବେଇ ଗ୍ରାମର ଅଦୂରରେ ଥିବା ନିଘଞ୍ଚ ଅରଣ୍ୟ ମଧ୍ୟରେ ଚକ୍ରଘାଟିଠାରେ ସେ ଦେବୀ ଦୁର୍ଗାଙ୍କୁ ସାଧନା କରୁଥିଲେ। ସେଠାରୁ ହିଁ ବ୍ରିଟିଶ ବାହିନୀ ବିରୁଦ୍ଧରେ ଗରିଲା ଯୁଦ୍ଧକୁ ପରିଚାଳନା କରୁଥିଲେ। ଦେବୀଙ୍କ ଉଦ୍ଦେଶ୍ୟରେ ସେ ରଖିଥିବା ଦୁଇଟି ଘଣ୍ଟି ଅଦ୍ୟାପି ସେଠାରେ ରହିଛି। ଫାଲଗୁନ୍ ମାସରେ ତାରସିଙ୍ଗି ଗ୍ରାମର ଅଧିବାସୀମାନେ ଏହି ଘଣ୍ଟି ଦୁଇଟିକୁ ଗ୍ରାମସାରା ବଡ଼ପଟୁଆର କରି ବୁଲାଇଥାନ୍ତି। ଏହା 'ରଣଘଣ୍ଟା' ପର୍ବ ନାମରେ ଖ୍ୟାତ। କୁହାଯାଏ ବ୍ରିଟିଶ ବାହିନୀ ବିରୁଦ୍ଧରେ ସଂଗ୍ରାମ ଦେଶଭକ୍ତମାନଙ୍କୁ ସତର୍କ କରିବା ପାଇଁ ଆବଶ୍ୟକ ବେଳେ ଏହି ଘଣ୍ଟି ଦୁଇଟି ଆପେ ଆପେ ବାଜି ଉଠେ।

ବାସ୍ତବିକ ମାତୃଭୂମିର ସୁରକ୍ଷା ପାଇଁ ଦୋରା ବିଷୋୟୀ ଦେଇଥିବା ବଚନର ପାଳନ ନିମନ୍ତେ ଭଞ୍ଜ ରାଜ ପରିବାରକୁ ପୁଣି ଥରେ କ୍ଷମତାସୀନ କରିବା ନିମନ୍ତେ ଚକରା ଯେଉଁ ଇଂରେଜ ବିରୋଧୀ ବିଦ୍ରୋହର ଅଗ୍ନି ପ୍ରଜ୍ଜ୍ୱଳିତ କରିଥିଲେ, ଊନବିଂଶ ଶତାବ୍ଦୀର ସାମରିକ ଇତିହାସରେ ଏହିପରି ସଂଗ୍ରାମର ଦୃଷ୍ଟାନ୍ତ ବିରଳ।

ବିପ୍ଳବୀ ଚକରାଙ୍କ ଜନ୍ମ ଓ ପରିବାର ସମ୍ପର୍କରେ ବିଭିନ୍ନ ଗବେଷକ ଭିନ୍ନ ଭିନ୍ନ ମତ ଦିଅନ୍ତି। ପ୍ରଖ୍ୟାତ ଗବେଷକ ଅନନ୍ତ ପଦ୍ମନାଭ ପଟ୍ଟନାୟକ ଓ ଅନ୍ୟ କେତେକଙ୍କ ମତରେ ଚକରା ଘୁମୁସରର ସୀମାନ୍ତ ଗ୍ରାମ ତୋରାବାଡ଼ିଠାରେ ଦୋରା ବିଷୋୟୀଙ୍କ ପୁତ୍ର ଭାବେ ଜନ୍ମ ଗ୍ରହଣ କରିଥିଲେ। ଅବଶ୍ୟ ଦୋରା ବିଷୋୟୀଙ୍କ ଘୁମୁସର ବିଦ୍ରୋହ ସମୟରେ ପରିବାରର ସୁରକ୍ଷା ନିମନ୍ତେ ନିଜ ଜନ୍ମ ସ୍ଥାନ ବିଞ୍ଜିଗିରି ପରିତ୍ୟାଗ କରି ଘନ ଅରଣ୍ୟାନୀ ପରିବେଷ୍ଟିତ ପାର୍ବତ୍ୟ ଗ୍ରାମ ତୋରାବାଡ଼ିଠାରେ ଅବସ୍ଥାନ କରୁଥିଲେ। ଏହି ସମୟରେ ଚକରାଙ୍କର ଜନ୍ମ ହୋଇଥିଲା ବୋଲି ସ୍ୱର୍ଗତଃ ପଟ୍ଟନାୟକ ମତ ଦିଅନ୍ତି। ପରିବାର ସମ୍ପର୍କରେ ମତରେ ପାର୍ଥକ୍ୟ ଥିଲେ ମଧ୍ୟ ଚକରା ବିଷୋୟୀ ଦୋହରାଙ୍କ ଅତି ନିକଟରେ ଥିଲେ ଓ ଏକ ସ୍ୱାଧୀନତା ସଂଗ୍ରାମୀ ଭାବେ ଉତ୍ସର୍ଗୀକୃତ ପରିବାର ମଧ୍ୟରେ ତାଙ୍କର ଜନ୍ମ ହୋଇଥିଲା ଏହା ନିଃସନ୍ଦେହ।

ଶିକ୍ଷା ଓ ସଭ୍ୟତାର ଆଲୋକଠାରୁ ଦୂରରେ ଥିଲା ସେହି ଗ୍ରାମ ଯେଉଁଠାରେ ଚକରାଙ୍କ ବାଲ୍ୟ ଜୀବନ ନିଘଞ୍ଚ ଅରଣ୍ୟ ଭିତରେ କେତେ ଆଦିବାସୀ ସଂପ୍ରଦାୟର ପିଲାଙ୍କ ମଧ୍ୟରେ କଟିଥିଲା। ତାରକା ନାମ୍ନୀ ବାଳିକା ଥିଲା ସେମାନଙ୍କ ମଧ୍ୟରେ ଅନ୍ୟତମ। ପରବର୍ତ୍ତୀ ସମୟରେ କୈଶୋର ପ୍ରାପ୍ତି ପରେ ସେ ତାରକାଙ୍କୁ ବିବାହ କରିଥିଲେ। ନିଜର ପିତାଙ୍କ ଦୁର୍ବାର ସ୍ୱପ୍ନକୁ ସାର୍ଥକ କରିବା ନିମନ୍ତେ ସେ ବରାବର ମହିୟସୀ ଜନନୀ ଓ ପତ୍ନୀ ତାରକାଙ୍କଠାରୁ ପ୍ରେରଣା ପାଉଥିଲେ। ଫଳତଃ ପରମ ଶକ୍ତିଶାଳୀ ଦୁର୍ଦ୍ଧର୍ଷ ସେନା ବିରୁଦ୍ଧରେ ଏତେଦିନ ଧରି ସେ ସଂଗ୍ରାମକୁ ଜାରି ରଖି ପାରିଥିଲେ।

ଚକରା ବିଷୋୟୀଙ୍କ ଶେଷ ଜୀବନ ଆଜି ସୁଦ୍ଧା ରହସ୍ୟମୟ ହୋଇ ରହିଯାଇଛି। ଯଦିଓ ଐତିହାସିକ ତଥା ଗବେଷକମାନଙ୍କ ମତରେ ୧୮୫୭ ମସିହାରେ ଘଟି ଯାଇଥିବା ମହାନ୍ ଭାରତୀୟ ବିପ୍ଳବ ପୂର୍ବରୁ ଚକରାଙ୍କ ମୃତ୍ୟୁ ହୋଇଥିଲା, ତଥାପି ନେତାଜୀ

ସୁଭାଷ ଚନ୍ଦ୍ର ବୋଷଙ୍କ ପରି ସେ କେଉଁ ଅବସ୍ଥାରେ କିପରି ମୃତ୍ୟୁ ବରଣ କଲେ ଅଦ୍ୟାବଧି ରହସ୍ୟମୟ ବଳୟ ମଧ୍ୟରେ ରହିଯାଇଛି। କିନ୍ତୁ ଚକରା କେବେ ହେଲେ ବ୍ରିଟିଶ ବାହିନୀ ଆଗରେ ଆତ୍ମସମର୍ପଣ କରି ନଥିଲେ ଓ ବ୍ରିଟଶ ବାହିନୀ କଦାପି ତାଙ୍କୁ ଧରି ପାରି ନଥିଲେ। ଭାରତବର୍ଷର ସ୍ୱାଧୀନତା ସ୍ୱପ୍ନରେ ବିଭୋର ହୋଇ ଘୁମୁସରର ମୁକ୍ତି ଆନ୍ଦୋଳନକୁ ସେ ଯେଉଁ ଉତ୍ସର୍ଗୀକୃତ ଦେଶପ୍ରେମର ପରାକାଷ୍ଠା ଦେଖାଇ ଯାଇଛନ୍ତି, ତାହା ବାସ୍ତବିକ ଭାରତ ଇତିହାସରେ ଏକ ଅବିସ୍ମରଣୀୟ ଅଧ୍ୟାୟ ହୋଇ ରହିବ। ଚକରା ଏତେ ବଡ଼ ସଂଗ୍ରାମୀ ହେଲେ ମଧ୍ୟ ଦୀର୍ଘଦିନ ଧରି ଲୋକଲୋଚନକୁ ଆସି ନପାରିବାର ମୁଖ୍ୟ କାରଣ ହେଲା ଏଭଳି ଜଣେ ସଂଗ୍ରାମୀଙ୍କ ସଂଗ୍ରାମ ସର୍ବତ୍ର ବ୍ୟାପି ଯିବାର ଆଶଙ୍କା ରହିଥିଲା। ଏଣୁ ଇଂରେଜ ସରକାର ତାଙ୍କ ସମ୍ପର୍କିତ ରେକର୍ଡ଼କୁ ଲୁକ୍କାୟିତ କରି ରଖିଥିଲା। କାଳର ଚୌହଦୀ ମଧ୍ୟରେ ତାଙ୍କର ନଶ୍ୱର ଶରୀର ସମାଧି ଲାଭ କରିଛି, ହେଲେ ଜନ୍ମଭୂମିର ସେବାରେ ତାଙ୍କର ମହନୀୟ ତ୍ୟାଗ ଓ ଉତ୍ସର୍ଗ ଲାଗି ଭାରତୀୟ ଜନମାନସରେ ସେ ଚିରଦିନ ଅମର ହୋଇ ରହିବେ, ଏହା ନିଃସନ୍ଦେହ ।

କଳିଙ୍ଗନଗର, ଭଞ୍ଜନଗର

# ଆମେରେ ସ୍ୱାଧୀନ ଆଜି

**ଶ୍ରୀଧର କୁମାର ସାହୁ**

ପରାଧୀନ ଥିଲା ଦିନେ ଏଇ ଆମ ଆଜିର ସୁନାର ଭାରତ
ଆଣିଥିଲେ ସ୍ୱାଧୀନତା ସଂଗ୍ରାମୀଗଣ
ଖାଇ ମାଡଗାଳି, ଝରାଇଣ ଲୁହ ଲହୁ ।

ଛାଡି ହିଂସା ତରବାରୀ, ଅହିଂସା ପଥେ କରି ଆନ୍ଦୋଳନ
ଥରାଇ ଦେଲେ ସେ ବ୍ରିଟିଶର ହିଆ
ହୃଦେ ତାଙ୍କ ସୃଷ୍ଟି କଲା କମ୍ପନ ।

ଧନ୍ୟ ସେ ବୀରଗଣ ଧନ୍ୟ
ତା' ଜନନୀ ଧନ୍ୟ ସେ ଜାତି ମହାନ
ଦୁଃଖ ଲାଗେ ଆଜି ଦେଖି ହିଂସା ଆଚରଣ
କ୍ଷୁଣ୍ଣ ସାମାଜିକ ଚେତନ ।

ଛାଡି ହିଂସାର ପଥ କର ଅହିଂସା ପଥ ସଦା ଆଚରଣ
ଫେରିଆସୁ ସୁଦିନ, ହସୁ ଆଜିର ସମାଜ
ଆମେରେ ହେବା ମହାନ ।

ହସିବେ ପୂର୍ବ ଦାୟାଦ ଆମ
ଥାଇବି ଏବେ ସ୍ୱର୍ଗେ
ଆସରେ ଆମେ ଧରିବା ତୋଳି
ତାଙ୍କରି କଳ୍ପିତ ଭୂସ୍ୱର୍ଗ ।

ଦେଶ ହେବ ମହାନ ଜାତି ହେବ ମହାନ
ହସିବ ସୁନ୍ଦର ଭାରତ
ହିଂସା, ଦ୍ୱେଷ, ଦୁଃଖ ଦୂର ହୋଇଯିବ
ଝରିବ ନାହିଁରେ ରକତ ।

ସମୀକ୍ଷକ
ଗୃହ ଓ ନଗର ଉନ୍ନୟନ ବିଭାଗ
ଓଡ଼ିଶା ସଚିବାଳୟ, ଭୁବନେଶ୍ୱର

# ଓଡିଶାର ନାରୀ ଓ ସ୍ୱାଧୀନତା ସଂଗ୍ରାମ

**ଶାଶ୍ୱତୀ ସୌମ୍ୟା ମିଶ୍ର**

ଅସାଧାରଣ ପ୍ରତିଭାର ଅଧିକାରିଣୀ ହେଉଛି ନାରୀ । ସୁଗନ୍ଧିତ ପୁଷ୍ପ କେବେ ଆସ୍ୱାଦନ କରିପାରେନା ନିଜ ହୃଦୟ ଆହ୍ଲାଦକ ସୁବାସକୁ । କସ୍ତୁରୀକୁ ନାଭିରେ ଧାରଣ କରିଥିବା ମୃଗ କେବେବି ଜାଣିପାରେନା ତା'ର ମହନୀୟତାକୁ । ସେହିପରି ସର୍ବଗୁଣ ସମ୍ପନ୍ନା ନାରୀ କେବେ ଅଳି କରି ବସେନା ମିଛ ଆଭିଜାତ୍ୟ ଏବଂ ଲୋକ ଦେଖାଣିଆ ଆତ୍ମୀୟତାକୁ । ନାରୀର ପ୍ରକୃତି (ସ୍ନେହ, ପ୍ରେମ, ଧୈର୍ଯ୍ୟ) କେବେ ବଦଳି ଯାଏନି ସମୟର ଅଠାକାଠିରେ । ପରିସ୍ଥିତି କୌଣସି ପ୍ରଭାବ ପକାଇ ପାରେନା ତା'ର ସ୍ୱାଧୀନ ଚିନ୍ତାଧାରାରେ । ପ୍ରତ୍ୟେକ ମୁହୂର୍ତ୍ତରେ ପରାଧୀନତାର ସ୍ୱାଦ ଚାଖୁଥିବା ନାରୀ କିନ୍ତୁ ବାଣ୍ଟି ଚାଲିଥାଏ ସ୍ୱାଧୀନତାର ଗୁପ୍ତ ଚାବିକାଠି । ସ୍ୱାଧୀନତା ହୋଇପାରେ ପରିବାର, ସମାଜ କିମ୍ବା ଦେଶ ମାତୃକାର । ସବୁଠି ନାରୀ ଦେଖାଇ ପାରିଛି ତା'ର ଅଦମ୍ୟ ଇଚ୍ଛା ଏବଂ ଅସୀମ ପରାକାଷ୍ଠା, ଯାହାଦ୍ୱାରା ବିଶ୍ୱ ଇତିହାସରେ ସେ ସୃଷ୍ଟି କରିପାରିଛି ସ୍ୱତନ୍ତ୍ର ସ୍ଥାନ ।

ଏହା ସ୍ପଷ୍ଟ ରୂପେ ପରିଲକ୍ଷିତ ହୋଇଥିଲା ଆମ ଦେଶର ପରାଧୀନତା ସମୟରେ । ଯେତେବେଳେ ଆମ ଦେଶ ଭାରତ ପରାଧୀନ ଥିଲା ଏବଂ ହରାଇ ଥିଲା ନିଜ ହୃତଗୌରବ, ସେତେବେଳେ କେବଳ ପୁରୁଷମାନେ ନୁହନ୍ତି ନାରୀମାନେ ମଧ୍ୟ ନିଜ ପରିବାର, ଘରସଂସାର ଛାଡି ଆଗେଇ ଆସିଥିଲେ ଦେଶ ମାତୃକାର ସମ୍ମାନ ରକ୍ଷା ଉଦ୍ଦେଶ୍ୟରେ । ବହୁ କଷ୍ଟ, ଯନ୍ତ୍ରଣା ସହ୍ୟ କରି ସ୍ୱର ଉତ୍ତୋଳନ କରିଥିଲେ ବିଦେଶୀ ଶାସକମାନଙ୍କ ବିରୋଧରେ ଏବଂ ଆଣି ଦେଇଥିଲେ ପୂର୍ଣ୍ଣ ସ୍ୱାଧୀନତା ମାଟି ମା' କୋଳକୁ । ଓଡିଶା ଏବଂ ଓଡିଶା ବାହାରର ବହୁନାରୀ ଏହି ଆତ୍ମରକ୍ଷା ରୂପକ ମହାଯୁଦ୍ଧରେ ନିଜକୁ ସାମିଲ କରିନେଇଥିଲେ । ଜଳାଞ୍ଜଳି ଦେଇଥିଲେ ନିଜ ସୁଖ ସ୍ୱଚ୍ଛନ୍ଦକୁ । ସେମାନଙ୍କର ମହନୀୟତା ଏବଂ ଗରିମା ନିମ୍ନରେ ପ୍ରଦାନ କରାଯାଇଛି ।

**ସ୍ୱାଧୀନତା ସଂଗ୍ରାମରେ ଓଡିଶାର ନାରୀମାନଙ୍କର ଭୂମିକା**

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଆରମ୍ଭ ହୋଇଥିଲା ଅସହଯୋଗ ଆନ୍ଦୋଳନ (୧୯୨୦) । ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ ହଜାର ହଜାର ଦେଶପ୍ରେମୀ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ନାରୀ ନେତ୍ରୀ । ନିଜ ଦେଶ ପ୍ରତି ଗଭୀର ଭଲ ପାଇବା ଟାଣି ଆଣିଥିଲା ସେମାନଙ୍କୁ ତେଲ ଲୁଣର ସଂସାର ଭିତରୁ । ଅଟକାଇ ପାରି ନ ଥିଲା ପରିବାରର ମୋହ । କର୍ତ୍ତବ୍ୟ ସାମ୍ନାରେ ମୋହ ସତେ ଯେମିତି ତୁଚ୍ଛ ପଡିଯାଇଥିଲା ।

୧୮୮୫ ରୁ ୧୯୦୫ ମସିହା ମଧ୍ୟରେ ଓଡିଶାର ନାରୀନେତ୍ରୀମାନେ ଗୋପବନ୍ଧୁ ଦାସଙ୍କ ଆଦର୍ଶରେ ବହୁ ମାତ୍ରାରେ ଅନୁପ୍ରାଣିତ ହୋଇଥିଲେ । ସେତେବେଳେ ଗୋପବନ୍ଧୁଙ୍କ ନେତୃତ୍ୱରେ ନିଶାମଣୀ ଦେବୀ, ନିତାମ୍ବିନୀ ଦେବୀ, ଚମ୍ପାମଣୀ ଦେବୀ, ଆଶାମଣୀ ଦେଇ ପ୍ରମୁଖ ନାରୀମାନେ ବିଦେଶୀ ଶାସକମାନଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡିଶା ପ୍ରଦେଶର ବହୁ ମହିଳା ନିଜକୁ ସାମିଲ କରିନେଇଥିଲେ ଇଂରେଜ ବିରୋଧୀ ଆନ୍ଦୋଳନରେ । ସେମାନଙ୍କ ମଧ୍ୟରୁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ସରଳା ଦେବୀ, ରମା ଦେବୀ, ମାଳତୀ ଚୌଧୁରୀ, ଜାହ୍ନବୀ ଦେବୀ, ହିରଣ୍ମୟୀ ଦେବୀ, ଗୋଦାବରୀ ଦେବୀ, ରାଧାମଣୀ ଦେବୀ, ପାର୍ବତୀ ଦେବୀ, ଜାନକୀ ଦେବୀଙ୍କ ପରି ନାରୀ ନେତ୍ରୀମାନେ । ସେମାନେ ଦୃଢତାର ସହିତ ଭିଡି ଧରିଥିଲେ ଆନ୍ଦୋଳନର ରଜ୍ଜୁକୁ । ସେମାନଙ୍କ ଦୃଢ ଇଚ୍ଛାଶକ୍ତି ଓ ସହଯୋଗ ବଳରେ ସତ୍ୟାଗ୍ରହ, ଖଦୀ ଉଦ୍ୟୋଗ ଏବଂ ବିଭିନ୍ନ ପ୍ରକାର ଭାରତୀୟ ଉଦ୍ୟୋଗର ପ୍ରତିଷ୍ଠା ସମ୍ଭବପର ହୋଇ ପାରିଥିଲା । ଭାରତୀୟ ଜାତୀୟ କଂଗ୍ରେସର ମହନୀୟତା ଆକୃଷ୍ଟ କରିଥିଲା ବହୁ ବିଶିଷ୍ଟ ମହିଳାମାନଙ୍କୁ । ସେମାନଙ୍କ ମଧ୍ୟରୁ ଶୈଳବାଳା ଦାସ, ରେବା ରାୟ ଏବଂ ଓଡିଶାର ଗଡଜାତର ରାଣୀମାନେ ପ୍ରମୁଖ ଥିଲେ । ସେମାନେ କେବଳ ନାରୀ ଶିକ୍ଷା,

ବିଧବା ବିବାହ, ପରଦାପ୍ରଥା ଉଚ୍ଛେଦ ଓ ବାଲ୍ୟ ବିବାହ ପ୍ରଥା ଉପରେ ଗୁରୁତ୍ୱ ଦେଉ ନ ଥିଲେ, ତତ୍ ସହିତ ଜନସାଧାରଣଙ୍କର ସ୍ୱାଧୀନତା, ଦେଶର ଏକକତ୍ୱ ପ୍ରତିଷ୍ଠା ଏବଂ ସର୍ବୋପରି ଏକ ଗଣତନ୍ତ୍ର ରାଷ୍ଟ୍ର ଗଠନ ଉପରେ ମଧ୍ୟ ପ୍ରାଧାନ୍ୟ ଦେଉଥିଲେ ।

୧୯୨୦ ମସିହା ବେଳକୁ ନାରୀ ଶୋଷଣ ଏବଂ ଲାଞ୍ଛନା ବିରୋଧରେ ସ୍ୱର ଉତ୍ତୋଳନ କରି ବହୁ ସାହିତ୍ୟିକା ବିଭିନ୍ନ ପତ୍ର ପତ୍ରିକା ମାଧ୍ୟମରେ ନିଜର ଉନ୍ନତ ଚିନ୍ତାଧାରା ଏବଂ ପୁରୁଷ ପ୍ରଧାନ ସମାଜର ହୀନମନ୍ୟତା ବିଷୟରେ ଆଲୋକପାତ କରିଥିଲେ । ସେମାନଙ୍କ ମଧ୍ୟରୁ କୁନ୍ତଳା କୁମାରୀ ସାବତ, ସୀତାଦେବୀ ଖାଡଙ୍ଗା ଆଦି ମୁଖ୍ୟ ଭୂମିକା ନିର୍ବାହ କରିଥିଲେ । ସେମାନେ ନିଜର କାବ୍ୟିକ ଚିନ୍ତାଧାରା ଓ ମାଧୁର୍ଯ୍ୟ ଦ୍ୱାରା ଓଡିଆ ସାହିତ୍ୟ ଜଗତରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିପାରିଥିଲେ । ସେମାନଙ୍କ ପ୍ରତ୍ୟେକଟି ଲେଖାରେ ପରାଧୀନତା ବିରୋଧରେ ମାର୍ମିକ ଉପଦେଶମାନ ଫୁଟି ଉଠୁଥିଲା । ପ୍ରଖ୍ୟାତ ଆଇନ୍‌ଜୀବୀ ଲୋକନାଥ ବାହାଦୂରଙ୍କର ପତ୍ନୀ ଲାବଣ୍ୟା ଦେବୀ ପୁରୀରେ ମହିଳା ବନ୍ଧୁ ସମିତି ନାମକ ଏକ ମହିଳା ଅନୁଷ୍ଠାନ ଗଠନ କରିଥିଲେ । ପ୍ରଥମେ ଏଥିରେ ସମ୍ଭ୍ରାନ୍ତ ବଂଶୀୟ ନାରୀମାନେ ଯୋଗ ଦେଇଥିଲେ । ପରେ ଏଥିରେ ବହୁ ବିଦୂଷୀ ଏବଂ ସ୍ୱାଧୀନ ଚିନ୍ତାଧାରା ପୋଷଣ କରୁଥିବା ନାରୀମାନେ ଯୋଗ ଦେଇଥିଲେ । ସାଧାରଣତଃ ଓଡିଶାର ଉନ୍ନତି ଓ ଭବିଷ୍ୟତ ସମ୍ପର୍କରେ ଚର୍ଚ୍ଚା କରୁଥିଲେ ।

### ଗାନ୍ଧିଜୀଙ୍କ ଆଗମନ ଓ ତା'ର ପ୍ରଭାବ

୧୯୨୧ ମସିହା ମାର୍ଚ୍ଚ ମାସରେ ଗାନ୍ଧିଜୀ ପ୍ରଥମ ଥର ଓଡିଶା ଗସ୍ତରେ ଆସିଥିଲେ । ଏହାର ପ୍ରଭାବ ପ୍ରାୟ ସର୍ବତ୍ର ପରିଲକ୍ଷିତ ହୋଇଥିଲା । ମହାତ୍ମା ଗାନ୍ଧୀଙ୍କ ସାଧାରଣ ସଭା ଓ କଟକର ବିନୋଦ ବିହାରୀଠାରେ ହୋଇଥିବା ମହିଳା ସଭା ସ୍ୱାଧୀନତା ସଂଗ୍ରାମକୁ ତ୍ୱରାନ୍ୱିତ କରିଥିଲା । ୧୯୨୧ ମସିହାରେ ସାରଦା ଦେବୀ ସ୍ୱାମୀଙ୍କ ସହ କନିକା ଗସ୍ତରେ ଆସି ଇଂରେଜ ଆଶ୍ରିତ ଦେଶୀୟ ରାଜାମାନଙ୍କ ବିରୋଧରେ ପ୍ରଜାମାନେ କରିଥିବା ବିଦ୍ରୋହରେ ଯୋଗ ଦେଇଥିଲେ । ରମାଦେବୀ ଏବଂ ହୀରାମଣୀ ଦେବୀ ୧୯୨୨ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ଗୟା ଅଧିବେଶନରେ ଯୋଗ ଦେଇଥିଲେ । ୧୯୨୮ ମସିହା ଡିସେମ୍ବରରେ ରମା ଦେବୀ, ସରୋଜିନୀ ଚୌଧୁରୀ, ଜାହ୍ନବୀ ଦେବୀ ଏବଂ କୋକିଳା ଦେବୀ କଲିକତା ଅଧିବେଶନରେ ଯୋଗ ଦେଇଥିଲେ । ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହ ଯେତେବେଳେ ବାଲେଶ୍ୱରର ଇଞ୍ଚୁଡିରେ ଆରମ୍ଭ ହେଲା, ରମା ଦେବୀ ଏବଂ କିରଣ ସେନ୍ ସେଠାରେ ଯୋଗ ଦେଇଥିଲେ । ସେମାନଙ୍କ ନେତୃତ୍ୱରେ ସହସ୍ର ସହସ୍ର ନାରୀ ନେତ୍ରୀ ସେଥିରେ ଅଂଶଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ ସରଳା ଦେବୀ, କିଶୋରୀ ଦେବୀ ଏବଂ ମାଳତୀ ଦେବୀ ପ୍ରମୁଖ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । କଂଗ୍ରେସର କରାଚି ଅଧିବେଶନରେ (୧୯୩୧)ରେ ରାସମଣି ଦେବୀ, ସରଳା ଦେବୀ, କୁନ୍ତଳା କୁମାରୀ ସାବତ୍, ସରୋଜିନୀ ଚୌଧୁରୀ ପ୍ରମୁଖ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଆଇନ୍ ଅମାନ୍ୟ ଆନ୍ଦୋଳନ ଯେତେବେଳେ ଓଡିଶାରେ ସଂପ୍ରସାରିତ ହେଲା, ସେତେବେଳେ ଅଲ୍ ଓଡିଶା ମହିଳା ପରିଷଦ ଗଠନ କରାଯାଇ ଆନ୍ଦୋଳନକୁ ଅଧିକ ତ୍ୱରାନ୍ୱିତ କରାଯାଇଥିଲା । କୁନ୍ତଳା କୁମାରୀ ସାବତ୍ ଏହାର ମୁଖ୍ୟ ଥିଲେ ।

୧୯୩୪ ମସିହା ମେ ମାସରେ ମହାତ୍ମା ଗାନ୍ଧୀ ଯେତେବେଳେ ଗୁଜୁରାଟର ସାବରମତୀରୁ ଦାଣ୍ଡି ପର୍ଯ୍ୟନ୍ତ ପଦଯାତ୍ରା ଆରମ୍ଭ କଲେ, ସେତେବେଳେ ଓଡିଶାର ନାରୀନେତ୍ରୀମାନେ ମଧ୍ୟ ସେଠାରେ ଯୋଗ ଦେଇଥିଲେ । ମୁଖ୍ୟତଃ ସେମାନେ ବିଦେଶୀ ଦ୍ରବ୍ୟ ବର୍ଜନ, ଛୁଆଁ ଅଛୁଆଁ ଭେଦଭାବ ଓ ନିଶା ବିରୋଧୀ ସଂଗ୍ରାମ ଚଳାଇ ଥିଲେ । ଭାରତ ଛାଡ ଆନ୍ଦୋଳନରେ ମାଳତୀ ଦେବୀଙ୍କ ଭୂମିକା ଅବର୍ଣ୍ଣନୀୟ । ୧୯୪୨ ମସିହା ଅଗଷ୍ଟ ୮ରେ ମାଳତୀ ଦେବୀ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହିତ ଇଂରେଜମାନଙ୍କ ଦ୍ୱାରା ଗିରଫ ହୋଇଥିଲେ ଓ ପରେ ଖସି ପଳାୟନ କରିଥିଲେ । ଠିକ୍ ସେହିଦିନ ରମା ଦେବୀଙ୍କ ସହ ପ୍ରାୟ ୨୪ ଜଣ ନାରୀ ସଂଗ୍ରାମୀଙ୍କୁ ଗିରଫ କରାଯାଇ ହାଜତକୁ ପଠାଯାଇଥିଲା । ବହୁ କଷ୍ଟରେ ଅଗଷ୍ଟ ୮, ୧୯୪୨ରେ ମାଳତୀ ଦେବୀ କଟକରେ ଆସି ପହଞ୍ଚିଥିଲେ ଏବଂ ଓଡିଶାରେ ଅଗଷ୍ଟ ବିପ୍ଳବର ମୂଳଦୁଆ ସ୍ଥାପନ କରିଥିଲେ । ଓଡିଶାର ନାରୀମାନଙ୍କ ବିପୁଳ ସହଯୋଗ ଓ ସଂଗ୍ରାମ ବଳରେ ଓଡିଶାରେ ଅଗଷ୍ଟ ବିପ୍ଳବ ସଫଳ ହୋଇ ପାରିଥିଲା । ଏହାର ଗାଥା ଓଡିଶା ଇତିହାସରେ ସର୍ବଦା ଅବିସ୍ମରଣୀୟ ହୋଇ ରହିବ ।

### ଉପସଂହାର

ଓଡିଆ ନାରୀମାନଙ୍କର ଶିକ୍ଷା, ସାମାଜିକ ଓ ଅର୍ଥନୈତିକ ଅଗ୍ରଗତି ପଛରେ ଓଡିଆ ନାରୀମାନଙ୍କର ବହୁ ଅବଦାନ ରହିଛି । ସେମାନଙ୍କ ଇଚ୍ଛାଶକ୍ତି ଓ କର୍ତ୍ତବ୍ୟବୋଧ ନିକଟରେ ହାର ମାନିଛି ସାମାଜିକ କଟକଣା ଓ କଠୋର ଜାତିବାଦ । ଲିଙ୍ଗଗତ ଭେଦଭାବ ସେମାନଙ୍କୁ ଦୁର୍ବଳ ପରିବର୍ତ୍ତେ କରି ତୋଳିଛି ଅଧିକ ଶକ୍ତିଶାଳୀ ଓ ସତ୍ୟନିଷ୍ଠ । ଯେତେବେଳ ପର୍ଯ୍ୟନ୍ତ ଓଡିଶାର ଇତିହାସ ଉଦ୍‌ଜୀବିତ ରହିବ, ସେତେବେଳ ପର୍ଯ୍ୟନ୍ତ ରମାଦେବୀ, ମାଳତୀ ଚୌଧୁରୀ, ସରଳା ଦେବୀମାନଙ୍କ ପରି ମହିୟସୀ ନାରୀମାନଙ୍କର ଅବଦାନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

ମାର୍ଫତ୍– ମିହିର କୁମାର ମିଶ୍ର
ଦରଖା ପାଟଣା, ପୋ–କଲ୍ୟାଣୀ ନଗର,
ଜିଲ୍ଲା – କଟକ, ପିନ୍ – ୭୫୩୦୧୩

# ଓଡିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତି ପରେ

## ଓଡିଆ ବିଶ୍ୱବିଦ୍ୟାଳୟ ଓ କେନ୍ଦ୍ରୀୟ ଓଡିଆ ଭାଷା ସଂସ୍ଥା ପ୍ରତିଷ୍ଠା ନିମିତ୍ତ ଜାତୀୟ ଆଲୋଚନାଚକ୍ରର ବିବରଣୀ

**ଡକ୍ଟର ସୁବ୍ରତ କୁମାର ପୃଷ୍ଟି**

**ପୃଷ୍ଠଭୂମି:** ଓଡିଆଭାଷାକୁ ଶାସ୍ତ୍ରୀୟ ମାନ୍ୟତା ସମ୍ପର୍କିତ କେନ୍ଦ୍ର ସରକାରଙ୍କ ଗେଜେଟ ବିଜ୍ଞପ୍ତି ପ୍ରକାଶ ତଥା ୨୦୧୪ ନିର୍ବାଚନ ଇସ୍ତାହାରରେ ଓଡିଆ ବିଶ୍ୱବିଦ୍ୟାଳୟ ନୂଆ ସରକାରଙ୍କ ପ୍ରାଥମିକତା ଲାଭ କରିବ ବୋଲି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଘୋଷଣା ଓଡିଆ ଭାଷା ପ୍ରେମୀଙ୍କ ମଧ୍ୟରେ ଉତ୍ସାହ ଆଣିଛି ଏବଂ ଓଡିଆ ଭାଷାର ବିକାଶ ପାଇଁ ୨ଟି ବୃହତ୍ ସଂସ୍ଥା ଗଠନ ହେବାର ସମ୍ଭାବନା ସୃଷ୍ଟି କରିଛି । ଏହି ଦୁଇଟି ସଂସ୍ଥାର ଗଠନ ଓ ଭବିଷ୍ୟତର କର୍ମପନ୍ଥା ନିର୍ଦ୍ଧାରଣ ହିଁ ଆଲୋଚନାର ଉଦ୍ଦେଶ୍ୟ। ଆଲୋଚନାରେ ଅଂଶ ଗ୍ରହଣ କରିଥିବା ବୁଦ୍ଧିଜୀବୀ ପ୍ରସ୍ତାବ ଓ ଦିଗ୍‌ଦର୍ଶନ ଉପରୋକ୍ତ ଦୁଇଟି ଅନୁଷ୍ଠାନର ଗଠନ ଓ କାର୍ଯ୍ୟକ୍ରମ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ ଗ୍ରହଣ କରିବ।

(ପ୍ରଥମ ଅଧିବେଶନ ମଞ୍ଚ ପରିଚାଳନା– କେନ୍ଦ୍ରୀୟ ଭାରତୀୟ ଭାଷା ସଂସ୍ଥାନ, ମହିଶୂରର ପ୍ରତିଷ୍ଠାତା ନିର୍ଦ୍ଦେଶକ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ)

**ଡକ୍ଟର ଲଲାଟେନ୍ଦୁ ଦାସ ମହାପାତ୍ର** (ଜାତୀୟ ଅଭିଲେଖାଗାର ପୂର୍ବାଞ୍ଚଳ ଶାଖାର ଉପନିର୍ଦ୍ଦେଶକ) : ଏହି ଆଲୋଚନାଚକ୍ରର ଉଦ୍ଦେଶ୍ୟ ସମ୍ପର୍କରେ ଆଗତ ବିଦ୍ୱାନମଣ୍ଡଳୀଙ୍କୁ ସ୍ୱାଗତ ସମ୍ଭାଷଣ ପୂର୍ବକ ସୂଚନା ପ୍ରଦାନ କରିବା ସହ ଜାତୀୟ ଅଭିଲେଖାଗାର ପ୍ରତିଷ୍ଠା ହେବା ଦିନଠାରୁ ଏପର୍ଯ୍ୟନ୍ତ ପ୍ରଥମକରି ଏଭଳି ଆଲୋଚନାଚକ୍ର ଆୟୋଜିତ ହୋଇଥିବାରୁ ସେ ନିଜେ ତଥା ତାଙ୍କ ଅନୁଷ୍ଠାନ ଗୌରବାନ୍ୱିତ ମନେ କରୁଛନ୍ତି ବୋଲି କହିଥିଲେ। ସେ ଓଡିଆ ଭାଷାର ପ୍ରାଚୀନତା ଓ ସ୍ୱାତନ୍ତ୍ର୍ୟତା ବିଷୟରେ ଅବତାରଣା କରିବା ସହ ଓଡିଶାରୁ ଭାରତର ସର୍ବାଧିକ ସଂଗୃହୀତ ୫୪୦୦୦ ତାଳପତ୍ର ପୋଥିର ସଂରକ୍ଷଣ ଏକ ଆହ୍ୱାନ ସୃଷ୍ଟି କରିଥିବା ବେଳେ ରାଜ୍ୟ ଓ କେନ୍ଦ୍ର ଅଭିଲେଖାଗାର, ପ୍ରତ୍ନତାତ୍ତ୍ୱିକ ଅନୁଷ୍ଠାନ ଓ ସଂଗ୍ରହାଳୟ ତଥା ବିଶ୍ୱବିଦ୍ୟାଳୟ ଏବଂ ଗବେଷଣା ସଂସ୍ଥାମାନଙ୍କର କର୍ତ୍ତବ୍ୟ ନିଜନିଜ କ୍ଷେତ୍ରରେ ବହୁ ପରିମାଣରେ ବଢିଯାଇଛି। ଏହି ପରିପ୍ରେକ୍ଷୀରେ କେନ୍ଦ୍ରୀୟ ଓଡିଆ ଭାଷା ସଂସ୍ଥା ଏବଂ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନା ଅତି ଆବଶ୍ୟକ ଥିବାରୁ ଏଥିପାଇଁ ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାର ଭୂମିକା ଓ ସଂଯୋଜନା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ଏହି ଦୃଷ୍ଟିରୁ ଓଡିଶାର ବରେଣ୍ୟ ଶିକ୍ଷାବିତ ଓ ବୁଦ୍ଧିଜୀବୀମାନଙ୍କୁ ନେଇ ଅଭିଲେଖ ଓ ପ୍ରତ୍ନଲେଖରେ ଶାସ୍ତ୍ରୀୟ ଓଡିଆ ଓ ଓଡିଆ ବିଶ୍ୱବିଦ୍ୟାଳୟ ଶୀର୍ଷକ ଆଲୋଚନାଚକ୍ର ଉକ୍ତ ସଂସ୍ଥା ସହ ମିଳିତ ଭାବରେ ଆୟୋଜନ କରାଯାଇଛି।

**ଡକ୍ଟର ସୁବ୍ରତ କୁମାର ପୃଷ୍ଟି** (ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାର ସଦସ୍ୟ ସଚିବ) : ଅନୁଷ୍ଠାନର ବିଗତ ଦିନର କାର୍ଯ୍ୟକ୍ରମ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ଦେଇ କହିଲେ ଏହି ଅନୁଷ୍ଠାନ ଓଡିଶାର ବୁଦ୍ଧିଜୀବୀ, ଶିକ୍ଷାବିତ, ରାଜନେତା, ଗବେଷକ ଆଦିଙ୍କୁ ନେଇ ଗଠିତ ହୋଇଥିବାବେଳେ ପ୍ରାରମ୍ଭରୁ ଏହା ୨ଟି କାର୍ଯ୍ୟ ଉପରେ ଗୁରୁତ୍ୱ ଦେଇଆସୁଛି, ଯଥା – ଓଡିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ଏବଂ ଓଡିଆ ମାଧ୍ୟମରେ ନିଯୁକ୍ତି, ଶିକ୍ଷା ଓ ଗବେଷଣା ପାଇଁ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନ। ପ୍ରଥମ ଉଦ୍ଦେଶ୍ୟ ସଫଳ ପାଇଁ ଅନୁଷ୍ଠାନ ପକ୍ଷରୁ ପ୍ରସ୍ତୁତ ଭିତ୍ତିପତ୍ର ଉଭୟ ସରକାରୀ ଓ ବେସରକାରୀ କମିଟିକୁ ପ୍ରଦାନ କରିବା ସହ ଏହି ସଫଳତା ପାଇଁ ଶେଷ ପର୍ଯ୍ୟନ୍ତ କାମ କରୁଥିଲା। ଓଡିଆ ଭାଷାର ଶାସ୍ତ୍ରୀୟ ମାନ୍ୟତା ପରେ ବ୍ୟାପକ ଗବେଷଣା ପାଇଁ କିପ୍ରକାର ପଦକ୍ଷେପ ନିଆଯିବ ସେ ବିଷୟରେ ଓଡିଶାର ବିଦ୍ୱାନଗଣଙ୍କ ମତାମତ ପାଇଁ ୯.୯.୨୦୧୩ ତାରିଖରେ ଇନ୍‌ଟାକ୍ ଓଡିଶା ଶାଖା, ୧୨.୧୨.୧୩ ତାରିଖରେ କଟକର ସଂସ୍କୃତି ଭବନ ସଂସ୍ଥା

ସହଯୋଗରେ ୨ଟି ଆଲୋଚନାଚକ୍ର ଆୟୋଜନ କରାଯାଇଥିବା ବେଳେ ଶାସ୍ତ୍ରୀୟ ମାନ୍ୟତା ପାଇଥିବା ଅନ୍ୟ ଭାଷାର ରାଜ୍ୟମାନେ କି ପଦକ୍ଷେପ ନେଇଛନ୍ତି ତଥା ସେହି ରାଜ୍ୟରେ ସ୍ଥାପିତ ଭାଷା ବିଶ୍ୱବିଦ୍ୟାଳୟ ଦ୍ୱାରା ଉକ୍ତ ଭାଷାର କିପ୍ରକାର ବିକାଶ ଘଟିଛି, ସର୍ବୋପରି ଭାରତୀୟ ଭାଷା ମଧ୍ୟରେ ସମନ୍ୱୟ ସ୍ଥାପନା ପାଇଁ ଗତ ୨ ଓ ୩ ଜାନୁଆରୀ ୨୦୧୪ ତାରିଖରେ ଅନୁଷ୍ଠାନ ପକ୍ଷରୁ ଜାତୀୟ ଭାଷା ସମ୍ମିଳନୀ ଆୟୋଜନ କରାଯାଇଛି।

**ପଦ୍ମଶ୍ରୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ:** ଏହି ଜାତୀୟ ଆଲୋଚନାଚକ୍ରର ବିଷୟବସ୍ତୁ ଉପରେ ସମ୍ୟକ ଧାରଣା ଦେବାପରେ ଓଡିଶାରେ କେନ୍ଦ୍ରୀୟ କ୍ଲାସିକାଲ ଓଡିଆ ସଂସ୍ଥା ନିମ୍ନଲିଖିତ କାର୍ଯ୍ୟ କରିବା ପାଇଁ ପଦକ୍ଷେପ ନେବ। ଯଥା– ୧. Definitive Editions of Ancient Odia Works, 2. Translation of Ancient Odia Works, 3. Grammar of Classical Odia and Modern Odia, 4. Historical Grammar of Odia, 5. Antiquity of Odia: An Inter-Disciplinary Research, 6. Synchronic and Diachronic Study of Odia Dialects, 7. India as a Linguistic Area, 8. Digital Library or Ancient Odia Studies, 9. Online Teaching of Classical Odia, 10. Corpus Development for Classical Odia Works, 11. Visual Episodes on Classical Odia. ଏହାବ୍ୟତୀତ ସଂସ୍କୃତ, ପାଲି, ପ୍ରାକୃତ, ସିଂହଳୀ, ଥାଇ, ବର୍ମା, ତିବ୍ବତ ଭାଷା ଉପରେ ଗବେଷଣା କରାଯିବା ସହିତ ପାରସ୍ପରିକ ସଂମ୍ପର୍କ, ଭାଷା ଓ ଉପଭାଷାର ସମ୍ପର୍କ ଉପରେ ଗବେଷଣାର ଆବଶ୍ୟକ ରହିଛି।

**ପ୍ରଫେସର ଓଁକାରନାଥ ମହାନ୍ତି** (ପୂର୍ବତନ କୁଳପତି): ଓଡିଆ ବିଶ୍ୱବିଦ୍ୟାଳୟ ଓ କେନ୍ଦ୍ରୀୟ ଶାସ୍ତ୍ରୀୟ ଓଡିଆ ସଂସ୍ଥା କାର୍ଯ୍ୟକ୍ରମ ସମ୍ପର୍କରେ କହିଲେ ଯେ, ଏବେ ଓଡିଆ ଭାଷାର ଅନେକ ମୌଳିକ ଶବ୍ଦ (ଯେପରି ମାହୋଲ) ଓଡିଆ ଭାଷା ବ୍ୟବହାରକୁ ଅନୁପ୍ରବେଶ କରି ଆସିଲାଣି। ଏଣୁ ଓଡିଆ ଶବ୍ଦାବଳୀର ସୁରକ୍ଷା ଓ ପ୍ରସାର ପାଇଁ ଏହାର ବହୁଳ ବ୍ୟବହାର ତଥା ଏହା ଉପରେ ବ୍ୟାପକ ଗବେଷଣା ପାଇଁ ଉଭୟ ଅନୁଷ୍ଠାନ ସ୍ଥାପନ ହେବା ଦରକାର। କେନ୍ଦ୍ରୀୟ ଶାସ୍ତ୍ରୀୟ ଓଡିଆ ସଂସ୍ଥା ଓ ଓଡିଆ ବିଶ୍ୱବିଦ୍ୟାଳୟ ଉଭୟ ଅନୁଷ୍ଠାନ ଗବେଷଣା ଓ ଅନୁବାଦ ଉଭୟ କ୍ଷେତ୍ରରେ କାର୍ଯ୍ୟ କରିବ। ତାହେଲେ ଆମ ପାଖକୁ ବିଶ୍ୱର ବିଭିନ୍ନ ସ୍ଥାନରୁ ଛାତ୍ରଛାତ୍ରୀ ମାନେ ଆସିବେ ଓ ଆମର ଗବେଷକମାନେ ବିଭିନ୍ନ ଦେଶକୁ ଯାଇପାରିବେ। ଏଭଳି କାର୍ଯ୍ୟକ୍ରମ ଦ୍ୱାରା ଆମେ ଯୋଗ୍ୟ ଶିକ୍ଷକ ଅଧ୍ୟାପକ ସୃଷ୍ଟି କରିପାରିବା।

**ପଦ୍ମବିଭୂଷଣ ଡକ୍ଟର ସୀତାକାନ୍ତ ମହାପାତ୍ର** (ଅବସରପ୍ରାପ୍ତ କେନ୍ଦ୍ର ସଂସ୍କୃତି ସଚିବ): –୨ଟି ସଂସ୍ଥା ଓଡିଆ ବିଶ୍ୱବିଦ୍ୟାଳୟ ଓ Classical Odia ଗଠିତ ହେବାକୁ ଯାଉଛି। ତାମିଲ ପାଇଁ ଯାହା ହେଉଛି ଆମ ପାଇଁ ତାହା ମଧ୍ୟ ଆବଶ୍ୟକ। ଆଦିବାସୀ ଭାଷା ସମ୍ପର୍କରେ ଓ ତାହା ସହିତ ଓଡିଆ ଭାଷାର ସମ୍ପର୍କ, ଆଦିବାସୀ ଭାଷାର ଲିପି ସୃଷ୍ଟି ଓ ବିକାଶ, ଲିପିହୀନ ଓ ଲିପିବିଶିଷ୍ଟ ଆଦିବାସୀ ଭାଷା ମଧ୍ୟରେ ଗବେଷଣା ଦରକାର।

**ରାମଚନ୍ଦ୍ର ଖୁଣ୍ଟିଆ**(ପୂର୍ବତନ ରାଜ୍ୟସଭା ସଦସ୍ୟ) : ଓଡିଆ ଭାଷା ପାଇଁ ନୂଆ କିଛି ଚିନ୍ତା କରିବାର ଖୋରାକ ଓଡିଶାର ବୁଦ୍ଧିଜୀବୀଙ୍କୁ ଯୋଗାଇ ଥିବାରୁ ଜାତୀୟ ଅଭିଲେଖାଗାର ଏବଂ ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାକୁ ଧନ୍ୟବାଦ ଜଣାଉଛି। ତେବେ ଶିକ୍ଷା ଓ ଗବେଷଣା ସହିତ ଭାଷାକୁ ବୃତ୍ତିଭିତ୍ତିକ କରିବା ଆବଶ୍ୟକ। ଓଡିଆ ଭାଷାକୁ ଆଗକୁ ନେବାକୁ ହେଲେ ସବୁ ବିଷୟ ଓଡିଆ ମାଧ୍ୟମରେ ପଢାଇବା ଓ ଗବେଷଣା କାର୍ଯ୍ୟ କରିବା ଦରକାର। ଏହା ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନାର ମୁଖ୍ୟ ଉଦ୍ଦେଶ୍ୟ ହେଉ। ଏଥି ସହ ସବୁ ସରକାରୀ କାମ, କଚେରୀ କାମ ଓଡିଆରେ ହେଉ।

**ବିଭୁଦେନ୍ଦ୍ର ନାରାୟଣ ପଟ୍ଟନାୟକ**(ଅବସରପ୍ରାପ୍ତ ପ୍ରଫେସର, ଆଇ.ଆଇ.ଟି, କାନପୁର): ଆମେ କି ପ୍ରକାର କାର୍ଯ୍ୟ ହାତକୁ ନେଲେ ଓଡିଆ ଭାଷାରେ ଜ୍ଞାନ ପ୍ରକାଶ କରିହେବ, ସେ ବିଷୟରେ ମାନସ ମନ୍ଥନ ପାଇଁ ବହୁ ବିଳମ୍ବ କରିସାରିଛନ୍ତି। ତଥାପି ଯଦି ଏବେଠାରୁ ପଦକ୍ଷେପ ନିଆ ନ ଯାଏ, ତେବେ ଆହୁରି ଅସୁବିଧା ସୃଷ୍ଟି ହେବ। ଆମ ଶାସ୍ତ୍ରୀୟ ସାହିତ୍ୟ ସମୃଦ୍ଧ ଥିଲେ ମଧ୍ୟ ତାହାର ଅନୁବାଦ ନ ହେବାରୁ ବିଶ୍ୱମୁଖୀ ହୋଇପାରୁନାହିଁ। କାର୍ତ୍ତିକ ମାହାତ୍ମ୍ୟ, ଲକ୍ଷ୍ମୀପୁରାଣ ଓଡିଆ ସାହିତ୍ୟର ଗୋଟିଏ ଗୋଟିଏ ଅମୂଲ୍ୟ ମୌଳିକ ଗ୍ରନ୍ଥ। ମାତ୍ର ଅନୁବାଦ ଅଭାବରୁ ଏସବୁର ମୂଲ୍ୟାଙ୍କନ ବିଶ୍ୱସ୍ତରରେ ହୋଇପାରୁ ନାହିଁ। ସଂସ୍କୃତ ସାହିତ୍ୟ ଇଂରାଜୀ ବା ଜର୍ମାନ ଭାଷାରେ ଅନୁବାଦ ହୋଇ ନଥିଲେ କିମ୍ବା ଇଂରାଜୀ ଶିକ୍ଷା ସର୍ବବ୍ୟାପକ ନହୋଇଥିଲେ ସେକ୍ସପିୟର କୃତି ସହ ବିଶ୍ୱବାସୀ ପରିଚିତ ହୋଇପାରି ନଥାନ୍ତେ। ତେଣୁ ଶିକ୍ଷା ଓ ଅନୁବାଦ ପାଇଁ ଉକ୍ତ ୨ଟି ସଂସ୍ଥା ପ୍ରତିଷ୍ଠାର ଆବଶ୍ୟକ ରହିଛି ।

**ଶ୍ରୀଯୁକ୍ତ ବୈଷ୍ଣବ ଚରଣ ପରିଡା** (ରାଜ୍ୟସଭା ସାଂସଦ): ଶାସ୍ତ୍ରୀୟ ମାନ୍ୟତା ପ୍ରଥମକରି ଓଡିଶାରେ

ଦେଖାଦେଇଥିବା ସ୍ଥାଣୁତାକୁ ଦୂର କରିପାରିଛି । ୧୯୩୬ରେ ଭାଷାଭିତ୍ତିକ ପ୍ରଦେଶ ଭାବରେ ଓଡିଶା ଗଠନ ଓଡିଆ ଜାତୀୟତାକୁ ନୂଆ ରୂପ ଦେଇଥିବାବେଳେ ଶାସ୍ତ୍ରୀୟ ମାନ୍ୟତା ତାକୁ ଜୀବନ୍ୟାସ ଦେଇଛି। ବର୍ତ୍ତମାନ ଓଡିଆ ଭାଷାକୁ ଶିକ୍ଷା, ବୃତ୍ତି ଓ ଗବେଷଣାର ମାଧ୍ୟମ କରି ଏହାର ସର୍ବବ୍ୟାପକ କରିବା। ଏକଥା ସତ୍ୟ ଯେ, ଏଥିପାଇଁ ମାନବ ସମ୍ବଳ ଦରକାର। କିନ୍ତୁ ଏହି ସମ୍ବଳ ପ୍ରକୃତରେ ଓଡିଆ ବିଶ୍ୱବିଦ୍ୟାଳୟ ତିଆରି କରିବ। ଆମ ଭିତରେ ଥିବା ହୀନମନ୍ୟତାକୁ ଦୂର କଲେ ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କାର୍ଯ୍ୟ ସହଜ ହେବ। ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ୨୪ବର୍ଷ ପରେ ଓଡିଆ ବିଭାଗ ଖୋଲିଲା। ଫକୀରମୋହନ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର୧୪ବର୍ଷ ପରେ ଓଡିଆ ବିଭାଗ ଖୋଲାଗଲା, ତାହା ପୁଣି ୪୦ହଜାର ଟଙ୍କା ଦେଲେ ପଢିହେବ। ସଂସ୍କୃତି ବିଶ୍ୱବିଦ୍ୟାଳୟ ଓଡିଆ ଭାଷା ଓ ସଂସ୍କୃତିର ପ୍ରଚାର, ପ୍ରସାର ଓ ଗବେଷଣା ପାଇଁ କାମ କରିବା ବଦଳରେ ଏହି ବିଭାଗ ଉଠେଇ ଦେଲା। ତେଣୁ ଏ ମାନସିକତାରୁ ଦୂରରେ ରହି ଅନ୍ୟ ଭାଷା ବିଶ୍ୱବିଦ୍ୟାଳୟ ଭଳି ଆଉ ଏକ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଉ। ଏହି ଅନୁଷ୍ଠାନ ସହ ଓଡିଆ ଆବେଗ ଜଡିତ ଥିବାରୁ ଏହା ସମ୍ପୂର୍ଣ୍ଣ ସରକାରୀ ଅମଲାଦ୍ୱାରା ନିୟନ୍ତ୍ରିତ ନ ହୋଇ ବା ସରକାରୀ ନିୟନ୍ତ୍ରଣମୁକ୍ତ ନହୋଇ ଓଡିଶାର ବିଦ୍ୱାନ ଓ ସରକାର ମିଳିତ ଭାବରେ ଏହି ଦାୟିତ୍ୱ ହାତକୁ ନିଅନ୍ତୁ।

**ପ୍ରଫେସର ବୈଷ୍ଣବ ଚରଣ ତ୍ରିପାଠୀ**(ରେଭେନ୍ସା ବିଶ୍ୱବିଦ୍ୟାଳୟ କୁଳପତି) : ଭାଷାଭିତ୍ତିକ ରାଜ୍ୟ ଗଠନ ହେବାକଥା କେବଳ ଭାଷଣ ମଧ୍ୟରେ ସୀମାବଦ୍ଧ ହୋଇ ରହିଛି। ଏହାକୁ ବ୍ୟବହାରିକ କରିବାକୁ ହେଲେ ଗବେଷଣା ନିହାତି ଆବଶ୍ୟକ, ତେବେ ଯାହା ହେଉ, ସବୁ କିଛି ମୂଳରୁ ନଥାଏ। ଅଭାବ ହିଁ ନୂତନତାକୁ ଜନ୍ମ ଦିଏ। ଏହି ନୂତନତାର ଅନ୍ୟ ଏକ ଦିଗ ହେଉଛି ଓଡିଆ ବିଶ୍ୱବିଦ୍ୟାଳୟ ଓ କେନ୍ଦ୍ରୀୟ ଶାସ୍ତ୍ରୀୟ ଓଡିଆ ସଂସ୍ଥା ପ୍ରତିଷ୍ଠା।

**ପ୍ରଫେସର ଅମିୟ ପଟ୍ଟନାୟକ**(ପୂର୍ବତନ କୁଳପତି) : ବିବାଦରୁ ଊର୍ଦ୍ଧ୍ୱରେ ରହି ଏହି ୨ଟି ସଂସ୍ଥା ସ୍ଥାପନା କରିବାକୁ ହେବ। ଯଦିଓ ଏ ଉଦ୍ୟମ ବହୁ ଦିନ ଧରି ହୋଇ ଆସୁଛି ଏବଂ ମୂଳରୁ ଏହା ସହିତ ସଂପୃକ୍ତ ଅଛି। ଏହି କାର୍ଯ୍ୟକୁ ରୂପ ଦେବାପାଇଁ ଯେଉଁସବୁ କଷ୍ଟକର ଉଦ୍ୟମ କରାଯାଇଥିଲା, ତାହାର ଫଳ ହେଉଛି ଶାସ୍ତ୍ରୀୟ ମାନ୍ୟତା। ଏହା ଓଡିଆ ବିଶ୍ୱବିଦ୍ୟାଳୟ ଓ କେନ୍ଦ୍ରୀୟ ଶାସ୍ତ୍ରୀୟ ଓଡିଆ ସଂସ୍ଥା ପ୍ରତିଷ୍ଠା ପାଇଁ କେବଳ ବାଟ ଫିଟାଇ ନାହିଁ ବରଂ କେଉଁ କେଉଁ କ୍ଷେତ୍ର ଅବହେଳିତ ଅଛି, ସେ ବିଷୟରେ ଚିନ୍ତା କରିବା ପାଇଁ ଉଭୟ ସରକାର ଓ ଜନସାଧାରଣଙ୍କୁ ବାଧ୍ୟ କରିଛି।

**ପ୍ରଫେସର ବୈଷ୍ଣବ ଚରଣ ବାରିକ**(ସମ୍ବଲପୁର ବିଶ୍ୱବିଦ୍ୟାଳୟ କୁଳପତି) : ଏକ ସାକ୍ଷାତକାର ନେଉଥିବା ସମୟରେ ଗୋଟିଏ ଓଡିଆ ପିଲାର ଫର୍ମରେ Odia ବଦଳରେ Odiya ଲେଖିଥିବା ଦେଖି ଏ ବିଷୟରେ ପଚାରିବାରୁ ସଠିକ କ'ଣ ସେ ଜାଣିନାହିଁ ଉକ୍ତ ପ୍ରାର୍ଥୀ ମନ୍ତବ୍ୟ ଦେଲା। ତେଣୁ ଆମ ପିଲାମାନେ ଓଡିଆ ବା ଓଡିଶା ବିଷୟରେ କେତେ ସଚେତନ ଏଥିରୁ ଜଣାପଡେ।

**ଶ୍ରୀଯୁକ୍ତ ହରପ୍ରସାଦ ଦାସ** (ଅବସରପ୍ରାପ୍ତ ପ୍ରଶାସକ ଓ ବିଶିଷ୍ଟ ଲେଖକ): ଉତ୍ସାହପ୍ରଦ ଭାଷଣ ଛାଡି ବାସ୍ତବତାକୁ ଗ୍ରହଣ କରିବା ଆବଶ୍ୟକ। ଆମ ଶିକ୍ଷା ବ୍ୟବସ୍ଥା ପାରମ୍ପରିକ ଶୈଳୀରେ ଚାଲୁଥିବାରୁ ଏହା ନିଯୁକ୍ତି ଦେଇପାରୁ ନାହିଁ। ତେଣୁ ସେହି ପଦ୍ଧତି ପୁଣି ଆପଣେଇଲେ ନିଯୁକ୍ତି ବଜାର ଆମ ପାଇଁ ବନ୍ଦ ହୋଇଯିବ। ତେଣୁ ଶିକ୍ଷାର ରୂପ କ'ଣ ହେବ, ସେ ବିଷୟରେ ସତର୍କତାର ସହିତ ପଦକ୍ଷେପ ନେବାକୁ ହେବ। ଆମର ସଂଯୁକ୍ତାକ୍ଷର, ମାତ୍ରାଗୁଡିକ ଆମର ଲିପି ଲିଖନର ବିଶେଷତ୍ୱ ଶାସ୍ତ୍ରୀୟତା ତା'ର ରକ୍ଷକ ଭାଷାର କମ୍ପ୍ୟୁଟରୀକରଣ ପାଇଁ ମାତ୍ରାଗୁଡିକ ଭୋମାନାଇଜ୍ କରିବା ଆଦୌ ଦରକାର ନାହିଁ। ଆମର କମ୍ପ୍ୟୁଟର ବିଶେଷଜ୍ଞମାନେ ଆମ ଭାଷାକୁ ସୁହାଇଲା ଭଳି ସଫ୍ଟୱେର ଓ କିବୋର୍ଡ ବିକଶିତ କରିସାରିଲେଣି। ମାଇକ୍ରୋସଫ୍ଟର ଜଣେ ବିଶେଷଜ୍ଞଙ୍କୁ ମୁଁ ଧାଡିଏ ମାତ୍ରା ଓଡିଆ ଦେଖାଇ ପଚାରି ଥିଲି ଏହାକୁ ଭୋମାନାଇଜ୍ କମ୍ପ୍ୟୁଟର ସିଷ୍ଟମରେ ବ୍ୟବହାର କରିବା କେମିତି। ସେ କିଛି ଉତ୍ତର ନଦେଇ ମୋତେ ପଚାରି ଥିଲେ ଆପଣଙ୍କ ଭାଷା ଏତେ କ'ଣ ହାଲୁକା ବା ଫାଲତୁ ଯେ ଆପଣ କମ୍ପ୍ୟୁଟର ପଛରେ ଗୋଡେଇଛନ୍ତି। ଓଡିଆରେ ଏପର୍ଯ୍ୟନ୍ତ ବ୍ୟାକରଣ ନାହିଁ। ଯାହା ଅଛି ସଂସ୍କୃତ ବା ଇଂରାଜୀ ଅନୁକରଣରେ ଲିଖିତ। ଏ କ୍ଷେତ୍ରରେ ସଂସ୍କୃତ, ଲାଟିନ, ଗ୍ରୀକ ଓ ଇଂରାଜୀ ଯାହା କରିଛନ୍ତି, ସେ ବିଷୟରେ ଗଭୀର ଅଧ୍ୟୟନ ନ କରି ଅନୁକରଣ କରିବାର କୌଣସି ଯଥାର୍ଥତା ନାହିଁ। ଗୋଟିଏ ଓଡିଆ ଥେସାରସ୍ ବର୍ଷକ ଭିତରେ ପ୍ରସ୍ତୁତ କରାଯାଉ। ଓଡିଆରେ ଅନେକ ଅଭିଧାନ, କିନ୍ତୁ ଇଂରାଜୀ ଅଭିଧାନ ମଡେଲରେ ଗୋଟିଏ ବ୍ୟବହାରିକ ଗାଠନିକ ଅଭିଧାନ ପ୍ରସ୍ତୁତ କରିଥିବା ବିଦ୍ୱାନଙ୍କୁ ଦାୟିତ୍ୱ ଦିଆଯାଉ। ଏଥିପାଇଁ ଦୁଇବର୍ଷ ସମୟ ଦିଆଯାଉ। ବିଶ୍ୱବିଦ୍ୟାଳୟର ଇତିହାସ ଓ ଓଡିଆ ବିଭାଗର ଯୋଗ୍ୟ ଗବେଷକ, ପ୍ରଫେସରମାନଙ୍କୁ

ଦୁଇବର୍ଷ ମଧ୍ୟରେ ଓଡ଼ିଆ ଭାଷାର ଇତିହାସ ପ୍ରଣୟନ ଦାୟିତ୍ୱ ଦିଆଯାଉ। ଭାଷାର ପ୍ରଚାର ଓ ପ୍ରସାର ନିମନ୍ତେ ଆନୁଷ୍ଠାନିକ ବ୍ୟବସ୍ଥା ଦରକାର। ପ୍ରତି ଜିଲ୍ଲା ପାଇଁ ଜଣେ ଭାଷା ପ୍ରଚାରକ ନିଯୁକ୍ତି ହୁଅନ୍ତୁ। ଏ ତିରିଶିଟି ପଦ ରହିବ ଭାଷା ପ୍ରତିଷ୍ଠାନର ପରିଚାଳନାରେ। ଓଡ଼ିଆ ଭାଷା ପ୍ରତିଷ୍ଠାନକୁ ଗୋଟିଏ ଉଚ୍ଚକୋଟୀର ସ୍ୱାୟତ୍ତ ଅନୁଷ୍ଠାନ ଭାବରେ ଗଢ଼ିବାକୁ ହେଲେ ଏହାର ଅଧ୍ୟକ୍ଷ ଓ ନିର୍ଦ୍ଦେଶକକୁ ରାଜ୍ୟମନ୍ତ୍ରୀର ପାହ୍ୟା ଦିଆଯିବ। ଭାଷା ବିକାଶ, ଭାଷା ସୁରକ୍ଷା ଓ ଭାଷା ପ୍ରସାର ଦାୟିତ୍ୱ ଏହି ଅନୁଷ୍ଠାନ ଉପରେ ନ୍ୟସ୍ତହେବ। ସେହିପରି ଓଡ଼ିଆ ବିଶ୍ୱବିଦ୍ୟାଳୟ ହେବ ମଲ୍ଟି ଡିସିପ୍ଲିନାରୀ ପ୍ରୋଜେକ୍ଟ। ଓଡ଼ିଆରେ ଜ୍ଞାନ ସୃଷ୍ଟି ହେବ ଏହାର ଏକମାତ୍ର ଲକ୍ଷ୍ୟ।

**ମଧୁସୂଦନ ପାଢୀ** (ଆଇ.ଏ.ଏସ) ସଚିବ ତଥା କମିଶନର, ଖାଦ୍ୟ ଓ ଯୋଗାଣ ବିଭାଗ: କମ୍ପ୍ୟୁଟରରେ ଓଡ଼ିଆ ପିଲା ସଫ୍ଟଓୟାର କରୁଛି, ଆକୃତି, ମଡେଲର ୟୁନିକୋଡ କି ବୋର୍ଡ ହେଉଛି। ମାତ୍ର ଆହୁରି ବହୁତ କାମ ବାକି ରହିଛି। ତେବେ ସେ ସବୁ ଆବଶ୍ୟକତା ଅନୁସାରେ ଧୀରେ ଧୀରେ କରାଯିବ।

**ସଂଘମିତ୍ରା ମହାନ୍ତି** (କୁଳପତି ଉତ୍ତର ଓଡ଼ିଶା) **:** ୨୦୦୬ ମସିହାରେ ସେ ଓଡ଼ିଆ ଭାଷାର କମ୍ପ୍ୟୁଟରୀକରଣ କାମ ଶେଷ କରିଥିଲେ। ଅଥଚ ତାହାର ପ୍ରଚାର ଓ ପ୍ରସାର ନାହିଁ। ମାଷ୍ଟର ସାଇନ୍ସ କମ୍ପୁଟର ଆଇ ଏସ କେ କୋଡ ୟୁନିକୋଡ– ସି.ଡି ମିଳୁଛି । ଶବ୍ଦ କେମିତି ସୃଷ୍ଟି ହୁଏ ଓଡ଼ିଆ ଧ୍ୱନି ଉଚ୍ଚାରଣ ସ୍ୱଚ୍ଛ ତଥା ଅନ୍ୟ ଭାଷାରେ ପ୍ରଚଳିତ ବହୁତ ଶବ୍ଦ ଓଡ଼ିଆ ଭାଷାରେ ରହିଛି, ତାମିଲରେ ବରଂ ନାହିଁ । ଓଡ଼ିଆ ଏକ ଓରିଜିନାଲ ଭାଷା, ଯାହାର ଧ୍ୱନି ସଂକେତକୁ କମ୍ପୁଟର ଖୁବ୍ ସହଜରେ ଗ୍ରହଣ କରେ। ଓଡ଼ିଆ ଭାଷା ସର୍ବ ପୁରାତନ ଓ ପ୍ରାଚୀନ ତଥା ବୈଜ୍ଞାନିକ ପଦ୍ଧତିଯୁକ୍ତ ହୋଇଥିବାରୁ ଏପରି ହୋଇପାରୁଛି ।

**ଡକ୍ଟର ସିପ୍ରା ମଲ୍ଲିକ :** ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା ଏହିଭଳି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହାତକୁ ନେଇ ଓଡ଼ିଆ ଭାଷା ପ୍ରତି ଆମମାନଙ୍କ ଦାୟିତ୍ୱ ମନେ ପକାଇ ଦେଉଛି।

**ଅପରାହ୍ଣ ଅଧିବେଶନ**

**(ମଞ୍ଚ ପରିଚାଳନା –ଉତ୍କଳ ବିଶ୍ୱବିଦ୍ୟାଳୟ ନୃତତ୍ତ୍ୱ ବିଭାଗର ପ୍ରଫେସର ଡକ୍ଟର କିଶୋର ବାସା)**

**ଡକ୍ଟର ସୁପ୍ରିୟା ମଲ୍ଲିକ** (ଡିରେକ୍ଟର, ଏସ.ସି.ଇ.ଆର.ଟି ଶିକ୍ଷା ଉପରେ ଗବେଷଣା): ଶିକ୍ଷା ବ୍ୟବସ୍ଥାରେ ଯେତେ ସଂସ୍କାର ଆଣିଲେ ମଧ୍ୟ ପିଲାମାନେ ଓଡ଼ିଆରେ ଦକ୍ଷତା ଲାଭ କରୁନାହାନ୍ତି। ଭାଷାଶିକ୍ଷକ ନିଯୁକ୍ତି ଦିଆଯାଉ ନଥିବାରୁ ଭାଷା ପଢ଼ାଇବାର ଶୈଳୀ ଠିକ୍ ରହୁନାହିଁ। ପ୍ରଥମେ ଗୀତ ଗାଇବେ ତା'ପରେ ଶବ୍ଦ ଶିଖିବେ, ତା'ପରେ ଶବ୍ଦରୁ ଓଡ଼ିଆ ଭାଷା ଶିଖିବେ। ଶିକ୍ଷକଙ୍କର ଶିକ୍ଷା ପ୍ରଦାନ ପ୍ରତି ଆନ୍ତରିକତା, ନିଷ୍ଠା ତଥା ମୂଲ୍ୟବୋଧ ରହିବା ଉଚିତ। ଓଡ଼ିଆରେ ଶିଶୁଙ୍କ ପାଇଁ ସାହିତ୍ୟ ନାହିଁ। ଚିତ୍ର ସହିତ କମିକ୍ସ ପରି ପୁସ୍ତକ ନାହିଁ।

**ଡକ୍ଟର ପ୍ରଫୁଲ୍ଲ ରଥ:** ପ୍ରଥମେ ନିଜକୁ ଓଡ଼ିଆ ମନେ କରିବା ଆବଶ୍ୟକ ଓ ନିଜ କାର୍ଯ୍ୟରେ ତାହାକୁ ପ୍ରତିଫଳିତ କରିବା ଦରକାର। ତେବେ ଯାଇ ଓଡ଼ିଆ ଭାଷାର ବିକାଶ ଘଟିବ। ତାହା ନ ହେଲେ ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କିମ୍ବା କେନ୍ଦ୍ରୀୟ କ୍ଲାସିକାଲ ଓଡ଼ିଆ ସଂସ୍ଥା ଭଳି ଯେତେ ଅନୁଷ୍ଠାନ ଗଠନ କରାଗଲେ ମଧ୍ୟ ଏହା ଭାଷା ବିକାଶ ପାଇଁ କୌଣସି କାମରେ ଆସିବ ନାହିଁ।

**ଡକ୍ଟର ବସନ୍ତ କୁମାର ପଣ୍ଡା:** ଓଡ଼ିଆ ବିଶ୍ୱବିଦ୍ୟାଳୟ ସ୍ଥାପନାକୁ ପ୍ରାଥମିକତା ଭିତ୍ତିରେ ଗୁରୁତ୍ୱ ଦିଆଯିବା ସହିତ ଏହି ବିଶ୍ୱବିଦ୍ୟାଳୟର ଆଭିମୁଖ୍ୟ ଓଡ଼ିଆ ଭାଷାଭାଷୀମାନଙ୍କୁ ସଂଯୋଗ କରିବାର ମାନସିକତା ରଖିବା ଆବଶ୍ୟକ।

**ପଦ୍ମଶ୍ରୀ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ:** ପ୍ରତି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ଶିକ୍ଷା ଓ ଗବେଷଣା ପାଇଁ ଚେୟାର ପ୍ରତିଷ୍ଠା କରାଯିବା ନିଷ୍ପତ୍ତି ଶୀଘ୍ର କାର୍ଯ୍ୟକାରୀ ହେବା ଦରକାର। ଏଥିସହିତ ଓଡ଼ିଆ ବିଶ୍ୱବିଦ୍ୟାଳୟ ସ୍ଥାପନ ଦ୍ୱାରା ଓଡ଼ିଆ ଭାଷା ଆଧାରିତ ଜ୍ଞାନର ପ୍ରଚାର ହେବ। ଅଣଓଡ଼ିଆମାନଙ୍କୁ ଓଡ଼ିଆ ପଢ଼ାଇବା ବ୍ୟବସ୍ଥା କରାଯିବା ଦରକାର। ପ୍ରଚଳିତ ଓଡ଼ିଆ ଭାଷାର ବ୍ୟାକରଣ ରଚନା ସହିତ ଓଡ଼ିଆ ଭାଷାର ସବୁଠାରୁ ପ୍ରାମାଣିକ ବସ୍ତୁ ଭାବରେ ସଂଗୃହୀତ ଅସଂଖ୍ୟ ତାଳପତ୍ର ପୋଥି ସଂରକ୍ଷଣ କରିବା ଦରକାର। ପୂର୍ବରୁ ଉତ୍କଳ ବିଶ୍ୱବିଦ୍ୟାଳୟ ଓ କେତେକ ଅନୁଷ୍ଠାନ ଏପରି କାମ କରୁଥିଲା। କିନ୍ତୁ ଏବେ ନାହିଁ । ଏଥି ସହିତ ଆଦିବାସୀଙ୍କ ଭାଷା ଉପରେ ବ୍ୟାପକ ଗବେଷଣା ଦରକାର। ଦକ୍ଷିଣପୂର୍ବ ଏସିଆ ସହ ବାଣିଜ୍ୟିକ ସମ୍ପର୍କ, ଜଗନ୍ନାଥ ଧର୍ମ ଉପରେ ଗୁରୁତ୍ୱର ସହିତ କାମ ହେବା ଦରକାର। ଅନୁବାଦ ପାଇଁ ବାରମ୍ବାର କର୍ମଶାଳା କରାଯାଉ ବୋଲି ସେ ପରାମର୍ଶ ଦେଇଥିଲେ।

**ପ୍ରଫେସର ଡକ୍ଟର ଉଦୟନାଥ ସାହୁ:** ଆଞ୍ଚଳିକ ଭାଷାର ପରିସଂଖ୍ୟାନ ହେବା ଦରକାର, ବ୍ୟାକରଣ ଲେଖାଯିବା ଦରକାର

ଓ ଓଡିଆ ଭାଷାବିଜ୍ଞାନ ପଢାଯିବା ଦରକାର। ଶିଳାଲେଖ ତାଳପତ୍ର ପଢିବା ପାଇଁ ପ୍ରଶିକ୍ଷଣ ଦରକାର। ଶାରଳା ମହାଭାରତ ଓ ବନପର୍ବ ଜାପାନୀ ଭାଷାରେ ଅନୁବାଦ ହେଇଛି। ଅନ୍ୟ ଭାଷାରେ ଅନୁବାଦ ହେବା ଦରକାର। କମ୍ପ୍ୟୁଟର ମାଧ୍ୟମରେ ଓଡିଆ ଭାଷାର ଅନ୍ୟ ଭାଷାକୁ ବା ଅନ୍ୟ ଭାଷାର ଓଡିଆ ଭାଷାକୁ ସ୍ୱତଃ ଅନୁବାଦ (ଇ.ଆଇ.ଏନ୍.ଟି.ୟୁ) ୬୭%, ଯାହା ସର୍ବଭାରତୀୟ ସ୍ତରରେ ସର୍ବାଧିକ ହୋଇଥିବାରୁ ଓଡିଆ ହେଉଛି ବିଜ୍ଞାନସମ୍ମତ ଭାଷା। ତେଣୁ ଓଡିଆ ଭାଷାର ବ୍ୟାପକ ଗବେଷଣା ପାଇଁ ଓଡିଆ ବିଶ୍ୱବିଦ୍ୟାଳୟ ସ୍ଥାପନା ନିହାତି ଜରୁରୀ।

**ଡକ୍ଟର ବିଜୟାନନ୍ଦ ସିଂ:** ପିଲାମାନଙ୍କ ସାମ୍ନାରେ ଆମ ସାହିତ୍ୟକୁ ରଖିବାକୁ ହେବ। ଏଥିପାଇଁ ଏକ ସ୍ୱତନ୍ତ୍ର ସିଲାବସ କମିଟି ତିଆରି ହେଉ। ଓଡିଆ ବିଶ୍ୱବିଦ୍ୟାଳୟ ସିଲାବସ ତିଆରି ଦାୟିତ୍ୱ ନେଉ। ସୁନିଶ୍ଚିତ ଭାବେ ଏକ ବିଶ୍ୱବିଦ୍ୟାଳୟ ଯୋଜନା କରାଯାଉ। ବିଶେଷ କରି ଓଡିଆ ମାଧ୍ୟମରେ କିପରି ଉଚ୍ଚଶିକ୍ଷା ଓ ଗବେଷଣା କାର୍ଯ୍ୟ ହୋଇପାରିବ, ସେ ବିଷୟରେ ବଳିଷ୍ଠ ପଦକ୍ଷେପ ନିଆଯାଉ।

**ପ୍ରଫେସର ମନୋରଞ୍ଜନ ଦାସ:** ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା ପକ୍ଷରୁ ଦୀର୍ଘଦିନ ଧରି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଉଦ୍ୟମ ହୋଇ ଆସୁଛି। ଏବେ ଏହି ଉଦ୍ୟମର ଆବଶ୍ୟକତା ସମସ୍ତେ ସ୍ୱୀକାର କଲେଣି। ଫଳରେ ସରକାର ଏହାର ପ୍ରତିଷ୍ଠା ପାଇଁ ନିଷ୍ପତ୍ତି ନେଇଛନ୍ତି।

**ଡକ୍ଟର ବସନ୍ତ ମଲ୍ଲିକ:** ଓଡିଆ ବିଶ୍ୱବିଦ୍ୟାଳୟରେ ପ୍ରତିଷ୍ଠା ଆମ ସମସ୍ତଙ୍କର ଆଶା। ଓଡିଆ ବିଶ୍ୱବିଦ୍ୟାଳୟରେ ପ୍ରତିଷ୍ଠା କରାଯାଉ। ଗୋଟିଏ ଘରେ ଦୁଇଟି ଭାଷା ପ୍ରଚଳିତ–ବୈଠକ ଘର ଭାଷା ଓ ରୋଷେଇ ଘର ଭାଷା। ଏହି ଦୁଇ ଭାଷାର ମିଶ୍ରିତ ରୂପ ମାତୃଭାଷା। ଗଣ ସାହିତ୍ୟ ବା ଲୋକ ସାହିତ୍ୟ ଓ ଲୋକ ସଂସ୍କୃତିକୁ ମଧ୍ୟ ଗବେଷଣା ଓ ଉଚ୍ଚଶିକ୍ଷାରେ ପ୍ରାଧାନ୍ୟ ଦିଆଯାଉ।

**ଡକ୍ଟର ସୁବାଷ ଚନ୍ଦ୍ର ରାଉତ:** ଓଡିଆ ବିଶ୍ୱବିଦ୍ୟାଳୟରେ ମେଡିକାଲ ପାଠ ରହିବ କି ନାହିଁ, ସେ ପ୍ରଶ୍ନ ଉଠାଇବା ପୂର୍ବରୁ ଓଡିଆରେ ସ୍ୱାସ୍ଥ୍ୟ ସମ୍ପର୍କିତ ବହି କେତେ ଅଛି ତାହା ଆକଳନ କରିବା ଆବଶ୍ୟକ।

**ପ୍ରଫେସର ଡକ୍ଟର ଅଦ୍ୱୈତ ପାତ୍ର:** ମରଣୋମୁଖୀ ଓଡିଆ ଭାଷା ପାଇଁ ଉଭୟ ସଂସ୍ଥା ପ୍ରତିଷ୍ଠା କରାଯାଉ। ସଂସ୍କୃତି ବିଶ୍ୱବିଦ୍ୟାଳୟ, ସାହିତ୍ୟ ଏକାଡେମୀ, ଭାଷା ପ୍ରତିଷ୍ଠାନ ସମସ୍ତେ ଥାନ୍ତୁ। ତଥାପି ଓଡିଆ ବିଶ୍ୱବିଦ୍ୟାଳୟ, ରାଷ୍ଟ୍ରୀୟ ଓଡିଆ ଭାଷା ସଂସ୍ଥା ପ୍ରତିଷ୍ଠା ହେଉ। ଆମର ବହୁ ଅନୁବାଦକ ଦରକାର, ଏଥିପାଇଁ କର୍ମଶାଳା କରାଯାଉ।

**ଡକ୍ଟର ରାଧାନାଥ ପ୍ରହରାଜ** (ସଭାପତି ଉତ୍କଳ ସମ୍ମିଳନୀ): ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଉ, ଆମେ ଏହାର ପ୍ରଚାରକ ହେବୁ।

**ସୂର୍ଯ୍ୟ ନାରାୟଣ ରଥ:** ନବୋଦୟ ବିଦ୍ୟାଳୟ, ଲକ୍ଷ୍ନୌ–ହିନ୍ଦୀ ଭାଷୀ ଅଞ୍ଚଳ କେଦାରନାଥ, ବନାରସ, ଲକ୍ଷ୍ମୀପୁରରେ ଓଡିଆ ପଢା ଯାଉଛି। ଏଥିପାଇଁ ଡିଫାଇନ୍ ସିଲାବସ ନାହିଁ। ଓଡିଆ ବିଶ୍ୱବିଦ୍ୟାଳୟ ଏହି କାମ କରୁ। ପ୍ରତି ଶିକ୍ଷା ଅନୁଷ୍ଠାନରେ ଓଡିଆ ଭାଷାରେ ଆଲୋଚନା ଆଦି ହୁଅନ୍ତା। ଡିସକଭରି ଚ୍ୟାନେଲ, ଆନିମଲସ୍ ପ୍ଲାନେଟ୍ ତଥା ବିଭିନ୍ନ କମିକ୍ସ ସିରିଅଲ ଓଡିଆ ଭାଷା ହେଲେ ଭଲ ହୁଅନ୍ତା। ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲେ ଓଡିଆ ଭାଷା ପ୍ରତିଷ୍ଠା ହେବ।

**ଡକ୍ଟର ଇନ୍ଦୁଭୂଷଣ କର:** ନୂଆ ଟେକ୍ନୋଲୋଜିରେ ଓଡିଆ ପଢାଇ ପାରିଲେ ସବୁ ହେବ। ଲୋକମାନଙ୍କର ଆସ୍ଥା ସୃଷ୍ଟି କରିବାକୁ ହେବ। ଡାଏରୀ ରୋଡମ୍ୟାପ ହେବା ଦରକାର ଲକ୍ଷ୍ୟସ୍ଥଳରେ ପହଞ୍ଚିବାକୁ।

**ଡକ୍ଟର ଚିତ୍ତରଞ୍ଜନ ବେହେରା :** ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସହ ଓଡିଆ ଆତ୍ମପରିଚିତି ଉପରେ ପ୍ରଥମ କରି ଗବେଷଣା କାର୍ଯ୍ୟ କରିଥିବା ତଥା ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଆନ୍ଦୋଳନ ସହ ପ୍ରଥମରୁ ଜଡିତ ଥିବା ଡକ୍ଟର ଶୁଭକାନ୍ତ ବେହେରା ନାମରେ ଅନ୍ତତଃ କୌଣସି ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରେ ଏକ ଚେୟାର ପ୍ରତିଷ୍ଠା କରାଯାଉ।

**ନଟବର ଖୁଣ୍ଟିଆ :** କୃଷି ବିଜ୍ଞାନ ବହି ଓଡିଆରେ ନାହିଁ । ବିଜ୍ଞାନ ବହି ପ୍ରଥମେ ଓଡିଆରେ ଅନୁବାଦ ହୋଇ ଓଡିଶା ଭଳି କୃଷି ପ୍ରଧାନ ରାଜ୍ୟରେ ଚାଷୀଙ୍କ ଭାଷାରେ କୃଷି ବିଜ୍ଞାନ ବହି ଲେଖାଯାଉ। ଓଡିଆ ବିଶ୍ୱବିଦ୍ୟାଳୟ ପ୍ରାଥମିକ ସ୍ତରରେ ଏହା କରୁ।

**ଡକ୍ଟର ହୁସେନ ରବିଗାନ୍ଧୀ :** ଓଡିଆରେ ୧୦୦ରୁ ୦ ରଖିବା ୧୯୮୯ ରେ ପ୍ରଥମେ ଜଣାଗଲା। ଭାଷା ଶିକ୍ଷା ଦେବାକୁ

ପ୍ରଶିକ୍ଷଣ ନେବା ଦରକାର । ଲେଖିବା, ପଢିବା ଓ କହିବା ଦ୍ୱାରା ଭାଷାର କେବଳ ବିକାଶ ହେବ ନାହିଁ । ଏହାକୁ ଅର୍ଥ ରୋଜଗାରର ମାଧ୍ୟମ କରିବା ଦରକାର ।

**ପ୍ରଫେସର ଡକ୍ଟର କିଶୋର ବାସା:** ଓଡିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେବା ଆବଶ୍ୟକ ବୋଲି ପ୍ରାୟ ସମସ୍ତ ବକ୍ତା ନିଜ ବକ୍ତବ୍ୟ ମାଧ୍ୟମରେ ଯୁକ୍ତି ଉପସ୍ଥାପନ କରି ସାରିଛନ୍ତି । ଏଥିପାଇଁ ଏପର୍ଯ୍ୟନ୍ତ ବିଭିନ୍ନ ବର୍ଗର ପ୍ରାୟ ୩୫ଜଣ ବିଦ୍ୱାନ ନିଜର ମତାମତ ଦେଇସାରିଛନ୍ତି । ମାତ୍ର ଏହି ୨ଟି ସଂସ୍ଥା ଓଡିଆ ଜାତିପାଇଁ ନିର୍ମାଣ ହେଉଥିବାରୁ ଏ ବିଷୟରେ ଆହୁରି ମତ ସଂଗ୍ରହ କରାଯିବାର ଆବଶ୍ୟକ ରହିଛି । ଜାତୀୟ ଅଭିଲେଖାଗାର ଏବଂ ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାଦ୍ୱାରା ଆୟୋଜିତ ଏହି ଆଲୋଚନାଚକ୍ରର ନିର୍ଯ୍ୟାସକୁ ଆମେ ଅନ୍ତିମ ତଥା ସର୍ବୋତ୍କୃଷ୍ଟ ବୋଲି କାହା ଉପରେ ଲଦିଦେବା ଅନୁଚିତ । ତେଣୁ ସବୁ ଓଡିଆଙ୍କୁ ଆଜିର ଏହି ବୈଠକୀ ରିପୋର୍ଟ ପ୍ରଦାନ ପୂର୍ବକ ସେମାନଙ୍କ ଲିଖିତ ମତାମତ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ପ୍ରଦାନ କରିବାକୁ ଅନୁରୋଧ କରାଯିବ । ସେମାନଙ୍କ ମତକୁ ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାଦ୍ୱାରା ଗଠିତ କମିଟି ଅନୁଧ୍ୟାନ କରିବା ପରେ ଆଉ ଏକ ଆଲୋଚନାଚକ୍ର ଆୟୋଜନ କରିବ । ଏହି ଆଲୋଚନାଚକ୍ରର ନିର୍ଯ୍ୟାସକୁ ରାଜ୍ୟ ସରକାରଙ୍କୁ ଓଡିଶାବାସୀଙ୍କ ଦାବି ଭାବରେ ପ୍ରଦାନ କରାଯିବ ।

**ଧନ୍ୟବାଦ ଅର୍ପଣ :**

**ପ୍ରଫେସର ବ୍ରଜେନ୍ଦ୍ର ପ୍ରସାଦ ଦାସ** (ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥାର ନିର୍ଦ୍ଦେଶକ): କାର୍ଯ୍ୟକ୍ରମରେ ଓଡିଶାର ବିଭିନ୍ନ ବିଶ୍ୱବିଦ୍ୟାଳୟର କୁଳପତି, ବିଶିଷ୍ଟ ସାହିତ୍ୟିକଗଣ ଏବଂ ବିଭିନ୍ନ ବିଭାଗର ବିଦ୍ୱାନମାନେ ଯୋଗଦେଇ ଏହାକୁ ସଫଳ କରିବା ସହିତ ସୁଚିନ୍ତିତ ମତାମତ ପ୍ରଦାନ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ପ୍ରଦାନ କରିଥିଲେ । ଏହା ହେଉଛି ଶାସ୍ତ୍ରୀୟ ମାନ୍ୟତା ପରବର୍ତ୍ତୀ କାର୍ଯ୍ୟକ୍ରମର ଚତୁର୍ଥ ଜାତୀୟ ଆଲୋଚନାଚକ୍ର । ଖୁବ୍‌ଶୀଘ୍ର ଆଉ ଏକ ଆଲୋଚନାଚକ୍ର ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା ଆୟୋଜନ କରିବ । ଓଡିଆ ଭାଷାକୁ ଜ୍ଞାନର ଭାଷା ଭାବରେ ପ୍ରତିଷ୍ଠା କରିବା ପର୍ଯ୍ୟନ୍ତ ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା ନିଜର ଏହିପରି ବହୁମୁଖୀ କାର୍ଯ୍ୟ କରି ଚାଲିଥିବ ।

ସଦସ୍ୟ ସଚିବ
ଓଡିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା
ଏନ୍– ୪/୧୭, ନୂଆପଲ୍ଲୀ, ଭୁବନେଶ୍ୱର

❖ ❖ ❖

# ଅନନ୍ୟ ଗୋପବନ୍ଧୁ

ନିର୍ମଳା କୁମାରୀ ମହାପାତ୍ର

ଗତ ୨୦୧୪, ମାର୍ଚ୍ଚ ମାସରେ ଝାଡଖଣ୍ଡ ରାଜ୍ୟର ପଶ୍ଚିମ ସିଂହଭୂମ ଜିଲ୍ଲାର ଚକ୍ରଧରପୁରଠାରେ ଏକ କବି ସମ୍ମିଳନୀରେ ଜନୈକ ଯୁବକବି ଉତ୍କଳମଣି ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ମର୍ମସ୍ପର୍ଶୀ ଏକ ଗୀତିକବିତା ଗାନ କଲେ ।

ଗୋପବନ୍ଧୁ ପରି ସାଆନ୍ତ ନାହିଁ ନାହିଁ ତ<br>
ବଢ଼ି ମରୁଡ଼ିରେ ଚୁଡା ବାଣ୍ଟୁଥିଲେ<br>
ତାଙ୍କ ପରି ନେତା କାହିଁତ ... ନାହିଁ ତ.... ଇତ୍ୟାଦି

ସତରେ ଅନନ୍ୟ ଗୋପବନ୍ଧୁଙ୍କର ସାହାଯ୍ୟ ଓ ସହାନୁଭୂତି ! ଅନନ୍ୟ ସେ ବ୍ୟକ୍ତିତ୍ୱ ! କବି ସମ୍ମିଳନୀର ପରବର୍ତ୍ତୀ କାର୍ଯ୍ୟ ଥିଲା ଚକ୍ରଧରପୁରରେ ଗୋପବନ୍ଧୁଙ୍କ ଦ୍ୱାରା ପ୍ରତିଷ୍ଠିତ କେତେକ ଓଡିଆ ବିଦ୍ୟାଳୟ ପରିଦର୍ଶନ । ସେଦିନ ରବିବାର ଥିବା ସତ୍ତ୍ୱେ କେତେକ ବିଦ୍ୟାଳୟ ଓଡିଶାର କବିଙ୍କ ପାଇଁ କିଛି ସମୟ ଖୋଲାଯାଇଥିଲା । ସେ ମୁଲକ ତ ହେଲା ଓଡିଆ ଭାଷାଭାଷୀ ଅଂଚଳ । ଇତିହାସ ପୃଷ୍ଠାରୁ ଜଣାଯାଏ ୧୯୧୨ ମସିହାରୁ ବିହାର-ଓଡିଶାର ରାଜଧାନୀ ଥିଲା ପାଟଣା । ସନ ୧୯୧୨ ବେଳକୁ ସିଂହଭୂମ ଜିଲ୍ଲାରେ ବହୁ ଓଡିଆ ସ୍କୁଲ ଖୋଲି ଯାଇଥିଲା । କୋଣାର୍କ ପତ୍ରିକା, ୧୫୩ତମ ସଂଖ୍ୟା (ମଇ-ଜୁନ୍-ଜୁଲାଇ-୨୦୦୯), ପୃଷ୍ଠା ୧୨୮ରୁ ସ୍ପଷ୍ଟ ଯେ ୧୯୧୯ ବେଳକୁ ସିଂହଭୂମ ଅଂଚଳରେ ୧୩୯ଟି ଓଡିଆ ସ୍କୁଲ ଥିଲା । ଇତି ମଧ୍ୟରେ ପାଖାପାଖି ୯୫ ବର୍ଷର ବ୍ୟବଧାନ । ମଧ୍ୟ ଓଡିଆ ବିଦ୍ୟାଳୟଗୁଡିକ ହାଇସ୍କୁଲରେ ପରିଣତ ହେଲାଣି । ଗୋପବନ୍ଧୁ ଦାସଙ୍କ ଦେହାନ୍ତ ହେଲାଣି । ଏବେ ମଧ୍ୟ ଲୋକେ ସେଠାରେ ଉତ୍କଳମଣିଙ୍କୁ ଝୁରି ହେଉଛନ୍ତି । ତାଙ୍କୁ ସ୍ୱଦେହରେ ଦେଖିଥିବା, ତାଙ୍କ ମହାନ୍ ମାନବିକତାର ପରିଚୟ ଲଭିଥିବା ଡକ୍ଟର ମାୟାଧର ମାନସିଂହ ଲେଖିଛନ୍ତି -

ପ୍ରାଣ ରୂପେ ରୂପବାନ ଜଣେ ମହାଜନେ<br>
ସମ୍ମୁଖେ ଦେଖ ଗୋ ଏଇ, ପ୍ରଣମେ ଚରଣେ<br>
ପୁଣ୍ୟ-ପ୍ରାଣ ଗୋପବନ୍ଧୁ ଉତ୍କଳ ଦେଶର<br>
ମୁକୁଟବିହୀନ ରାଜା, ଦୀନ ଦରିଦ୍ରର<br>
ପ୍ରକୃତ ପରମବନ୍ଧୁ, ଦୀନ ଦୁଃଖୀ ପାଇଁ<br>
ନୟନୁ ହୃଦୟ-ଦ୍ରାବି ଲୋତକ ବୁହାଇ<br>
କିଏ ଆଉ ତାଙ୍କ ପାଶେ ଦୁଃଖ ଦୁର୍ଦ୍ଦିନରେ<br>
ଅନ୍ନଧରି ହେବ ଠିଆ, କୋମଳ ବାକ୍ୟରେ<br>
ଭୁଂଜାଇବ ବୁଭୁକ୍ଷରେ ? ଏ ଦେଶ ଜାତିରେ<br>
ପ୍ରାଣପୂର୍ଣ୍ଣ ସ୍ନେହ ଦେଇ ନୟନର ନୀରେ...... ।

ଡକ୍ଟର ମାନସିଂହ ମଧ୍ୟ 'ବନ୍ୟା' କଥାରେ ଉତ୍କଳମଣିଙ୍କୁ ସ୍ମରଣ କରିଛନ୍ତି । ସେ 'ବନ୍ୟା ଓ ଗୋପବନ୍ଧୁ' କବିତାରେ ବ୍ୟକ୍ତ କରିଛନ୍ତି ନିଜର ଭାବ ନିମ୍ନମତେ :

ପୁଣି ଭାସେ ବନ୍ୟାଜଳେ ପ୍ରିୟ ସେ ଉତ୍କଳ,<br>
ଦେଶର ପୁରୁଷକାର ପୁଣି ନିଃସହାୟ,<br>
ସ୍ୱର୍ଣ୍ଣଭୂଷା ପୁରବାଳା ତେଜି ନେତ୍ରଜଳ,<br>
ପଥେ ମାଗେ ଅନ୍ନ, ଦେଇ ସରମେ ବିଦାୟ

X X X

ଜନ-ଦୁଃଖେ ବ୍ୟଥୀ କିନ୍ତୁ କହ କେଉଁ ଜନ<br>
କରୁଣ, କଲ୍ୟାଣ ଅଶ୍ରୁ ନୟନୁ ବରଜେ ?<br>
ଜନଦୁଃଖେ କ୍ଷୁବ୍ଧ କବି ତେଜି ଅଶ୍ରୁଧାର<br>
ଗୋପବନ୍ଧୁ, ତୁମକୁ ହିଁ ସ୍ମରେ ବାରମ୍ବାର ।

ଉତ୍କଳମଣି ଗୋପବନ୍ଧୁ ଦାସ (୧୮୭୭-୧୯୨୮) ଥିଲେ ଜାତୀୟ ଚେତନାର ଉଦ୍‌ଗାତା । ଦରଦୀ ମଣିଷର ବନ୍ଧୁ । ବୌଦ୍ଧିକତା ତଥା ଆଧ୍ୟାତ୍ମିକତା ଭିତରେ ଲୋକଙ୍କୁ ଭଲ ପାଇବା

ଥିଲା ତାଙ୍କର ବିଶେଷତ୍ୱ । ଓଡିଆ ଲୋକଙ୍କ ସ୍ୱାର୍ଥ ଓ ସ୍ୱାଭିମାନ ରକ୍ଷା କରିବାରେ ତାଙ୍କର ଅବଦାନ ଥିଲା ଅନସ୍ୱୀକାର୍ଯ୍ୟ । ତାଙ୍କ ପରି ନିର୍ମଳ, ନିଷ୍କପଟ, ତ୍ୟାଗୀ, ପରୋପକାରୀ, ସମାଜସେବୀ ତଥା ଶିକ୍ଷାବିତ୍ ସତରେ ବିରଳ । ଓଡିଆ ଜାତିକୁ ଆଗକୁ ନେବା ପାଇଁ ସେ ଅହରହ ସଂଗ୍ରାମରତ ଥିଲେ । ଏ ଜାତିର ବିକାଶ ଚିନ୍ତା ଥିଲା ତାଙ୍କ ରାଜନୀତିର ମୂଳପିଣ୍ଡ । ପ୍ରାଦେଶିକ ସହ ଜାତୀୟ ସ୍ତରର ବିକାଶ ବିଧାନରେ ସମତା–ସମନ୍ୱୟ ରକ୍ଷା କରି ସେ ରାଜନୀତିର ଦିଗ୍‌ବଳୟକୁ ବିସ୍ତାରିତ କରିବାରେ ପ୍ରଥମ ଉଦ୍ଦେଶ୍ୟ ରଖିଥିଲେ ଓଡିଶାର କଲ୍ୟାଣ, ଓଡିଶାର ସମୁନ୍ନତି ।

ଗୋପବନ୍ଧୁଙ୍କ ଉଦ୍ୟମରେ ସାକ୍ଷୀଗୋପାଳର ବକୁଳ ଛୁରିଅନା କୁଞ୍ଜରେ ଗଢ଼ି ଉଠିଥିଲା ସତ୍ୟବାଦୀ ବନ ବିଦ୍ୟାଳୟ (୧୯୦୯) । ସନ ୧୯୧୫ ମସିହାରେ ଏଇ ବିଦ୍ୟାଳୟ ତରଫରୁ ପ୍ରକାଶିତ ହେଲା ସତ୍ୟବାଦୀ ପତ୍ରିକା । ଏହା ପରେ ସନ ୧୯୧୯, ଅକ୍ଟୋବର ୪ ତାରିଖରେ ତାଙ୍କ ଉଦ୍ୟମରେ ପ୍ରକାଶ ପାଇଲା 'ସମାଜ' ସାପ୍ତାହିକୀ ଭାବରେ, ପରେ ଏହା ଦୈନିକ ପ୍ରକାଶ ପାଇଲା । ସନ ୧୯୧୯ ବେଳକୁ ପୁରୀ ଜିଲ୍ଲାରେ ବନ୍ୟା–ଦୁର୍ବିପାକଜନିତ ଅନ୍ନକଷ୍ଟର ସୀମା ନଥାଏ । ବନ୍ୟା–ଦୁର୍ଭିକ୍ଷ ପ୍ରପୀଡିତ ଡଭାର ଅଂଚଳରେ ସେ ପ୍ରଥମେ ରିଲିଫ୍ କାର୍ଯ୍ୟ ଆରମ୍ଭ କରିଥିଲେ ।

ସନ ୧୯୧୭–୨୧ ଯାଏ ଗୋପବନ୍ଧୁ ଦାସ ବିହାର–ଓଡିଆ କାଉନ୍‌ସିଲରେ ସଦସ୍ୟ ଭାବେ କାର୍ଯ୍ୟ କରିଥିଲେ । ସେଥିରୁ ସେ ଯାହା ଅର୍ଜନ କରିଥିଲେ, ତା'ର ସିଂହଭାଗ ବନ୍ୟାବିପନ୍ନ ଲୋକଙ୍କ ସାହାଯ୍ୟାର୍ଥେ ବିନିଯୋଗ କରିଥିଲେ । ପ୍ରମାଣଯୋଗ୍ୟ ସୂତ୍ରରୁ ପ୍ରକାଶ ଯେ ସେତେବେଳେ କୁଶଭଦ୍ରା ନଦୀରେ ବନ୍ୟା । ତ୍ରାଣକାର୍ଯ୍ୟ ଜାରି ରଖିବାକୁ ହେବ । ଗୋପବନ୍ଧୁ କଟକ ଯାଇ ମଧୁବାବୁଙ୍କ ସହ ଆଲୋଚନା କଲେ । ମଧୁବାବୁ କଟକର ଜଣେ ମାରଓ୍ୱାଡି ବ୍ୟବସାୟୀଙ୍କୁ ଚିଠି ଲେଖିଲେ ନିମ୍ନମତେ–

'ଗୋପବନ୍ଧୁ ଯାଉଛନ୍ତି । ଆବଶ୍ୟକ ପରିମାଣର ରିଲିଫ୍ ସାମଗ୍ରୀ ଯୋଗାଇ ହେବ, ନଚେତ୍ ଆଜି ରାତିରେ ଓଡିଶା ଛାଡି ଚାଲିଯିବ ।' ଚିଠି ଖଣ୍ଡିକ ମହୌଷଧି ପରି କାମ ଦେଲା । ଗୋପବନ୍ଧୁ ଅନେକ ଯୁବ ସ୍ୱେଚ୍ଛାସେବୀଙ୍କ ସହାୟତାରେ ରିଲିଫ୍ ବଣ୍ଟନ କରିଥିଲେ । ଡଭାର ଦୁର୍ଭିକ୍ଷରେ ଗୋପବନ୍ଧୁଙ୍କ ତଣ୍ଡୁଳ ବଣ୍ଟନ କାର୍ଯ୍ୟ ସଂପର୍କରେ କବି ମାୟାଧର ମାନସିଂହ ତାଙ୍କର ମହାକାବ୍ୟ 'କମଳାୟନ'ରେ ସବିଶେଷ ବର୍ଣ୍ଣନା ରଖିଛନ୍ତି । ପ୍ରକାଶ ଥାଉକି ଏବେ ଡଭାର ଅଂଚଳ ନିମାପଡା ଶିକ୍ଷାଜିଲ୍ଲା ଅନ୍ତର୍ଗତ ଗୋପ ବ୍ଲକ୍‌ରେ । ଆଗେ ଏହା ଥିଲା ସତ୍ୟବାଦୀ ବ୍ଲକ୍ ତଥା ପୁରୀ ସଦର ଅନ୍ତର୍ଗତ ।

ଡଭାର ଗ୍ରାମର ବାସିନ୍ଦା, ଏବେ ଦୈନିକ ଖବରକାଗଜ 'ଲୋକକଥା'ର ସଂପାଦକ ତଥା ବରିଷ୍ଠ ସାମ୍ବାଦିକ ଶ୍ରୀ ଗିରିଧାରୀ ପଟ୍ଟନାୟକ କହନ୍ତି – 'ଏଇଠି ଥିଲା ଭାଗବତ ଗାଦିଘର ଗାଁ ମଝିରେ । ପାଖରେ ଥିଲା ଚାଟଶାଳୀ ପଣ୍ଡିତ କପିଳ ପଟ୍ଟନାୟକ ଆଉ ବୀରବର ପଟ୍ଟନାୟକଙ୍କର ଘର । ରିଲିଫ୍ ସାମଗ୍ରୀ ଏଇଠି ରଖାଯାଇ ବଣ୍ଟନ କରାଯାଉଥିଲା । ଆଗେ ସବୁ ଥିଲା ଚାଳଘର । ଦାସ ଆପଣେ (ଗୋପବନ୍ଧୁ ଦାସ) ନିଜେ ଏଇଠି ରହି ରିଲିଫ୍ ବଣ୍ଟନ କାର୍ଯ୍ୟ ତଦାରଖ କରୁଥିଲେ । ଏଇଟା ତାଙ୍କର ପ୍ରଥମ ଦେଶସେବାର ରେକର୍ଡଭୁକ୍ତ କର୍ମଭୂମି । ଏ କଥା ମୁଁ ମୋ ଗୁରୁଜନଙ୍କଠାରୁ ଶୁଣିଛି । ସେଥିଲାଗି ତାଙ୍କ ପ୍ରତିମୂର୍ତ୍ତି ମହାଦେବଙ୍କ ମନ୍ଦିର ସନ୍ନିକଟ ସ୍କୁଲ ସାମନାରେ ଅଛି । ଡଭାର ଗାଁର ମଧ୍ୟଇଂରାଜୀ ବିଦ୍ୟାଳୟ ଗୋପବନ୍ଧୁଙ୍କ ନାମ ବହନ କରେ । ଏଇ ପାଖ ଗାଁ ଓଲଣ୍ଡିରେ ଅଛି ଉତ୍କଳମଣି ଗୋପବନ୍ଧୁ ହାଇସ୍କୁଲ । ଆର ଗାଁରେ ଥିଲା ଆଖଡାଘର । ଗ୍ରାମ୍ୟ ମଲ୍ଲ ବ୍ୟାୟାମ ଶିକ୍ଷା ଦେଉଥିଲେ । ଗୋପବନ୍ଧୁ ଦାସ ତାକୁ ଭାରି ତାରିଫ୍ କରୁଥିଲେ । ଏଇ ଡଭାର ଗାଁର ପୂର୍ବରେ ମୁଗେଇ ନଈ କୁଶଭଦ୍ରାର ଶାଖା ଦକ୍ଷିଣରେ ଧନୁଆ ନଈ । ତେଣୁ ସବୁବର୍ଷ ବନ୍ୟା ବିପ୍ଳାଉ ।'

ବିଧାୟକ ଗୋପବନ୍ଧୁ ପାଟନାର ଲାଟସଭାରେ ୧୯୧୯ ମସିହାର ଦୁର୍ଭିକ୍ଷ କଥା କହୁଥିବା ବେଳେ ନିଜେ କାନ୍ଦୁଥିଲେ । ସଭାର ଅନ୍ୟ ସଦସ୍ୟଗଣ ମଧ୍ୟ ଲୋକାପ୍ଲୁତ ହୋଇଥିଲେ । ଲାଟସାହେବ ଏଥିରେ ବ୍ୟଥିତ ହୋଇ ସ୍ୱୟଂ ଦୁର୍ଭିକ୍ଷାଞ୍ଚଳ ପରିଦର୍ଶନରେ ଆସି ଥିଲେ । ବୁଝିବାକୁ ହେବ ଯେ ଗୋପବନ୍ଧୁଙ୍କର ଗଭୀର ଅଧ୍ୟୟନ, ଆଇନ ଶାସ୍ତ୍ରରେ ପ୍ରବୀଣତା, ସାଧାରଣ ଲୋକଙ୍କ ପ୍ରତି ସମ୍ବେଦନଶୀଳତା ଓ କାର୍ଯ୍ୟକ୍ଷେତ୍ରରେ ଆଶୁ କାର୍ଯ୍ୟାନୁଷ୍ଠାନ ଯୋଗୁଁ ସେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ । ସେ କିଛିକାଳ ପାଟନା ବିଶ୍ୱବିଦ୍ୟାଳୟର ସିନେଟ୍ ଓ ସିଣ୍ଡିକେଟ୍‌ର ସଭ୍ୟ ମଧ୍ୟ ଥିଲେ । ତାଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ବନବିଦ୍ୟାଳୟ (୧୯୦୯)ର ସୁଖ୍ୟାତିରେ ଆକର୍ଷିତ ହୋଇ ଆସିଥିଲେ ସାର୍ ଆଶୁତୋଷ ମୁଖାର୍ଜୀ, ଠକ୍କର ବାପା ଆଦି ଜାତୀୟ ସ୍ତରର ନେତୃବୃନ୍ଦ ।

ଗୋପବନ୍ଧୁ ଥିଲେ ଉଚ୍ଚକୋଟୀର ବକ୍ତା । ତାଙ୍କର ଭାଷଣକୁ ବିଲାତର ପ୍ରଧାନମନ୍ତ୍ରୀ ବାଲ୍‌ଫୋର୍‌ଙ୍କ ଅଭିଭାଷଣ ସହ ତୁଳନା କରିଥିଲେ ସ୍କଟ ସାହେବ । ଓଡିଶା ଗଡଜାତ ରାଜ୍ୟ ସମୂହର

ପଲିଟିକାଲ ଏଜେଣ୍ଟ ଥିଲେ ମିଷ୍ଟର ସ୍କଟ । ପରବର୍ତ୍ତୀ କାଳରେ ୧୯୧୯ ବେଳକୁ ସେଇ ସ୍କଟ ସାହେବ ସିଂହଭୂମ୍ ଜିଲ୍ଲା ଡେପୁଟୀ କମିଶନର ପଦବୀରେ ରହି ଗୋପବନ୍ଧୁଙ୍କ ଲୋକହିତକର କାର୍ଯ୍ୟ ତଥା ଓଡିଆ ସ୍କୁଲ ପ୍ରତିଷ୍ଠା କାର୍ଯ୍ୟରେ ସହାୟକ ହୋଇଥିଲେ । ସେ ଥିଲେ ଗୋପବନ୍ଧୁଙ୍କର ଉଚ୍ଚ ପ୍ରଶଂସକ ।

ସେକାଳରେ ଗୋପବନ୍ଧୁଙ୍କର ଲାଟସଭାରେ ଥିଲା ଦୁଇଟି ମୁଖ୍ୟ ଦାବୀ । ପ୍ରଥମିଟି ହେଲା: ବନ୍ୟା-ଦୁର୍ଭିକ୍ଷ ପ୍ରପୀଡିତଙ୍କୁ ପର୍ଯ୍ୟାପ୍ତ ପରିମାଣରେ ସାହାଯ୍ୟ ଯୋଗାଇଦେବା ପାଇଁ ଅଧିକ ଅର୍ଥ ମଂଜୁର କରିବା, ଦ୍ୱିତୀୟଟି ହେଲା– ଲବଣ ଆଇନ ସଂପର୍କରେ ଉପକୂଳବର୍ତ୍ତୀ ଅଂଚଳର ଲୋକେ ବ୍ୟକ୍ତିଗତ ବ୍ୟବହାର ପାଇଁ କରମୁକ୍ତ ଲୁଣ ପ୍ରସ୍ତୁତିର ଅନୁମତି ପାଆନ୍ତୁ ବୋଲି ସେ ଦାବି କରିଥିଲେ । ସରକାର ପ୍ରଥମେ ଲୋକମାନଙ୍କର ଲୁଣପୋକ୍ତାନି କରିବା କଥା ସହାନୁଭୂତିର ସହ ବିଚାର କରିବାର ପ୍ରତିଶ୍ରୁତି ଦେଇ ପରେ କଥାଟିକୁ ଏଡାଇ ଦେଇଥିଲେ । ପ୍ରକାଶ ଥାଉକି ପରେ ୧୯୩୦ ମସିହାରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଲବଣ ସତ୍ୟାଗ୍ରହ କରାଯାଇଥିଲା । ଠିକ୍ ସେଇଥିପାଇଁ, ଯେଉଁ ପ୍ରଶ୍ନ ୧୯୧୯ରେ ଗୋପବନ୍ଧୁ ପାଟନା ଲାଟସଭାରେ ଉଠାଇଥିଲେ ।

ପତ୍ରକାର ଗୋପବନ୍ଧୁ ଓ ପ୍ରାବନ୍ଧିକ ଗୋପବନ୍ଧୁଙ୍କର ତୁଳନା ନାହିଁ । ସତ୍ୟବାଦୀ ପତ୍ରିକା (୧୯୧୫)ର ପ୍ରଥମ ସଂଖ୍ୟାରେ ସଂପାଦକୀୟ ସ୍ତମ୍ଭରେ ସେ ଲେଖିଛନ୍ତି ନିମ୍ନମତେ–

'ସତ୍ୟର ଲାଭ ସତ୍ୟ ପଥରେ । ଏହି ଉଚ୍ଚ ଆଦର୍ଶ ଆମ୍ଭମାନଙ୍କ ପୈତୃକ ସଂପତ୍ତି । ତେଣୁ ଆମ୍ଭମାନଙ୍କ ଭାଷା, ଭାବ, କ୍ରିୟା ସମସ୍ତ ସତ୍ୟର ପନ୍ଥା ଅନୁସରଣ କରିବା ଉଚିତ ଏବଂ ସେଥିନିମନ୍ତେ ଆମ୍ଭମାନଙ୍କର ସବୁ ପ୍ରକାର ତ୍ୟାଗ ସ୍ୱୀକାର କରିବାକୁ ପ୍ରସ୍ତୁତ ହେବା କର୍ତ୍ତବ୍ୟ । ଜନ୍ମଭୂମିର ଉନ୍ନତିରେ ଯଥାସମ୍ଭବ ଆତ୍ମନିୟୋଗ କରି ପାରିଲେ ଆମ୍ଭେମାନେ ବିଶ୍ୱସେବା କଲୁ ବୋଲି ମନେକରି ଆଶ୍ୱସ୍ତ ହେବୁ । ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେଁ, ବରଂ ବିଶ୍ୱପ୍ରୀତିବିହୀନ ପ୍ରାଣରେ ଜାତୀୟତା ଓ ସ୍ୱଦେଶପ୍ରୀତି ଅସମ୍ଭବ । ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପୀ ଗରୀୟସୀ – ଏହି ଦେଶାନୁରାଗ ଗୀତରେ ପ୍ରାଣର ପ୍ରଗାଢ଼ ମମତା ପ୍ରକାଶ ପାଇଅଛି ।'

ଗୋପବନ୍ଧୁଙ୍କ କବି ପରିଚୟ ମିଳେ ତାଙ୍କର 'ଅବକାଶ ଚିନ୍ତା', 'ଗୋମହାତ୍ମ୍ୟ', 'କାରାକବିତା', 'ବନ୍ଦୀର ଆତ୍ମକଥା', 'ଧର୍ମପଦ' ଓ 'ନଚିକେତା' ପୁସ୍ତକରୁ । ସରଳ ଜୀବନ, ନିରଳସ କର୍ମପ୍ରବଣତା, ସତ୍ୟ ପ୍ରତି ନିଷ୍ଠା, ଗୋଧନାଦି ପ୍ରତି ପ୍ରୀତି, ବିଶ୍ୱଜନୀନ ଭାବଧାରାର ପରିପ୍ରକାଶ ଘଟିଛି ତାଙ୍କର କବିତା ସଂକଳନଗୁଡିକରେ । ସନ ୧୮୯୯ରେ 'ଅବକାଶ ଚିନ୍ତା' (କବିତା ସଂକଳନ) ପ୍ରକାଶିତ ହୋଇଥିଲା । ଏହାର ଦ୍ୱିତୀୟ ସଂସ୍କରଣର ପ୍ରକାଶନ ହୁଏ ୧୯୪୨ ମସିହାରେ, ଗୋପବନ୍ଧୁଙ୍କ ଦେହାନ୍ତ (୧୯୨୮)ର ପ୍ରାୟ ୧୪ ବର୍ଷ ପରେ । କବିଙ୍କର ଦୟା, ପ୍ରୀତି, ଗୋଧନ ପ୍ରତି ଭକ୍ତିଭାବର ସଂଜାତ-ସୌରଭ ଅନୁଭୂତ ହୁଏ ୨୧ ଅଧ୍ୟାୟ ବିଶିଷ୍ଟ ଗୋ-ମହାତ୍ମ୍ୟ ଗ୍ରନ୍ଥରୁ । ଏହା ୧୯୨୬ ମସିହାରେ ସତ୍ୟବାଦୀ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା । 'କାରାକବିତା'ର ରହିଛି କେତେଗୁଡିଏ କବିତା ଯାହାକୁ ସେ ହଜାରିବାଗ ଜେଲ୍‌ରେ ଥିବାବେଳେ ଲେଖିଥିଲେ । 'ବନ୍ଦୀର ଆତ୍ମକଥା' ପୁସ୍ତକରେ କବି ଜାତି ଉଦ୍ଦେଶ୍ୟରେ ମୁକ୍ତିଚିନ୍ତାର ମତ-ପଥ ବ୍ୟକ୍ତ କରିଛନ୍ତି । ସେଥିରେ ମଧ କବିଙ୍କ ନିଜସ୍ୱ ଅଭିଜ୍ଞତାର ପ୍ରତିଫଳନ ଉପଲବ୍ଧ ହୁଏ । ଏହା ତାଙ୍କ ବନ୍ଦୀଜୀବନର ଏକବର୍ଷ ପୂର୍ତ୍ତି ଅବସରରରେ ୧୯୨୩ ଜୁନ୍ ୨୬ ତାରିଖରେ ସତ୍ୟବାଦୀ ପ୍ରେସ୍‌ରୁ ଆତ୍ମପ୍ରକାଶ କରିଥିଲା । ଅନ୍ୟତମ ପୁସ୍ତକ 'ନଚିକେତା'କୁ କବି ୧୯୨୩-୨୪ ବେଳକୁ ରଚନା କରିଥାଇ ପାରନ୍ତି ବୋଲି ଗବେଷକଗଣ କହନ୍ତି ।

ଗୋପବନ୍ଧୁଙ୍କୁ କେନ୍ଦ୍ର କରି ଆଉ ଚାରିଜଣ କବି ତଥା ଲେଖକ ସେ ଯୁଗରେ ସାହିତ୍ୟ ସାଧକ ଥିଲେ । ସେମାନେ ହେଲେ ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଓ ପଣ୍ଡିତ କୃପାସିନ୍ଧୁ । ଏମାନେ ଅନ୍ୟ କେତେଜଣଙ୍କୁ ନେଇ ବନବିଦ୍ୟାଳୟ ଗଢ଼ି ଥିଲେ । ପ୍ରୋକ୍ତ ପାଞ୍ଚଜଣଙ୍କୁ ସତ୍ୟବାଦୀର ପଞ୍ଚସଖା କୁହାଯାଏ । ସେମାନଙ୍କର ଓଡିଆ ଭାଷା ସାହିତ୍ୟକୁ ଅବଦାନର ଆକଳନ ବେଶ୍ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କର ଶିକ୍ଷାନୀତିକୁ ଜାତୀୟତାବାଦୀ ଶିକ୍ଷାବିଧି ଓ ସାହିତ୍ୟକୁ ସତ୍ୟବାଦୀ ଯୁଗର ସାହିତ୍ୟ ଆଖ୍ୟା ଦିଆଯାଇଛି ।

ବଙ୍ଗଳାର ବିଶିଷ୍ଟ ଜନନାୟକ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟ ଗୋପବନ୍ଧୁ ଦାସଙ୍କୁ ଅତି ଆବେଗରେ ଉତ୍କଳର ମଣି ଉତ୍କଳମଣି ବୋଲି ସମ୍ବୋଧିତ କରିଥିଲେ ୧୯୨୪, ଜୁନ୍ ୨୬ ତାରିଖରେ, କଟକଠାରେ । ଆମ୍ଭେ ସମସ୍ତେ ସେଇ ଉତ୍କଳମଣି ଗୋପବନ୍ଧୁ ବୋଲି କହୁ ଯଦିଓ ସେ ରାଜ୍ୟ-ରାଜଧାନୀର ସୀମା ସରହଦ ଡେଇଁ ଜାତୀୟପ୍ରାଣର ପରିଚୟ ଦେଇଥିଲେ ।

ପୁରୀ ଜିଲ୍ଲାର ସୁଆଣ୍ଡୋ ଗ୍ରାମରେ ପିତା ବୈରାଗୀ ଦାଶଙ୍କ ପରିବାରରେ ଗୋପବନ୍ଧୁଙ୍କର ଜନ୍ମ ୧୮୭୭, ଅକ୍ଟୋବର ୯ ତାରିଖରେ । ପିଲାଦିନେ ମାଆକୁ ହରାଇ ସେ ପିଉସୀ

କମଳାଦେବୀଙ୍କ ପ୍ରଯନ୍ତରେ ବଢ଼ିଥିଲେ । ଗୋପବନ୍ଧୁଙ୍କ ବାପା ଥିଲେ ମୁକ୍ତିଆର । ଆର୍ଥିକ ଅବସ୍ଥା ଥିଲା ସ୍ୱଚ୍ଛଳ । ବଡଭାଇ ନାରାୟଣ ଦାଶ ଜମିଜମାର ଖବର ବୁଝୁଥିଲେ । ଗୋପବନ୍ଧୁଙ୍କ ପାରିବାରିକ ଜୀବନରେ ଏକ ପ୍ରକାର ଅନାସକ୍ତ ଭାବ ଦେଖିବାକୁ ମିଳେ । ଖୁବ୍ କମ୍ ବୟସରେ ସେ ପତ୍ନୀ ମୋତିଦେବୀଙ୍କୁ ହରାଇଥିଲେ । ତା'ପୂର୍ବରୁ ଏକମାତ୍ର ପୁତ୍ର ମରି ଯାଇଥିଲେ । ବାକି ରହିଲେ ଦୁଇଟି ଝିଅ । ସୁରଙ୍ଗିଣୀ ଓ କେତକୀ । ଉଭୟେ ନିଜ ନିଜ ସଂସାରରେ ଯଥାବିଧି ବିକଶିତ ।

ଗୋପବନ୍ଧୁ ଦେଶ ସେବାକୁ ଆଦରି ନେଇଗଲେ । ଏକପତ୍ନୀବ୍ରତ ତାଙ୍କୁ କରିଥିଲା ଧନ୍ୟ । ତାଙ୍କ ସ୍ତ୍ରୀଙ୍କ ପରିହିତ କସ୍ତା ଶାଢ଼ୀ ଖଣ୍ଡେ ଓ ସ୍ତ୍ରୀ ତାଙ୍କୁ ଦେଇଥିବା ଚଷୁର ମାଣ୍ଡିକୁ ସେ ସ୍ମୃତି ସ୍ୱରୂପ ପାଖରେ ରଖୁଥିଲେ । ସେକାଳରେ ଢିଙ୍କିରେ ଧାନ କୁଟା ବେଳେ ଧାନରୁ ବାହାରୁଥିବା ଚଷୁରେ ଲୋକେ ତକିଆ କରୁଥିଲେ ।

ଗୋପବନ୍ଧୁଙ୍କ ସ୍ତ୍ରୀ ମୋତି ଦେବୀଙ୍କ ମୃତ୍ୟୁ ଘଟଣାଟି ବଡ ଦୁଃଖଦାୟକ । ତାଙ୍କ ପୁଅର ମୃତ୍ୟୁ ବେଳକୁ ସ୍ତ୍ରୀ ଥାଆନ୍ତି ଆଠ ମାସର ଅନ୍ତଃସତ୍ତ୍ୱା । ଶୁଦ୍ଧକ୍ରିୟା ପାଇଁ ମାଆ ଘରର ଲିପାପୋଛା କରିବା ଥିଲା ଶାସନୀ ବ୍ରାହ୍ମଣ ସମାଜର ଅଲିଖିତ ନିୟମ । ଘରର କାନ୍ଥ ଲିପିବା ବେଳେ ନିଶୁଣିଟି ଭାଙ୍ଗିଗଲାରୁ କଚାଡି ହୋଇ ପଡିଲେ ମୋତିଦେବୀ । ପ୍ରଚୁର ରକ୍ତସ୍ରାବ ଯୋଗୁଁ ସେ ମୃତ୍ୟୁମୁଖରେ ପଡିଲେ । ସେତେବେଳେ ଗୋପବନ୍ଧୁ ଘରେ ନଥିଲେ ।

ଗୋପବନ୍ଧୁଙ୍କ ଦେହାନ୍ତରେ ବିପ୍ଳବୀ କବି ଗୋଦାବରୀଶ ମହାପାତ୍ର (ଏକଦା ବନବିଦ୍ୟାଳୟର ଛାତ୍ର) ମୁକ୍ତିଯାତ୍ରୀ ଗୋପବନ୍ଧୁ ଶୀର୍ଷକ କବିତାରେ ତାଙ୍କୁ ସନ୍ନ୍ୟାସୀ, ବୀର, ଯାଜ୍ଞିକ ଆଦି ସମ୍ବୋଧନ କରିଛନ୍ତି ।

ଯେତେବେଳେ ଆସିଛି ଦୁଃଖ ଦୁର୍ବିପାକ, ସେତେବେଳେ ମନେ ପଡନ୍ତି ଗୋପବନ୍ଧୁ ଦାସ ।

ବିପ୍ଳବୀ କବି ମନମୋହନ ମିଶ୍ର ତାଙ୍କର ସେବା ପରାୟଣ, ଭାବକୁ ନେଇ ଲେଖିଛନ୍ତି ନାଟକ 'ମହାଦୀକ୍ଷା' ।

ଏଇ ନାଟକ ରଚନା ମୂଳରେ ରହିଛି ଘଟଣାଟିଏ ।

ଏହା ଥିଲା ୧୯୪୨–୪୩ ମସିହା କଥା । ଦ୍ୱିତୀୟ ବିଶ୍ୱଯୁଦ୍ଧର ବେଳ । ଓଡିଶାରେ ଦୁର୍ଭିକ୍ଷ ହେତୁ ଲୋକେ ପୋକମାଛି ପରି ମରୁଥାନ୍ତି । ବ୍ରହ୍ମପୁର ଜେଲ୍‌ରେ କଏଦୀ ତଥା କବି ମନମୋହନ ସେତେବେଳେ ଉତ୍କଳମଣିଙ୍କ ଗୁଣ ସୁମରି ଲେଖିଥିଲେ ପ୍ରୋକ୍ତ ନାଟକ – ମହାଦୀକ୍ଷା ।

ଉତ୍କଳମଣିଙ୍କ ମହାପ୍ରୟାଣରେ କବି ମାୟାଧର ମାନସିଂହ ଲେଖିଛନ୍ତି –

'ହେ କବି ହେ ଋଷି ବାଗ୍ମୀ ହେ ତବ
ଚରଣେ ନମସ୍କାର
ଯେ ପଦେ ଯାଇଛ ଏଇ ମାଥେ ପଡୁ
ପବିତ୍ର ରେଣୁ ତା'ର ।
ପୁରୁଷୋତ୍ତମ, ତୁମ ଲାଗି ଆମେ
ଧନ୍ୟ ହୋଇଛୁ ପରା ।
ମରଣେ ତୁମର ତେଣୁ ହେ ବିଳପେ
ଆଜ ଉତ୍କଳ ଧରା ।'

କର୍ମମୁଖର ଥିଲା ଗୋପବନ୍ଧୁଙ୍କ ଜୀବନ । କର୍ମବାଦୀ ସେ । ଏକାଧାରରେ ନେତା, ଆଇନ୍‌ଜ୍ଞ, ସଂଗଠକ, ଶିକ୍ଷକ, ଶିକ୍ଷାବିତ୍, କବି-ପ୍ରାବନ୍ଧିକ, ପତ୍ରକାର, ବକ୍ତା, ଦେଶହିତୈଷୀ ସର୍ବୋପରି 'ସମାଜ'ର ପ୍ରତିଷ୍ଠାତା ଗୋପବନ୍ଧୁ ଦାସ ସତରେ ଏକ ଅନନ୍ୟ ବ୍ୟକ୍ତିତ୍ୱ । କର୍ମ ତାଙ୍କ ଜୀବନର ମାନଦଣ୍ଡ । କର୍ମଧାରା କରିଛି ତାଙ୍କୁ ଅଜର–ଅଜର । ସେ ସଦାପୂଜିତ ଏକ ଅନିର୍ବାଣ ମହାଦୀପ । ଗୋଦାବରୀଶ ମହାପାତ୍ରଙ୍କ ଭାଷାରେ – 'ହେ ଗୋପବନ୍ଧୁ କରୁଣାସିନ୍ଧୁ ଚରଣ–କମଳେ ନମସ୍କାର ।'

**ସହାୟକ ପୁସ୍ତକ**

(କ) ଆମେ ଓଡିଆ – ଦ୍ୱିତୀୟ ଭାଗ (୨୦୧୨) ପ୍ରତିଭା ପରିକ୍ରମା ପ୍ରତିଷ୍ଠାନ, ପାଣ୍ଡବ ନଗର, ଭୁବନେଶ୍ୱର–୧୮

(ଖ) ଗୋଦାବରୀଶ ରଚନାବଳୀ, ପ୍ରଥମଖଣ୍ଡ (୨୦୦୫), ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ–୨

(ଗ) ପଣ୍ଡିତ ଗୋପବନ୍ଧୁ ଗ୍ରନ୍ଥାବଳୀ (୨୦୦୪)/ ପ୍ରକାଶକ – ଜଗନ୍ନାଥ ରଥ / ବିନୋଦବିହାରୀ, କଟକ–୨

(ଘ) ମାନସିଂହ ଗ୍ରନ୍ଥାବଳୀ, ପ୍ରଥମଖଣ୍ଡ (୧୯୯୭), ଦ୍ୱିତୀୟଖଣ୍ଡ (୨୦୦୦), ଗ୍ରନ୍ଥମନ୍ଦିର, ବାଲୁବଜାର,

ସେକ୍ଟର–୨/୪୨୬, ନୀଳାଦ୍ରି ବିହାର,
ଭୁବନେଶ୍ୱର–୨୧

# ସ୍ୱାଧୀନତା ସଂଗ୍ରାମୀ ବୀର ସୁରେନ୍ଦ୍ର ସାଏ

**ଡକ୍ଟର ଭାଗ୍ୟଲିପି ମଲ୍ଲ**

ଭାରତର ସ୍ୱାଧୀନତା ଇତିହାସର ପୃଷ୍ଠାକୁ ଉନ୍ମୋଚନ କଲେ ଯେଉଁ କେତେଜଣ ବିପ୍ଳବୀ ବୀରଙ୍କର ନାମ ଦେଖିବାକୁ ମିଳେ, ସେମାନଙ୍କ ମଧ୍ୟରେ ଆଜୀବନ ସଂଗ୍ରାମୀ ବୀର ବିପ୍ଳବୀ ସୁରେନ୍ଦ୍ର ସାଏ ଅନ୍ୟତମ । ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମର ଫର୍ଦ୍ଦରେ ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈ, ତାନ୍ତିଆ ଟୋପେ, ନାନାସାହେବ ବା କନ୍‌ୱାର ସିଂହଙ୍କ ପାଇଁ ଯଦିଓ ଇତିହାସକାରମାନଙ୍କ ଲେଖନୀ ସ୍ୱତଃସ୍ଫୂର୍ତ୍ତ ହୋଇଉଠିଛି, ତଥାପି ଏ କ୍ଷେତ୍ରରେ ବୀର ସୁରେନ୍ଦ୍ର ସାଏଙ୍କ ଅବଦାନ ବିଳମ୍ବରେ ହେଲେ ମଧ୍ୟ ଇତିହାସ ନିରବ ରହିନାହିଁ । ଧୀର ଅଥଚ ଶାନ୍ତ ଭାବରେ ହେଉପଛେ ସ୍ୱୀକାର କରିଛି ବୀର ସୁରେନ୍ଦ୍ର ସାଏଙ୍କୁ ତାଙ୍କର ବଳିଦାନ ପାଇଁ, ତାଙ୍କର ନିଷ୍ଠା ଓ ଅଦମ୍ୟ ଦେଶ ଭକ୍ତି ପାଇଁ, ଇଂରେଜମାନଙ୍କ ବିରୁଦ୍ଧରେ ଦୃଢ଼ଭାବେ ଲଢ଼ିବାର ମନୋବଳ ପାଇଁ ।



୧୮୦୯ ମସିହା ଜାନୁୟାରୀ ମାସ ୨୩ ତାରିଖ ଦିନ ସମ୍ବଲପୁର ସହରଠାରୁ ପ୍ରାୟ ୩୪ କି.ମି ଦୂର ଅଖ୍ୟାତ ଗ୍ରାମ ଖିଣ୍ଡାର ଆକାଶରେ ସେଦିନ ବିପ୍ଳବର ସୂର୍ଯ୍ୟ କିରଣ ଆଭାରେ ଯେଉଁ ଶିଶୁପୁତ୍ରର ଆଭା ଝଲସି ଉଠିଥିଲା, ସେ ଥିଲେ ବୀର ସୁରେନ୍ଦ୍ର ସାଏ । ଆଭିଜାତ୍ୟ ପରିବାରରେ ଜନ୍ମଗ୍ରହଣ କରିଥିବା ବୀର ସୁରେନ୍ଦ୍ର ସାଏ ଆଉ ୬ଜଣ ଭାଇ ଓ ଗୋଟିଏ ଭଉଣୀ ସହିତ ବାଲ୍ୟ ଜୀବନ ଅତିବାହିତ କରିଥିଲେ । ବାଲ୍ୟକାଳରୁ ଖୁବ୍ ଜିଦ୍‌ଖୋର ଆଉ ଅବାଧ୍ୟ ଥିବା ସୁରେନ୍ଦ୍ର ଘୋଡାଦୌଡ଼, ଶରସନ୍ଧାନ ତଥା ତରବାରୀ ଚାଳନାରେ ଥିଲେ ଖୁବ୍ ଧୂରନ୍ଧର । ବାଳକ ସୁରେନ୍ଦ୍ର ବଡ ହେବା ସଂଗେ ସଂଗେ ଅନୁଭବ କରିଥିଲେ ଯେ ସମ୍ବଲପୁରର ରାଜସିଂହାସନ ହେଉଛି ତାଙ୍କର ନ୍ୟାଯ୍ୟ ଦାବି ଏବଂ ଏହା ଅନ୍ୟାୟ ଉପାୟରେ ତାଙ୍କଠାରୁ ଛଡାଇ ନିଆଯାଇଛି । ସୁରେନ୍ଦ୍ର ଜାଣିଥିଲେ, ସେ ହେଉଛନ୍ତି ଚୌହାନ ରାଜବଂଶୀୟ ଏବଂ ସମ୍ବଲପୁର ରାଜସିଂହାସନର ଉତ୍ତରାଧିକାରୀ । କାରଣ ସେ ଥିଲେ ସମ୍ବଲପୁରର ପୂର୍ବତନ ମହାରାଜା ବଳିଆର ସିଂହଙ୍କ ଦ୍ୱିତୀୟ ଭାଇ-ରାଜପୁର ଓ ଖିଣ୍ଡା ଜମିଦାର ଅନିରୁଦ୍ଧ ସାଏଙ୍କ ବଂଶଧର । ତେବେ ଅନିରୁଦ୍ଧ ସାଏ ତାଙ୍କ ଦୁଇପୁତ୍ରଙ୍କ ମଧ୍ୟରୁ ମାଧବ ସିଂହଙ୍କୁ ଖିଣ୍ଡା ଓ ରାଜସିଂହଙ୍କୁ ରାଜପୁର ଜମିଦାରୀ ପ୍ରଦାନ କରିଥିଲେ । ମାଧବ ସିଂହଙ୍କର ଜଣେ ଉତ୍ତରାଧିକାରୀ ଥିଲେ ଧର୍ମସିଂହ ଏବଂ ଧର୍ମସିଂହଙ୍କ ଜ୍ୟେଷ୍ଠ ପୁତ୍ର ଥିଲେ ସୁରେନ୍ଦ୍ର ସାଏ । ସୁତରାଂ ମହାରାଜା ସାଏଙ୍କ ମୃତ୍ୟୁ ପରେ ପରେ ସମ୍ବଲପୁର ରାଜଗାଦି ପାଇଁ ସୁରେନ୍ଦ୍ର ସାଏଙ୍କର ଥିଲା ସବୁଠାରୁ ଅଧିକ ଦାବି । କିନ୍ତୁ ସୁରେନ୍ଦ୍ରଙ୍କର ଏହି ଦାବିକୁ ଇଂରେଜ ସରକାର ମାନିନେବାକୁ ଆଦୌ ପ୍ରସ୍ତୁତ ନଥିଲେ । ଫଳତଃ ସୁରେନ୍ଦ୍ରଙ୍କର ହୃଦୟରେ ବିପ୍ଳବର ବହ୍ନି ପ୍ରଜ୍ୱଳିତ ହେବାରେ ଲାଗିଲା । ସମ୍ବଲପୁରର ମହାରାଜା ସାଏଙ୍କ ମୃତ୍ୟୁ ପରେ ପରେ ଯେତେବେଳେ ମୋହନ କୁମାରୀଙ୍କୁ ଇଂରେଜମାନେ ଉକ୍ତ ସିଂହାସନରେ ଅଧିଷ୍ଠିତ କରାଇଲେ, ସେତେବେଳେ ସମଗ୍ର ଅଂଚଳରେ ବିଦ୍ରୋହ ମୁଣ୍ଡ ଟେକିଲା । ସମ୍ବଲପୁରର ଜନସାଧାରଣ

ମଧ୍ୟ ଅନେକ ଜମିଦାରଙ୍କ ସହିତ ସୁରେନ୍ଦ୍ର ସାଏଙ୍କ ସିଂହାସନ ଦାବିକୁ ସମର୍ଥନ କରୁଥିଲେ । ତେଣୁ ଦିନକୁ ଦିନ ବିପ୍ଳବ ତୀବ୍ରତର ହେବାକୁ ଲାଗିଲା । ଧୀରେ ଧୀରେ ଏହି ଆନ୍ଦୋଳନ ଏତେ ଉଗ୍ରରୂପ ଧାରଣ କଲା ଯେ, ଇଂରେଜ ସରକାରଙ୍କର ମୁଣ୍ଡବ୍ୟଥାର କାରଣ ହେଲା । ୧୮୩୯ ମସିହାରେ ଏହି ଆନ୍ଦୋଳନକୁ ଭିତ୍ତିକରି ସୁରେନ୍ଦ୍ର ସାଏ ସମ୍ବଲପୁର ଶାସନଗାଦି ଦାବି କରି ଇଂରେଜମାନଙ୍କ ବିରୋଧରେ ପ୍ରତ୍ୟକ୍ଷ ସଂଗ୍ରାମ ଆରମ୍ଭ କରିଦେଲେ ।

ଇଂରେଜ ସରକାର ଯଦିଓ ଅନୁଭବ କରିଥିଲେ ଯେ ସୁରେନ୍ଦ୍ର ସାଏଙ୍କର ଦାବି ଯୁକ୍ତିଯୁକ୍ତ ବୋଲି ତଥାପି ରାଜଗାଦିର ସନନ୍ଦ ସୁରେନ୍ଦ୍ରଙ୍କୁ ଶେଷ ପର୍ଯ୍ୟନ୍ତ ହସ୍ତାନ୍ତର କଲେ ନାହିଁ । କାରଣ ଇଂରେଜ ସରକାର ଜାଣିଥିଲେ ଯେ, କୌଣସି ପରିସ୍ଥିତିରେ ମଧ୍ୟ ସୁରେନ୍ଦ୍ର ସାଏ ତାଙ୍କ ହାତର କ୍ରୀଡନକ ସାଜି ପାରିବେ ନାହିଁ । ତେଣୁ ସୁରେନ୍ଦ୍ରଙ୍କ ଦାବି ନ୍ୟାୟସଂଗତ ଥିଲେ ମଧ୍ୟ ଇଂରେଜ ସରକାର ତାଙ୍କ ପ୍ରତି ଅନ୍ୟାୟ କରିଥିଲେ । ଏହି ଅନ୍ୟାୟର ବହ୍ନି କ୍ରମେ ସୁରେନ୍ଦ୍ରଙ୍କୁ ବିପ୍ଳବୀ ସୁରେନ୍ଦ୍ର ଭାବେ ପରିଚିତ କରାଇବାରେ ସହାୟକ ହୋଇଥିଲା ।

ବିପ୍ଳବୀ ସୁରେନ୍ଦ୍ରଙ୍କ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମୟ ଥିଲା– ଯେତେବେଳେ ସିଏ ତାଙ୍କର ଅନ୍ୟତମ ପ୍ରତିଦ୍ୱନ୍ଦୀ ଝାରସୁଗୁଡାର ଯୁବକ ଜମିଦାର ଗୋବିନ୍ଦ ସିଂହଙ୍କୁ ଶତ୍ରୁରୁ ମିତ୍ରକୁ ରୂପାନ୍ତରିତ କରାଇ ପାରିଥିଲେ । ତାଙ୍କ ବିପ୍ଳବର ସ୍ୱର ଏତେ ତୀବ୍ରଥିଲା ଏବଂ ସେଥିରେ ତ୍ୟାଗର ସ୍ଫୁରଣ ଏତେ ମାତ୍ରାରେ ଭରି ରହିଥିଲା ଯେ ତାଙ୍କ ଶତ୍ରୁ ତାଙ୍କର ମିତ୍ର ପାଲଟି ଯାଇଥିଲେ । ସମ୍ବଲପୁର ରାଜଧାନୀ ପାଇଁ ଅନ୍ୟତମ ଦାବିଦାର ଗୋବିନ୍ଦ ସିଂହ ଯିଏ କି ଛାତ୍ର ସାଏଙ୍କର ତୃତୀୟ ପୁତ୍ର ହରିବଂଶ ଲାଲଙ୍କର ବଂଶଧର ଥିଲେ, ସୁରେନ୍ଦ୍ର ସାଏଙ୍କ ବିପୁଳ ଜନସମର୍ଥନରେ ତାଙ୍କ ପ୍ରତି ଈର୍ଷାକାତର ହୋଇପଡିଥିଲେ । ତେଣୁ ତାଙ୍କୁ ଇଂରେଜ ସରକାରଙ୍କ ନିକଟରେ ଧରାଇ ଦେବା ପାଇଁ ସେ ଥିଲେ ଦୃଢ଼ ପ୍ରତିଜ୍ଞ ଏବଂ ପ୍ରତିଦାନରେ ସମ୍ବଲପୁର ରାଜଗାଦି ଥିଲା ତାଙ୍କର ଅଭିଳାଷ ।

ଦିନେ ଅଚାନକ ଭାଗ୍ୟର ବିଡମ୍ବନାରେ ଗୋବିନ୍ଦ ସିଂହଙ୍କ ଦ୍ୱାରା ଧରାପଡିଥିଲେ ସୁରେନ୍ଦ୍ର ସାଏ ଏବଂ ତାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ଧରା ପକାଇବା ବଦଳରେ ନିଜେ ବିପ୍ଳବୀ ପାଲଟି ଯାଇଥିଲେ ଗୋବିନ୍ଦ ସିଂହ । ଗୋବିନ୍ଦ ସିଂହଙ୍କ ପରେ ସମ୍ବଲପୁର ରାଜଗାଦି ପାଇଁ ଆଉ ଜଣେ ଦାବିଦାର ଥିଲେ ଯାହାଙ୍କ ନାମ ହେଉଛି ରାଜା ନାରାୟଣ ସିଂହ । ତେବେ ଭାଗ୍ୟଦେବୀଙ୍କର ପ୍ରସନ୍ନତା ଯୋଗୁଁ ହେଉ ବା ଅନୁକୂଳ ପରିବେଶ ହେଉ ରାଣୀ ମୋହନକୁମାରୀଙ୍କ ଶାସନ କାଳରେ ରାଜ୍ୟରେ ବିଦ୍ରୋହ ତୀବ୍ରତର ହେବାରୁ ଇଂରେଜ ସରକାର ବାଧ୍ୟ ହୋଇ ରାଜା ନାରାୟଣ ସିଂହଙ୍କୁ ସମ୍ବଲପୁର ରାଜଗାଦିରେ ଉପବେଶନ କରାଇଥିଲେ । ନିଜର ଅନିଚ୍ଛା ସତ୍ତ୍ୱେ ୧୮୩୩ ମସିହାରେ ରାଜା ନାରାୟଣ ସିଂହ ସମ୍ବଲପୁରର ରାଜସିଂହାସନ ଆରୋହଣ କଲେ । ରାଜାଙ୍କର ଦମନଲୀଳାରେ ଅତିଷ୍ଠ ସମ୍ବଲପୁର ପ୍ରଜାଗଣ କ୍ରମେ ସୁରେନ୍ଦ୍ରଙ୍କ ସହ ହାତ ମିଳାଇବାରେ ଲାଗିଲେ । ବିପୁଳ ଜନସମର୍ଥନରେ ବୀର ବିପ୍ଳବୀ ସୁରେନ୍ଦ୍ର ଆଧୁନିକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଇଂରେଜ ସୈନ୍ୟମାନଙ୍କୁ ସାମ୍ନା କରୁଥିଲେ ନିଜର ଖଣ୍ଡା, ବର୍ଚ୍ଛା ଓ ଧନୁଶର ସାହାଯ୍ୟରେ । ଯେ ହେତୁ ରାଜା ନାରାୟଣ ସିଂହ ସମ୍ବଲପୁର ସିଂହାସନର ପ୍ରକୃତ ହକ୍‌ଦାର ନଥିଲେ, କେବଳ ରାଣୀ ମୋହନ କୁମାରୀଙ୍କର ଜଣେ ଦେହରକ୍ଷୀ ଥିଲେ, ତେଣୁ ସେ ରାଜମୁକୁଟ ଗ୍ରହଣ କରିବା ବେଳକୁ ସମଗ୍ର ଅଂଚଳରେ ବିପ୍ଳବର ବହ୍ନି କୁହୁଳି ଉଠିଲାଣି । ପ୍ରାୟ ସମସ୍ତ ଜମିଦାର ମଧ୍ୟ ଜନସାଧାରଣଙ୍କ ସହ ସାମିଲ ହୋଇଗଲେ । ସୁରେନ୍ଦ୍ର ସାଏ ହିଁ ପ୍ରକୃତରେ ସମ୍ବଲପୁର ରାଜସିଂହାସନର ଉତ୍ତରାଧିକାରୀ ଏକଥା ସମସ୍ତେ ଚାହୁଁଥିଲେ । ତେଣୁ ବିପ୍ଳବର ଆହ୍ୱାନରେ ସୁରେନ୍ଦ୍ର ସାଏ ସମଗ୍ର ଅଂଚଳକୁ ରୋମାଞ୍ଚିତ କରିଥିଲେ । କିନ୍ତୁ ରାମପୁରର ଜମିଦାରଙ୍କ ବିଶ୍ୱାସଘାତକତା ପାଇଁ ୧୮୪୦ ମସିହାରେ ସୁରେନ୍ଦ୍ର ରାମପୁରଗଡ ଆକ୍ରମଣ କଲେ । ଏହି ଆନ୍ଦୋଳନରେ ସୁରେନ୍ଦ୍ରଙ୍କୁ ତାଙ୍କ ଭାଇ ଉଦନ୍ତ ସାଏ ଏବଂ ତାଙ୍କର ଶୁଭେଚ୍ଛୁ ତଥା ଦିଗ୍‌ଦର୍ଶକ ବଳରାମ ସିଂହ ସହଯୋଗ କରିଥିଲେ । ରାମପୁରର ଜମିଦାର ଦୁର୍ଯ୍ୟ ସିଂହଙ୍କ ପ୍ରବଳ ବିରୋଧ ସତ୍ତ୍ୱେ ବିପ୍ଳବୀମାନେ ରାମପୁର ଗ୍ରାମ ପୋଡି ପକାଇଥିଲେ ଏବଂ ଏହି ସଂଗ୍ରାମରେ ଦୁର୍ଯ୍ୟ ସିଂହଙ୍କ ପିତା ଓ ପୁତ୍ର ନିହତ ହୋଇଥିଲେ । ଏଥିରେ ଇଂରେଜ ସରକାର କ୍ଷୁବ୍ଧ ହୋଇଥିଲେ ଏବଂ କୌଣସି ପ୍ରକାରେ ଆସାମୀମାନଙ୍କୁ ଯାବଜ୍ଜୀବନ ସଶ୍ରମ କାରାଦଣ୍ଡ ଓ ସବୁବେଳେ ଲୁହାକଡି ପିନ୍ଧିବା ପାଇଁ ନିର୍ଦ୍ଦେଶନାମା ଜାରି କରାଗଲା । ହଜାରିବାଗ ଜେଲରେ ବୀର ସୁରେନ୍ଦ୍ର ସାଏ ରହିଲେ ଆଜୀବନ କଏଦୀ ହୋଇ ।

୧୮୫୭ ମସିହାର ସିପାହୀ ବିଦ୍ରୋହ ହିଁ ସୁରେନ୍ଦ୍ରଙ୍କୁ ଦୀର୍ଘ ୧୭ ବର୍ଷ ପରେ ପୁଣିଥରେ ସୂର୍ଯ୍ୟାଲୋକ ଦେଖାଇବାରେ ସାହାଯ୍ୟ କରିଥିଲା । ତେବେ ବିପ୍ଳବୀ ସିପାହୀମାନଙ୍କ ଦ୍ୱାରା ହଜାରିବାଗ୍ ଜେଲ ଭାଙ୍ଗି ଦିଆଯିବା ପରେ ସୁରେନ୍ଦ୍ର ଚିନ୍ତା କଲେ ନିଜ ଜନ୍ମଭୂମିକୁ ଫେରିଯିବା ଶ୍ରେୟସ୍କର । ବୀର ସୁରେନ୍ଦ୍ର ସାଏଙ୍କ ସମ୍ବଲପୁର

ଆଗମନର ସମ୍ଭାବନା ସମ୍ବାଦରେ ଆତଙ୍କିତ କ୍ୟାପିଟେନ୍ ଲେ ତାଙ୍କୁ ଧରାଇଦେବା ଲାଗି ଦୁଇଶହ ପଚାଶ ଟଙ୍କା ଘୋଷଣା କରିଥିଲେ । ତେବେ ଇଂରେଜ ସରକାରଙ୍କ କଡା ନଜରରେ ଥାଇ ମଧ୍ୟ ଅନ୍ଧକାରାଚ୍ଛନ୍ନ ଘନକୁହୁଡି ମଧ୍ୟରେ ଅକ୍ଟୋବର ୩୧ ତାରିଖ ରାତିରେ ସୁରେନ୍ଦ୍ର ସାଏ ସମ୍ବଲପୁରରୁ ପଳାୟନ କରିଥିଲେ । ବିଦ୍ରୋହୀ ବିପ୍ଳବୀ ସୁରେନ୍ଦ୍ର ସାଏ ଘଞ୍ଚ ଜଙ୍ଗଲର ଆଢୁଆଳରେ ଥାଇ ଇଂରେଜମାନଙ୍କ ବିରୋଧରେ ଲଢ଼େଇ କରୁଥିଲେ । ହେଲେ ଶେଷ ପର୍ଯ୍ୟନ୍ତ ତାଙ୍କୁ କୌଣସି ସୁଫଳ ମିଳି ନଥିଲା । ଦେଶର ସ୍ୱାର୍ଥ ଦୃଷ୍ଟିରୁ ତଥା ବ୍ରିଟିଶ୍ ରାଜ୍ୟକୁ ଆଭ୍ୟନ୍ତରୀଣ ଅଶାନ୍ତିରୁ ମୁକ୍ତ କରିବା ପାଇଁ ସୁରେନ୍ଦ୍ର ସାଏ ତଥା ତାହାଙ୍କ ସମର୍ଥକମାନେ ଅଟକ ହୋଇ ରହିବା ଆବଶ୍ୟକ ବୋଲି ବଡଲାଟଙ୍କ ନିକଟରୁ ଆଦେଶନାମା ମିଳିବା ପରେ ତାଙ୍କୁ ଅସୁରଗଡ ଦୁର୍ଗ ମଧ୍ୟରେ ଅଟକ ରଖାଗଲା । ୧୮୮୪ ମସିହା ଫେବୃଆରୀ ମାସ ୨୮ ତାରିଖ ଦିନ ଗୋଟାଏ ବେଳେ ଆଜୀବନ ସଂଗ୍ରାମୀ ବିପ୍ଳବୀ ସୁରେନ୍ଦ୍ର ସାଏଙ୍କ ଜୀବନର ଦୀପଶିଖା ସବୁଦିନ ପାଇଁ ନିର୍ବାପିତ ହୋଇଗଲା । ଆଶା-ଆଶଙ୍କା ଓ ପାଇବା-ହରାଇବା ମଧ୍ୟରେ ସେଇ ମହାନ୍ ବିପ୍ଳବୀଙ୍କ ଜୀବନର ଅନ୍ତ ହୋଇଗଲା । ସ୍ୱାଧୀନତାର ଅନେକ ବର୍ଷ ପରେ ଆଜି ଓଡ଼ିଶା ମାଟି ପ୍ରଣାମ କରୁଛି ସେ ବୀର ବିପ୍ଳବୀ ମହାନାୟକଙ୍କୁ ଯିଏ ଜନ୍ମମାଟି ପାଇଁ ଅଜାଡି ଦେଇଥିଲେ ଜୀବନର ସମସ୍ତ ପୁଞ୍ଜିକୁ ଆଉ ନିଗାଡି ଦେଇଥିଲେ ଶରୀରର ସମସ୍ତ ଶୋଣିତ ବିନ୍ଦୁକୁ ।

କ୍ୟୁରେଟର, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

# ରକ୍ତ ଦିଅ ମୋତେ

**ସରୋଜ ରଞ୍ଜନ ପଟ୍ଟନାୟକ**

ଦିଅ ମୋତେ ରକ୍ତ ଦେବି ସ୍ୱାଧୀନତା
ଏହି ତ ମୁକ୍ତିର ବାଣୀ
ଦିଲ୍ଲୀ ଚଲୋ କହି ଡାକରା ଶୁଭୁଛି
ଛାତିକୁ କରଇ ପାଣି ।
ସୁଭାଷ ! ବୀର ସନ୍ତାନ
ଫଉଜ ଗଢିଛି ଆଜାଦ୍ ହିନ୍ଦ୍
କରିବ ଦେଶ ସ୍ୱାଧୀନ ।
ଡରି ଯିବା ନାହିଁ ଛାର ଫିରିଙ୍ଗିକୁ
ଆସ ହେ ବୀର ସନ୍ତାନ
ଦେଶ ଜନନୀର ମୁକ୍ତି ପାଇଁ ଆମେ
ଦେବା ପଛେ ବଳିଦାନ ।
ହଟି ଯିବା ନାହିଁ ବୀର ଜାତକେ
ସୁଭାଷ କରିଛି ପଣ
ରକ୍ତ ଦିଅ ମୋତେ ଦେବି ସ୍ୱାଧୀନତା
ଆହ୍ୱାନ ଦେଇଛି ଶୁଣ ।
ଘେରିଲେ ଫଉଜ ପ୍ରାଚୀପଟୁ
ଭାରତ ଜନନୀ ମାଟି ହାତେ ଦିଅ ହାତ
ଡାକିଲା ସୁଭାଷ ଶତ୍ରୁ ଯିବେରେ ହଟି ।

ଚାଲିଛି ଦେଶରେ ଅହିଂସା ସଂଗ୍ରାମ
ନ ପାଇଲେ ସମର୍ଥନ
କ୍ଷୁଧା ତୃଷ୍ଣା ସାଥେ ପ୍ରବଳ ବରଷା
ଫଉଜ ହେଲେ ଛିନ୍ନ ଭିନ୍ନ ।
ସମୟର ସ୍ରୋତେ ଚାଲିଗଲ କାହିଁ
କେହି ନପାରିଲେ ଖୋଜି
ଆଜି ବି କାନ୍ଦୁଛି ଭାରତ ଜନନୀ
ସୁପୁତ୍ରର ଗୁଣ ହେଜି ।
ବୀର ହୁଙ୍କାରେ ଭାଙ୍ଗି ଥିଲା ଭୟ
ଫିରିଙ୍ଗି ସେନାର ରଡି
ଜନମ ଦିନକୁ କରିଛି ଅପେକ୍ଷା
ତ୍ରିରଙ୍ଗା ହୋଇ ସଜାଡି ।

ଘର ନଂ-୨/ଆର୍.ଏଫ୍,୪/୧,
କୋଅପରେଟିଭ୍ ହାଉସିଂ କଲୋନୀ,
ୟୁନିଟ୍-୩, ଭୁବନେଶ୍ୱର-୧

**ନାରୀ ପ୍ରସଙ୍ଗ**

# ଓଡିଶା ରାଜ୍ୟ ବାଳିକା ଓ ମହିଳା ନୀତି, ୨୦୧୪ ଓ ଏହାର ବୈଶିଷ୍ଟ୍ୟ

**ରା**ଜ୍ୟର ବାଳିକା ଓ ମହିଳାମାନଙ୍କ ସାମଗ୍ରିକ ବିକାଶ ନିମନ୍ତେ ଏକ ବିସ୍ତୃତ ଓ ସକ୍ରିୟ କାର୍ଯ୍ୟଧାରା ଆରମ୍ଭ କରିବା ଦିଗରେ ଓଡିଶା ରାଜ୍ୟ ବାଳିକା ଓ ମହିଳା ନୀତି ପ୍ରଣୟନ କରାଯାଇଛି। ଏହା ଏପରି ଏକ ଦସ୍ତାବିଜ୍, ଯାହା ସକ୍ରିୟ ଓ ନିର୍ଦ୍ଦିଷ୍ଟ ସମସ୍ୟାଗୁଡିକୁ ଉପସ୍ଥାପିତ କରିବା ସହ ଏକ ନିର୍ଦ୍ଧାରିତ ପଦ୍ଧତି ମଧ୍ୟ ଦେଇ ସମସ୍ୟାର ସଠିକ୍ ସମାଧାନ କରିପାରିବ । ଏହି ନୀତି ବିଭିନ୍ନ ମତାମତକୁ ଗୁରୁତ୍ୱ ଦେଇ ଡେସ୍କ ସମୀକ୍ଷା, ଜାତୀୟ ଏବଂ ଅନ୍ୟ ରାଜ୍ୟର ମହିଳା ଓ ବାଳିକାମାନଙ୍କ ନିମନ୍ତେ ପ୍ରଣୀତ ହୋଇଥିବା ନୀତିର ସମୀକ୍ଷା ତଥା ଏହାର ବିଭିନ୍ନ ଅଂଶୀଦାରମାନଙ୍କ ସହ ପର୍ଯ୍ୟାୟଗତ ଆଲୋଚନାର ନିର୍ଯ୍ୟାସରୁ ପ୍ରଣୟନ କରାଯାଇଛି । ଜୀବନ ଚକ୍ର ଆଧାରରେ ବାଳିକା ଓ ମହିଳାମାନଙ୍କ ଜନ୍ମ, ଶୈଶବ, କୈଶୋର, ବୟସ୍କ ଓ ବୃଦ୍ଧାବସ୍ଥାର ଉଦ୍‌ବେଗକୁ ଦୃଷ୍ଟିରେ ଏହି ନୀତି ପ୍ରଣୀତ ହୋଇଛି ।

ଏହି ନୀତି ଜୀବନଧାରଣ, ସ୍ୱାସ୍ଥ୍ୟ ଏବଂ ପୁଷ୍ଟିସାଧନ, ଶିକ୍ଷା, ଜୀବିକା ( ଆନୁଷ୍ଠାନିକ ଏବଂ ଅଣଆନୁଷ୍ଠାନିକ କ୍ଷେତ୍ରରେ ଥିବା ମହିଳାଙ୍କ ନିମନ୍ତେ ) ସଂପତ୍ତି ମାଲିକାନା, ନିଷ୍ପତ୍ତି ଗ୍ରହଣ, ଅଂଶଗ୍ରହଣ ଏବଂ ରାଜନୈତିକ ପ୍ରତିନିଧିତ୍ୱ, ସୁରକ୍ଷା, ନିରାପତ୍ତା ତଥା ସ୍ୱତନ୍ତ୍ର ଆବଶ୍ୟକତା ଅନୁଭବ କରୁଥିବା ବାଳିକା ଓ ମହିଳାମାନଙ୍କୁ ଦୃଷ୍ଟିରେ ରଖି ୭ଗୋଟି କେନ୍ଦ୍ରିତ ବିଭାଗରେ ବିଭକ୍ତ ହୋଇଛି ।

ବାଳିକା ଏବଂ ମହିଳାମାନଙ୍କ ନିମନ୍ତେ ବର୍ଦ୍ଧିତ ସାମର୍ଥ୍ୟ ସୃଷ୍ଟି ଏବଂ ବଳିଷ୍ଠ ଆନୁଷ୍ଠାନିକ ଓ ନ୍ୟାୟିକ କାର୍ଯ୍ୟଧାରା ଉପରେ ଏହି ନୀତି ଗୁରୁତ୍ୱ ଦିଏ । ବିଭିନ୍ନ ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ବ୍ୟବସ୍ଥା ଦ୍ୱାରା ଯୋଜନା ପ୍ରଣୟନ ଓ ରୂପାୟନ ପାଇଁ ଏହି ନୀତି ଏକ ବିସ୍ତାରିତ ପଥପ୍ରଦର୍ଶକ ପଦ୍ଧତି ରୂପେ କାର୍ଯ୍ୟ କରିବ, ଯଦ୍ୱାରା ବାଳିକା ଓ ମହିଳାମାନଙ୍କ ଆବଶ୍ୟକତା ସୁସଂହତ ଭାବେ ପୂରଣ ହେବ ।

ଏହି ନୀତି ପ୍ରଣୟନ ସମୟରେ ନୀତି ନିର୍ଦ୍ଧାରଣର ମାନକ ରୂପେ ୧୯ ଗୋଟି ରାଜ୍ୟସ୍ତରୀୟ ଏବଂ ୨୮ ଗୋଟି ଜିଲ୍ଲାସ୍ତରୀୟ ଏପରି ୪୭ଗୋଟି ପରାମର୍ଶକୁ ଆଧାର କରାଯାଇଥିଲା । ଏହି ପରାମର୍ଶଗୁଡିକର ସିଦ୍ଧାନ୍ତକୁ ଆଧାର କରିବା ସହ ଯୋଜନାର ଡେସ୍କ ସମୀକ୍ଷା, ରାଜ୍ୟରେ ଥିବା ବାଳିକା ଓ ମହିଳାମାନଙ୍କ ନିମନ୍ତେ ଗୃହୀତ କାର୍ଯ୍ୟକ୍ରମ ଓ ପଦକ୍ଷେପ ଏବଂ ସ୍ୱାସ୍ଥ୍ୟ ଓ ସାମାଜିକ ବିକାଶ ସୂଚକାଙ୍କଗୁଡିକରେ ଥିବା ଲିଙ୍ଗଗତ ପ୍ରଭେଦକୁ ଦୃଷ୍ଟିରେ ରଖି ଏହି ନୀତିର ମୂଳଭିତ୍ତି ପ୍ରସ୍ତୁତ କରାଯାଇଥିଲା । ଚିଠା ନୀତି ପ୍ରଣୟନ କାଳରେ ଏହା ବିଭିନ୍ନ ବିଭାଗୀୟ ପରାମର୍ଶ ଲୋଡିଥିଲା ଏବଂ ପ୍ରତ୍ୟେକ ବିଭାଗ ଆଧାରରେ ନିର୍ଦ୍ଦିଷ୍ଟ ନୀତି ନିର୍ଦ୍ଦେଶାବଳୀ ଉପରେ ତଥ୍ୟ ଆହରଣ ସକାଶେ ବୈଠକମାନ ଅନୁଷ୍ଠିତ ହୋଇଥିଲା । ଏହି ନୀତି ନିର୍ଦ୍ଧାରଣର ପ୍ରକ୍ରିୟାରେ ନାଗରିକ ସମାଜ ସଂଗଠନର ସଦସ୍ୟ, କ୍ଷେତ୍ରୀୟ ଅଭିଜ୍ଞ ବ୍ୟକ୍ତିବିଶେଷ, ଶିକ୍ଷିତ ବର୍ଗ, ଛାତ୍ରଛାତ୍ରୀ, ସରକାରୀ କ୍ଷେତ୍ରୀୟ ଅଧିକାରୀଙ୍କର ଅବଦାନ ରହିଥିଲା ।

୭ ଗୋଟି କେନ୍ଦ୍ରୀୟ ବିଭାଗରେ ଥିବା କେତେକ ପ୍ରମୁଖ ସୁପାରିଶ:

**୧. ଜୀବନଧାରଣ, ସ୍ୱାସ୍ଥ୍ୟ ଏବଂ ପୁଷ୍ଟି ସାଧନ**

(କ) ନିର୍ଦ୍ଦିଷ୍ଟ କ୍ଷେତ୍ରୀୟ କାର୍ଯ୍ୟାନୁଷ୍ଠାନଭିତ୍ତିକ ଯୋଜନାଗୁଡିକ ଜରିଆରେ ପ୍ରତିକୂଳ ଶିଶୁ ଲିଙ୍ଗଗତ ଅନୁପାତର ସମାଧାନ, ପ୍ରି କନ୍‌ସେପ୍‌ସନ୍ ଏଣ୍ଡ୍ ପ୍ରି ନାଟାଲ୍ ଡାୟାଗ୍ନୋଷ୍ଟିକ୍ ଟେକ୍ନିକ୍ୟୁଜ୍ (ପିସିପିଏନ୍‌ଡିଟି) ଆକ୍ଟ, ୧୯୯୪ର ସକ୍ରିୟ

କାର୍ଯ୍ୟକାରିତା ଏବଂ ବାଳିକାମାନଙ୍କର ମୂଲ୍ୟବୋଧଭିତ୍ତିକ ଉନ୍ନତି ଦିଗରେ ଗୋଷ୍ଠୀଗତ ପ୍ରଚେଷ୍ଟା ସକାଶେ ପ୍ରଚାରପ୍ରସାର ଆୟୋଜନ ।

(ଖ) ଯୌନଗତ, ଗର୍ଭଧାରଣ କାଳୀନ ସ୍ୱାସ୍ଥ୍ୟ ସମସ୍ୟା, ବୟସ ପୂର୍ବରୁ ବିବାହ ଏବଂ ଗର୍ଭଧାରଣକୁ ରୋକିବା ଦିଗରେ ନିର୍ଦ୍ଦିଷ୍ଟ ପଦକ୍ଷେପ ସହ ସୁବିଧାସୁଯୋଗ ଓ ଗୋଷ୍ଠୀଭିତ୍ତିକ କାର୍ଯ୍ୟକ୍ରମ ଜରିଆରେ କିଶୋରୀମାନଙ୍କ ସ୍ୱାସ୍ଥ୍ୟର ଉନ୍ନତି ।

(ଗ) ଆଦୃତି ଲାଭ କରିଥିବା ‘ମମତା’ ଯୋଜନାରେ କନ୍ୟା ସନ୍ତାନ ଜନ୍ମକୁ ପ୍ରୋତ୍ସାହିତ କରିବା ଓ ପିଭିଟିଜି ଅନ୍ତର୍ଗତ ଆଦିବାସୀ ହିତାଧିକାରୀଙ୍କ ନିମନ୍ତେ ବିବାହର ପ୍ରଥମ ପାଂଚ ବର୍ଷ ମଧ୍ୟରେ ଦୁଇଟି ସନ୍ତାନ ଜନ୍ମ ପାଇଁ ଥିବା ସର୍ତ୍ତ କୋହଳ ।

(ଘ) ନିରାପଦ ପ୍ରସବ ବିଶେଷକରି ଅନୁନ୍ନତ ଅଂଚଳରେ ଏପରି ନିରାପଦ ପ୍ରସବ ପାଇଁ ଅନୁକୂଳ ପରିବେଶ ସୃଷ୍ଟି ଦ୍ୱାରା ମାତୃ ମୃତ୍ୟୁହାର ହ୍ରାସ । ମାତୃ ମୃତ୍ୟୁ ଜନିତ ତଥ୍ୟ ସଂପର୍କରେ ବାଧ୍ୟବାଧକତା ।

(ଚ) ସଚେତନତା ସୃଷ୍ଟି ଉଦ୍ଦେଶ୍ୟରେ କାର୍ଯ୍ୟକ୍ରମର ପରିଚାଳନା ଓ ପରିସର ବୃଦ୍ଧି, ଗର୍ଭାଶୟ ଏବଂ ସ୍ତନ କର୍କଟର ପ୍ରତିଷେଧକ ଏବଂ ଚିକିତ୍ସା ବ୍ୟବସ୍ଥା।

**୨. ଶିକ୍ଷା**

(କ) ପ୍ରତି ବ୍ଲକ୍‌ରେ କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ ପରି ଆବାସିକ ସୁବିଧା ପ୍ରଦାନ ଏବଂ ପୂର୍ବରୁ ଥିବା କେଜିବିଭିଗୁଡିକର ସାମର୍ଥ୍ୟ ବୃଦ୍ଧି କରି ମାଧ୍ୟମିକ ସ୍ତରକୁ ଉନ୍ନୀତ କରିବା ।

(ଖ) ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକସ୍ତରୀୟ ସମସ୍ତ ବାଳିକାମାନଙ୍କୁ ପ୍ରୋତ୍ସାହନ ମୂଳକ ମାଗଣା ପାଠ୍ୟପୁସ୍ତକ ବଣ୍ଟନ, ୟୁନିଫର୍ମ ପ୍ରଦାନ, ନିରାପଦ ଗମନାଗମନର ସୁବିଧା ଏବଂ ବିଦ୍ୟାଳୟ ଦେୟ ଛାଡ ।

(ଗ) ଉଚ୍ଚ ମାଧ୍ୟମିକ ଓ ତତ୍‌ପରବର୍ତ୍ତୀ ଶିକ୍ଷା ଲାଭ ନିମନ୍ତେ ବାଳିକାମାନଙ୍କୁ ମେଧା ଏବଂ ଆର୍ଥିକ ଦୃଷ୍ଟିକୋଣରୁ ବିଚାର କରି ଛାତ୍ରବୃତ୍ତି ପ୍ରଦାନ ।

(ଘ) ଜୁନିଅର୍ କଲେଜ, ଡିଗ୍ରୀ କଲେଜ ଓ ବିଶ୍ୱ ବିଦ୍ୟାଳୟର ବାଳିକାମାନଙ୍କ ନିମନ୍ତେ ପାଂଚ ବର୍ଷ ପାଇଁ ଆବାସିକ ସୁବିଧା ବୃଦ୍ଧି ।

(ଚ) ଉପଯୁକ୍ତ ପଦକ୍ଷେପ ଜରିଆରେ ଶିକ୍ଷାନୁଷ୍ଠାନଗୁଡିକର ବାଳିକା ଓ ମହିଳାମାନଙ୍କର ନିରାପତ୍ତାକୁ ସୁନିଶ୍ଚିତ କରିବା ଲକ୍ଷ୍ୟରେ ଏକ ବଳିଷ୍ଠ ନୀତି ପ୍ରଣୟନ । ଅଧିକ ସଂଖ୍ୟକ ଛାତ୍ରୀ ଥିବା ଶିକ୍ଷାନୁଷ୍ଠାନ ପରିସରରେ ପର୍ଯ୍ୟାପ୍ତ ମହିଳା କର୍ମଚାରୀ ମୁତୟନ । ମାନ୍ୟକ୍ରମର ଉନ୍ନତି, ଛାତ୍ରୀଙ୍କ ଉଦ୍ଦେଶ୍ୟରେ ଗ୍ରହଣ କରାଯାଇଥିବା ସମସ୍ତ ପଦକ୍ଷେପଗୁଡିକର ତଦାରଖ ଏବଂ କୌଣସି ଅସଦାଚରଣ ସଂପର୍କରେ ଜଣାଇବା ।

**୩. ଜୀବିକା**

**ଆନୁଷ୍ଠାନିକ କ୍ଷେତ୍ର**

(କ) ମହିଳାମାନଙ୍କର କୌଶଳ ବୃଦ୍ଧି ଏବଂ ନିଯୁକ୍ତି ସମ୍ବନ୍ଧିତ ପ୍ରଶିକ୍ଷଣକୁ ପ୍ରୋତ୍ସାହିତ ଓ ତଦାରଖ କରିବା ନିମନ୍ତେ ଓଡିଶା ରାଜ୍ୟ ନିଯୁକ୍ତି ମିଶନ୍‌ରେ ଏକ ଉତ୍ସର୍ଗୀକୃତ ୟୁନିଟ୍ ସ୍ଥାପନ ।

(ଖ) ସରଳ କାର୍ଯ୍ୟ ନିର୍ଘଣ୍ଟ, ମାତୃତ୍ୱ ସମୟର ସହାୟତା, ଶିଶୁ ଯତ୍ନ ସହାୟତା, ସ୍ୱତନ୍ତ୍ର ଶୌଚାଳୟ ଏବଂ କାର୍ଯ୍ୟକ୍ଷେତ୍ରରେ ନର୍ସରୀ ସୁବିଧା ଦିଗରେ କାର୍ଯ୍ୟକ୍ରମ ।

**ଅଣଆନୁଷ୍ଠାନିକ କ୍ଷେତ୍ର**

(ଗ) ମହିଳା କୃଷକମାନଙ୍କୁ ପ୍ରୋତ୍ସାହିତ କରିବା । ମହିଳା କୃଷକମାନଙ୍କ ପାଇଁ କୃଷି ସଂପର୍କିତ କାର୍ଯ୍ୟକଳାପରେ ବୈଷୟିକ କୌଶଳ ବୃଦ୍ଧି ଉଦ୍ଦେଶ୍ୟରେ ସଂପୂର୍ଣ୍ଣ ପ୍ରାଧାନ୍ୟ ।

(ଘ) ଶସ୍ୟ, ଆର୍ଥିକ ସେବା, ପ୍ରଯୁକ୍ତି, ନିବେଶ ତଥା ବଜାର ସମ୍ବନ୍ଧରେ ମହିଳା କୃଷକମାନଙ୍କୁ ବ୍ୟାପକ ସହାୟତା ଯୋଗାଇଦେବା ନିମନ୍ତେ ଏକକ ବାତାୟନ ବ୍ୟବସ୍ଥା ।

(ଚ) ମହିଳାମାନଙ୍କ ପାଇଁ ଗୋଷ୍ଠୀକେନ୍ଦ୍ରିତ ଜୀବିକା ଉପରେ ଗୁରୁତ୍ୱ ଦେଇ ଗ୍ରାମ ସ୍ତରରେ ସମ୍ବଳ କେନ୍ଦ୍ରକୁ ପ୍ରୋତ୍ସାହନ ।

(ଛ) ବାଳିକା ଓ ମହିଳାମାନଙ୍କର ଅଧିକାର ଓ ସେମାନଙ୍କୁ ପ୍ରଦତ୍ତ ବିଶେଷ ସୁବିଧାର ସୁରକ୍ଷା ନିମନ୍ତେ ସେମାନଙ୍କୁ ସକ୍ଷମ କରିବା ନିମନ୍ତେ ଉତ୍ସ ଓ ଲକ୍ଷ୍ୟ ସ୍ଥଳରେ ବାହ୍ୟ ସହାୟତା ପ୍ରଦାନ ।

(ଜ) କୁଟୀର ଶିଳ୍ପ, ପାରମ୍ପରିକ ହସ୍ତଶିଳ୍ପ, ହସ୍ତତନ୍ତ ଏବଂ କୌଳିକ ବୃତ୍ତି ଯଥା ମତ୍ସ୍ୟଚାଷ, ଗୋପାଳନ, କୁକୁଡା ପାଳନ ଓ ପ୍ରାଣୀସଂପଦ କ୍ଷେତ୍ରରେ ତାଲିମ୍ ଏବଂ ବୈଷୟିକ କୌଶଳକୁ ପ୍ରୋତ୍ସାହନ ।

**୪. ସଂପତ୍ତି ମାଲିକାନା**

(କ) ମହିଳାମାନଙ୍କ ନାମରେ କ୍ରୟ ହୋଇଥିବା ଜମି ଓ ଗୃହ ଏବଂ ସେମାନଙ୍କୁ ଉପହାର ସ୍ୱରୂପ ପ୍ରଦତ୍ତ ସ୍ଥାବର ସଂପତ୍ତି ଦଲିଲ୍‌ର ପଂଜୀକରଣ ନିମନ୍ତେ ଷ୍ଟାମ୍ପ ଶୁଳ୍କ ହ୍ରାସ ।

(ଖ) ଗ୍ରାମାଚଂଳରେ ଥିବା ସ୍ୱଳ୍ପ ରୋଜଗାରୀ ମହିଳା, ଯେଉଁମାନଙ୍କର କୌଣସି ଗୃହ/ଫ୍ଲାଟ୍ କିମ୍ବା ବାସୋପଯୋଗୀ ଜମି ନଥିବ ଅଥବା ସେମାନେ (କ) ୪୫ ବର୍ଷ କିମ୍ବା ତଦୂର୍ଦ୍ଧ୍ୱ ବୟସର ବିଧବା, ଅବିବାହିତା, କୋର୍ଟ କିମ୍ବା ପ୍ରଥା ଜନିତ ଆଦେଶ ବଳରେ ଛାଡପତ୍ର ପାଇଥିବା ମହିଳା କିମ୍ବା ସ୍ୱାମୀ ପରିତ୍ୟକ୍ତା ହୋଇଥିବେ କିମ୍ବା (ଖ) ଯେଉଁ ମହିଳାମାନେ ୩୦ ବର୍ଷ ବା ତଦୂର୍ଦ୍ଧ୍ୱ ବୟସର ଏବଂ ସେମାନେ ୪୦ ପ୍ରତିଶତରୁ ଅଧିକ ଭିନ୍ନକ୍ଷମ ହୋଇଥିବେ ସେମାନଙ୍କୁ ୪ ଡିସିମିଲ୍ ପରିମିତ ବାସୋପଯୋଗୀ ଜମି ପ୍ରଦାନ ।

(ଗ) ଉତ୍ପାଦନଭିତ୍ତିକ କାର୍ଯ୍ୟକ୍ରମ ନିମନ୍ତେ ମହିଳା ଗୋଷ୍ଠୀଙ୍କ କ୍ଷେତ୍ରରେ ସ୍ୱଳ୍ପ ଦରରେ ଜମି ଲିଜ୍ ବୃଦ୍ଧି । କୃଷି ଓ ଉଦ୍ୟାନକୃଷି ଉଦ୍ଦେଶ୍ୟରେ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ସାମୟିକ ଲିଜ୍ ଆଧାରରେ ଚାଷୋପଯୋଗୀ ସରକାରୀ ଜମି ପ୍ରଦାନ ।

**୫. ନିଷ୍ପତ୍ତି ଗ୍ରହଣ, ଅଂଶ ଗ୍ରହଣ ଏବଂ ରାଜନୈତିକ ପ୍ରତିନିଧିତ୍ୱ**

(କ) ଗ୍ରାମ ପଂଚାୟତ ସ୍ତରରେ ମହିଳା ସଭା ଗଠନ, ପଲ୍ଲୀ ଏବଂ ଗ୍ରାମସଭାରେ ଅଂଶଗ୍ରହଣକୁ ପ୍ରୋତ୍ସାହନ । ବାଳିକା ଓ ମହିଳାମାନଙ୍କ ସମସ୍ୟା ତଥା ସେମାନଙ୍କ କ୍ଷେତ୍ରରେ ଘଟୁଥିବା ହିଂସାକୁ ପଲ୍ଲୀସଭା ଓ ଗ୍ରାମସଭାରେ ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ରୂପେ ଉପସ୍ଥାପନ ।

(ଖ) ମହିଳାମାନଙ୍କୁ ପ୍ରତ୍ୟକ୍ଷ ଅଂଶଗ୍ରହଣରୁ ବଂଚିତ କରୁଥିବା କୌଣସି ବାଛବିଚାରକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ଓଡିଶା ଗ୍ରାମ ପଂଚାୟତ, ପଂଚାୟତ ସମିତି ଏବଂ ଜିଲ୍ଲା ପରିଷଦ ନିୟମ ଓ ଅଧିନିୟମରେ ଯଥୋଚିତ ସଂଶୋଧନ ।

(ଗ) ବିଭିନ୍ନ କ୍ଷେତ୍ରରେ ସଫଳତା ହାସଲ କରିଥିବା ମହିଳାମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ୱୀକୃତି ଓ ପୁରସ୍କାରର ପ୍ରଚଳନ ।

**୬. ନିରାପତ୍ତା ଓ ସୁରକ୍ଷା**

(କ) ବାଳିକା ଓ ମହିଳାମାନଙ୍କ କ୍ଷେତ୍ରରେ ଘଟୁଥିବା ହିଂସା ସଂପର୍କିତ ଘଟଣାଗୁଡିକର ନିରାକରଣ, ତଦାରଖ ଏବଂ ତଦନ୍ତ ସହାୟତା ନିମନ୍ତେ ଗୃହ ବିଭାଗରେ ଏକ କ୍ଷମତାପ୍ରାପ୍ତ ୟୁନିଟ୍ ପ୍ରତିଷ୍ଠା ।

(ଖ) ହିଂସାର ଶୀକାର ହୋଇଥିବା ମହିଳାମାନଙ୍କ ନିମନ୍ତେ ୱାନ୍ ଷ୍ଟପ୍ କ୍ରାଇସିସ୍ ସେଣ୍ଟର୍ ପ୍ରତିଷ୍ଠା । ବାଳିକା ଓ ମହିଳାମାନଙ୍କ ବିରୁଦ୍ଧରେ ଘଟୁଥିବା ଯୌନ ଉତ୍ପୀଡନ କ୍ଷେତ୍ରରେ ଉପଯୁକ୍ତ ଚିକିତ୍ସା–ନ୍ୟାୟିକ ସହାୟତା ନିମନ୍ତେ ଉଚିତ୍ ପଦକ୍ଷେପ ଗ୍ରହଣ ।

(ଗ) ହିଂସାର ଶୀକାର ହୋଇଥିବା ବାଳିକା ଓ ମହିଳାମାନଙ୍କୁ ପରାମର୍ଶ ଦେବା, ସେମାନଙ୍କର ନିରାପଦ ରହଣୀ, ପୁନଃ ଥଇଥାନ ଏବଂ ସାମାଜିକ ସହାବସ୍ଥାନ ପାଇଁ ତଥା ସେମାନଙ୍କ ସୁରକ୍ଷା ନିମନ୍ତେ ଏକ ଯୋଜନାର ପ୍ରଣୟନ ଓ କାର୍ଯ୍ୟକାରିତା ।

(ଘ) ବିବାହର ସାର୍ବଜନୀନ ପଂଜୀକରଣ ନିମନ୍ତେ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ ।

(ଚ) ହିଂସା ଘଟଣା ଏବଂ ବାଳିକା ଓ ମହିଳା ଚାଲାଣ ସଂପର୍କରେ ଅନୁସନ୍ଧାନ, ତଦାରଖ ଓ ବିବରଣୀ ପ୍ରଦାନ କରିବା ପାଇଁ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଆଇନ୍‌ଗତ ସହାୟତା ଯୋଗାଇ ଦେଉଥିବା କର୍ମୀ ରୂପେ ସାମିଲ୍ କରିବା ଏବଂ ଗୋଷ୍ଠୀସ୍ତରୀୟ ମଂଚ ଗଠନ ନିମନ୍ତେ ପ୍ରୋତ୍ସାହନ ଦେବା ।

**୭. ସ୍ୱତନ୍ତ୍ର ଆବଶ୍ୟକତା ଅନୁଭବ କରୁଥିବା ବାଳିକା ଓ ମହିଳା**

(କ) ଅନାଥ ଶିଶୁ ଓ ପରିତ୍ୟକ୍ତ ବାଳିକାମାନଙ୍କର ଯତ୍ନ, ସୁରକ୍ଷା, ଶିକ୍ଷା ଓ ସାମଗ୍ରିକ ବିକାଶ ନିମନ୍ତେ ସର୍ବାଧିକ ଗୁରୁତ୍ୱ ପ୍ରଦାନ ।

(ଖ) ସ୍ୱତନ୍ତ୍ର ସହାୟତା ଲୋଡୁଥିବା ବାଳିକା ଓ ମହିଳାମାନଙ୍କ ଯଥାଯଥ ନିଯୁକ୍ତି ପାଇଁ ନିଯୁକ୍ତି ସୁଯୋଗ ଥିବା କୌଶଳ ବୃଦ୍ଧି ଓ ପ୍ରଶିକ୍ଷଣ ପାଠ୍ୟକ୍ରମରେ ନାମଲେଖା ନିମନ୍ତେ ସ୍ୱତନ୍ତ୍ର ପଦକ୍ଷେପ ଗ୍ରହଣ ଏବଂ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ପ୍ରଚଳନ । ଦୁଃଖରେ କାଳାତିପାତ କରୁଥିବା, ବିଭିନ୍ନ ଅନୁଷ୍ଠାନରେ ଥିବା, ପୂର୍ବ ପରିଚିତ ଏବଂ ନ୍ୟାୟ ପାଇଁ ଲଢେଇ କରୁଥିବା ବାଳିକା ଓ ମହିଳାମାନଙ୍କୁ ଏହି କାର୍ଯ୍ୟକ୍ରମରେ ସାମିଲ୍ କରିବା ସହ ସେମାନଙ୍କ ସମସ୍ୟା ସମାଧାନ ସକାଶେ ସ୍ୱତନ୍ତ୍ର ପଦକ୍ଷେପ ।

(ଗ) ଭିନ୍ନକ୍ଷମ ମହିଳା ସାମିଲ୍ ଥିବା ସ୍ୱୟଂ ସହାୟକ ଗୋଷ୍ଠୀ, ସହରାଚଂଳ ବସ୍ତିବାସିନ୍ଦା ମହିଳା, ସଂଖ୍ୟାଲଘୁ ସଂପ୍ରଦାୟର ମହିଳା, ଦୁର୍ଦ୍ଦଶା ତଥା ସମସ୍ୟା ଜର୍ଜରିତ ମହିଳା ଏବଂ ବିଭିନ୍ନ ଅନୁଷ୍ଠାନରେ ଆଶ୍ରୟ ନେଇଥିବା ମହିଳାଙ୍କ ସାମୂହିକ ଅଭିବୃଦ୍ଧିକୁ ପ୍ରୋତ୍ସାହନ ।

❖ ❖ ❖



# ପ୍ରଗତିର ପରିଭାଷା : ଓଡ଼ିଶା

- ‘ବିଜୁ କୃଷକ କଲ୍ୟାଣ ଯୋଜନା’ରେ ରାଜ୍ୟର ସମସ୍ତ କୃଷକ/କୃଷି ଶ୍ରମିକ ପରିବାରର ୫ଜଣ ସଦସ୍ୟଙ୍କ ପାଇଁ ୧ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ମାଗଣା ସ୍ୱାସ୍ଥ୍ୟ ବୀମା ସୁବିଧା ।

- ଆସନ୍ତା ୫ ବର୍ଷ ମଧ୍ୟରେ ଅତିରିକ୍ତ ୧୦ ଲକ୍ଷ ହେକ୍ଟର ଚାଷଜମି ପାଇଁ ଜଳସେଚନ ସୁବିଧା ।

- ଅତ୍ୟାଧୁନିକ ଆଶୁ ଚିକିତ୍ସା ଉପକରଣ ଓ ପ୍ରଶିକ୍ଷିତ ସ୍ୱାସ୍ଥ୍ୟ କର୍ମଚାରୀଙ୍କ ସହ ସାର୍ବଜନୀନ ମାଗଣା ୧୦୮ ଜରୁରୀକାଳୀନ ଆମ୍ବୁଲାନ୍ସ ସେବା ସହିତ ଗର୍ଭବତୀ ଓ ନବଜାତଙ୍କ ପାଇଁ ୧୦୨ ଆମ୍ବୁଲାନ୍ସ ସେବା ଆରମ୍ଭ ।

- ଓଡ଼ିଶା ରାଜ୍ୟ ସ୍ୱାସ୍ଥ୍ୟ ସେବା ନିଗମ ଜରିଆରେ ଜନସାଧାରଣଙ୍କୁ ମାଗଣା ଔଷଧ ବିତରଣ ।

- ମାରାତ୍ମକ ରୋଗରେ ପୀଡ଼ିତ ରୋଗୀଙ୍କୁ ‘ଓଡ଼ିଶା ରାଜ୍ୟ ଚିକିତ୍ସା ପାଣ୍ଠି’ରୁ ୩ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଚିକିତ୍ସା ସହାୟତା ପ୍ରଦାନ। ରାଜ୍ୟ ଚିକିତ୍ସା ପାଣ୍ଠି ଓ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ମିଳୁଥିବା ସହାୟତା ରାଶି ବୃଦ୍ଧି ଏବଂ ଘରୋଇ ହାସପାତାଳରେ ବିପିଏଲ୍ ପରିବାର ପାଇଁ ବିନା ମୂଲ୍ୟରେ ଚିକିତ୍ସା ସୁବିଧା ।

- ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଛାତ୍ରୀଙ୍କୁ ମାଗଣା ପାଠ୍ୟ ପୁସ୍ତକ ଓ ସ୍କୁଲ ପୋଷାକ ଯୋଗାଣ ଏବଂ ବିଦ୍ୟାଳୟ ଶିକ୍ଷାକୁ ଜାରି ରଖିବା ଉଦ୍ଦେଶ୍ୟରେ ୧୦ମ ଶ୍ରେଣୀରେ ପଢୁଥିବା ଛାତ୍ରଛାତ୍ରୀମାନଙ୍କୁ ମାଗଣା ସାଇକେଲ ପ୍ରଦାନ । ନିର୍ମାଣ ଶ୍ରମିକ ଓ ମତ୍ସ୍ୟଜୀବୀ ପରିବାରର ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷା ସୁଯୋଗ ଯୋଗାଇଦେବା ନିମନ୍ତେ ଆର୍ଥିକ ସହାୟତା ପ୍ରଦାନ ।

- ରାଜ୍ୟର ୫୮ ଲକ୍ଷ ହିତାଧିକାରୀ ପରିବାରକୁ ଖାଦ୍ୟ ନିରାପତ୍ତା ନିଶ୍ଚିତ କରିବା ପାଇଁ କିଲୋ ପିଛା ୧ ଟଙ୍କା ଦରରେ ଚାଉଳ ଯୋଗାଣ । ସାଧାରଣ ବଣ୍ଟନ ବ୍ୟବସ୍ଥାର ସଂପ୍ରସାରଣ।

- ଅନାଥ ଓ ଅସହାୟ ଶିଶୁଙ୍କ ଉପଯୁକ୍ତ ଥଇଥାନ ନିମନ୍ତେ ‘ବିଜୁ ବାଳବିକାଶ ଯୋଜନା’ ଆରମ୍ଭ ।

- ଗ୍ରାମ୍ୟ ସଂଯୋଗୀକରଣ ସୁଦୃଢ଼ କରିବା ପାଇଁ ‘ବିଜୁ ସେତୁ ଯୋଜନା’ରେ ସଂଖ୍ୟାଧିକ ସେତୁ ନିର୍ମାଣ । ଅନ୍ୟ କୌଣସି ସଡ଼କ ନିର୍ମାଣ ଯୋଜନାରେ ଅନ୍ତର୍ଭୁକ୍ତ ହୋଇପାରୁ ନଥିବା ଗ୍ରାମଗୁଡ଼ିକରେ ଯୋଗାଯୋଗ ବ୍ୟବସ୍ଥାକୁ ନିଶ୍ଚିତ କରିବା ଲକ୍ଷ୍ୟରେ ‘ମୁଖ୍ୟମନ୍ତ୍ରୀ ସଡ଼କ ଯୋଜନା’ ଆରମ୍ଭ ।

- 'ବିଜୁ ଗ୍ରାମ ଜ୍ୟୋତି ଯୋଜନା'ରେ ୯୦୦୦ରୁ ଊର୍ଦ୍ଧ୍ୱ ଗ୍ରାମ/ବସ୍ତି ବିଦ୍ୟୁତିକରଣ ଏବଂ ସହରାଞ୍ଚଳରେ ବିଦ୍ୟୁତିକରଣ ହୋଇନଥିବା ବସତିଗୁଡ଼ିକୁ 'ବିଜୁ ସହରାଞ୍ଚଳ ବିଦ୍ୟୁତିକରଣ ଯୋଜନା' ଜରିଆରେ ବିଦ୍ୟୁତ ଶକ୍ତି ଯୋଗାଣ ।

- ଜନଜାତି ଅଧ୍ୟୁଷିତ ତଥା ପଛୁଆ ଅଞ୍ଚଳଗୁଡ଼ିକରେ ଗମନାଗମନ ବ୍ୟବସ୍ଥାର ଉନ୍ନତି ଆଣିବା ଲକ୍ଷ୍ୟରେ 'ବିଜୁ ଗାଁ ଗାଡ଼ି ଯୋଜନା' ଆରମ୍ଭ ।

- ଗର୍ଭବତୀ ଏବଂ ପ୍ରସୂତି ମହିଳାଙ୍କୁ ଏକ ଅଭିନବ ଯୋଜନା 'ମମତା' ଜରିଆରେ ୪ଟି କିସ୍ତିରେ ୫୦୦୦ ଟଙ୍କାର କର୍ମନିବୃତ୍ତି ସହାୟତା ପ୍ରଦାନ । ଅଦ୍ୟାବଧି ଏହି ଯୋଜନାରେ ୧୧ ଲକ୍ଷରୁ ଊର୍ଦ୍ଧ୍ୱ ମହିଳା ଉପକୃତ ।

- ବାଳିକା ତଥା ମହିଳାମାନଙ୍କ ସଶକ୍ତିକରଣ ନିମନ୍ତେ 'ବାଳିକା ଓ ମହିଳା ନୀତି' ପ୍ରଣୟନ କରାଯାଇ ନାରୀ ସୁରକ୍ଷା, ସମାନ ଭୂମି ଅଧିକାର ସହିତ ନିମ୍ନ ଆୟ ବର୍ଗର ଘରଡ଼ିହ ନଥିବା ମହିଳାମାନଙ୍କୁ ୪ ଡ଼ିସିମିଲ୍‌ପରିମିତ ଘରଡ଼ିହ ମାଗଣାରେ ପ୍ରଦାନ ଓ ଭିନ୍ନକ୍ଷମ ମହିଳାଙ୍କ ନିମନ୍ତେ ସ୍ୱତନ୍ତ୍ର ସହାୟତା ପ୍ୟାକେଜ।

- 'ନିଯୁକ୍ତି ମିଶନ' ଜରିଆରେ ପ୍ରତିବର୍ଷ ୧.୫ ଲକ୍ଷ ଯୁବକ ଯୁବତୀଙ୍କ ଦକ୍ଷତା ବୃଦ୍ଧି ନିମନ୍ତେ ତାଲିମ ପ୍ରଦାନ ।

- ପ୍ରତ୍ୟେକ ଗ୍ରାମପଞ୍ଚାୟତର ଅନ୍ୟୂନ ୧୫୦ ଜଣ ଯୁବକ ଯୁବତୀଙ୍କ ଦକ୍ଷତା ବୃଦ୍ଧି ଲକ୍ଷ୍ୟରେ 'ମୁଖ୍ୟମନ୍ତ୍ରୀ ନିଯୁକ୍ତି ସୃଷ୍ଟି ଯୋଜନା' ପ୍ରଣୟନ। ଆତ୍ମନିଯୁକ୍ତି ନିମନ୍ତେ ଋଣ ଓ ରିହାତି ବ୍ୟବସ୍ଥା ସହ ରାଜ୍ୟରେ ଗଢ଼ି ଉଠୁଥିବା ଶିଳ୍ପାନୁଷ୍ଠାନମାନଙ୍କରେ ଯୋଗ୍ୟତାଧାରୀ ସ୍ଥାନୀୟ ଯୁବକ ଯୁବତୀଙ୍କୁ ଅଗ୍ରାଧିକାର ଭିତ୍ତିରେ ନିଯୁକ୍ତି ଦେବା ନିମନ୍ତେ ପଦକ୍ଷେପ ଗ୍ରହଣ ।

❖ ❖ ❖

# ସ୍ୱାଧୀନତା ସଂଗ୍ରାମରେ ଗୋବିନ୍ଦପୁରର ଅବଦାନ

ସୁଦାମ ଚରଣ ଜେନା

ସ୍ୱାଧୀନତା ପୂର୍ବରୁ ଦେଶ ଯେ କେଉଁ ଘଡିସନ୍ଧି ମୁହୂର୍ତ୍ତରେ ଗତି କରୁଥିଲା ଅନୁଭବୀ ହିଁ ତାହାକୁ କଳନା କରିପାରିବେ । ସ୍ୱାଧୀନତାର ଏହି ପରବର୍ତ୍ତୀ ସମୟରେ କଟକ ଜିଲ୍ଲାରେ ଜଗତସିଂହପୁର ଓ ଗୋବିନ୍ଦପୁର ମିଶି ଗୋଟିଏ ନିର୍ବାଚନ ମଣ୍ଡଳୀ ଥିଲା । ପରେ ଗୋବିନ୍ଦପୁର ଗୋଟିଏ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ହୋଇଯାଇଥିଲା । ଏହି ନିର୍ବାଚନ ମଣ୍ଡଳୀର ଉତ୍ତାରଣ ପଞ୍ଚାୟତର ଛିଣ୍ଡାକୂଳ ବାବଜାଠାରେ ସଂଗ୍ରାମୀ ମୁରଲୀଧର କାନୁନ୍‌ଗୋଙ୍କର ଜନ୍ମ ହୋଇଥିଲା । ଠିକ୍ ଏହି ପଞ୍ଚାୟତ ଅନ୍ତର୍ଗତ ଅଲିଙ୍ଗ ଗ୍ରାମରେ ଶ୍ରୀ କସ୍ତୁରୀ ଚରଣ ମଲ୍ଲିକ ତିନିବର୍ଷ ସାନରେ ଜନ୍ମ ହୋଇଥିଲେ ।

ପିଲାବେଳୁ ମୁରଲୀଙ୍କଠାରେ ସେବା ମନୋଭାବ ଦେଖିବାକୁ ମିଳିଥିଲା । ସେ ୬ଷ୍ଠ ଶ୍ରେଣୀରେ ପାଠ ପଢିବା ସମୟରେ ଦେଶର ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିଲେ। ସେ ଜଗତସିଂହପୁର ବାଲିକୁଦା ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କରିବା ସମୟରେ ଇଂରେଜମାନଙ୍କ ବିରୁଦ୍ଧାଚରଣ କରିବା ଦ୍ୱାରା ବାଲିକୁଦାର ତତ୍କାଳୀନ ପୋଲିସ ଅଫିସରଙ୍କ ଦ୍ୱାରା ଗିରଫ ହୋଇ ସେହି ସ୍କୁଲରୁ ବିତାଡିତ ହୋଇଥିଲେ ।

ପିତା ବୈରାଗୀ ଚରଣଙ୍କର ସ୍ୱଳ୍ପ ସମ୍ପତ୍ତିରେ ପରିବାର ଚଳିବା ପାଇଁ କଷ୍ଟ ହେଉଥିଲା । ୧୯୨୧ ମସିହା ମାର୍ଚ୍ଚ ମାସ ୨୩ ତାରିଖ ଦିନ ଗାନ୍ଧିଜୀ ଓଡ଼ିଶା ଆସିଥାଆନ୍ତି। କଟକରେ କାଠଯୋଡି ନଦୀ ବାଲିରେ ଏକ ବିରାଟ ସାଧାରଣ ସଭାର ଆୟୋଜନ ହୋଇଥିଲା । ସେହି ସଭାରେ ମନୀଷୀ ଗୋପବନ୍ଧୁଙ୍କ ସଭାପତିତ୍ୱରେ ଗାନ୍ଧିଜୀଙ୍କ ଭାଷଣକୁ ଓଡ଼ିଆରେ ଅନୁବାଦ କରିପାରୁଥିବା ମୁରଲୀଧରଙ୍କ ଦାଦା, ଯେ କି ଢେଙ୍କାନାଳ ରାଜାଙ୍କର ଗୃହ ଶିକ୍ଷକ ଶ୍ରୀଯୁକ୍ତ ନୃସିଂହ ଚରଣ କାନୁନ୍‌ଗୋ ଥିଲେ, ତାହା ହିଁ ମୁରଲୀଙ୍କୁ ବିଶେଷ ଭାବେ ପ୍ରେରଣା ଦେଇଥିଲା ।

ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ୧୯୩୭ ମସିହାରେ ଆରମ୍ଭ ହେଲା ବିରାଟ କୃଷକ ଆନ୍ଦୋଳନ, ଭାଗଚାଷ ଆନ୍ଦୋଳନ ଏବଂ ଜମିଦାରୀ ଉଚ୍ଛେଦ ଓ ଜଳକର ଆନ୍ଦୋଳନ । ଏଥିରେ ମୁରଲୀଧର ଓ ତାଙ୍କ ସ୍ତ୍ରୀ ହାରାମଣୀ ସହଯୋଗ କରିବା ସହିତ ଗୌରାଙ୍ଗ ଚରଣ ଦାସ ମିଶି ତରିକୁନ୍ଦଠାରେ ଓ ତଣ୍ଡିକଣାଠାରେ ଏକ ଗୁପ୍ତ କେନ୍ଦ୍ର ସ୍ଥାପନ କରି ସମସ୍ତ ଗୁପ୍ତ ତଥ୍ୟ ଇଂରେଜମାନଙ୍କର ସଂଗ୍ରହ କରି ସଂଗ୍ରାମୀମାନଙ୍କୁ ଅବଗତ କରାଉଥିଲେ । ତରିକୁନ୍ଦର ଗୁପ୍ତ କେନ୍ଦ୍ରକୁ ନବକୃଷ୍ଣ ଚୌଧୁରୀ, ପ୍ରାଣକୃଷ୍ଣ ପଢିଆରୀ ପରିଚାଳନା କରୁଥିଲେ । ତଣ୍ଡିକଣାଠାରେ ସ୍ଥାପିତ ଗୁପ୍ତକେନ୍ଦ୍ରକୁ ନୀଳମଣି ପ୍ରଧାନ ଓ ମୁରଲୀବାବୁ ପରିଚାଳନା କରୁଥିଲେ । ତାଙ୍କୁ ସାହାଯ୍ୟ ପାଇଁ ବିଷ୍ଣୁ ଚରଣ ମୁଦାଲି, ବିଚ ଚୌଧୁରୀ, ବିଭୁତି ଆଚାର୍ଯ୍ୟ ଓ ଅଟଳ କାନୁନ୍‌ଗୋ ପ୍ରଭୃତି ଥିଲେ ।

୧୯୩୮ ମସିହା ଡିସେମ୍ବର ୩ ତାରିଖ ଦିନ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ରାଧାନାଥ ବାବୁ ଓ ଗୌରାଙ୍ଗ ଚରଣ ଦାସ, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ଢେଙ୍କାନାଳଠାରେ ଜାତୀୟ ପତାକା ଉଡାଇ ଏକ ବିରାଟ ଶୋଭାଯାତ୍ରା କରିଥିଲେ । ସେହିବର୍ଷ ଗାନ୍ଧିଜୀ ୯ ତାରିଖରୁ ୧୫ ତାରିଖ ପର୍ଯ୍ୟନ୍ତ ବାଲିଅନ୍ତା ବ୍ଲକ୍‌ଠାରେ ପଦଯାତ୍ରା କରାଇ ଥିଲେ। ଏହା ଥିଲା ପ୍ରଥମ ହରିଜନ ସମାବେଶ ।

ମୁରଲୀବାବୁଙ୍କ ଜନ୍ମସ୍ଥାନ ଉତ୍ତାରଣ ହୋଇଥିଲେ ମଧ୍ୟ ସେ ସୁନ୍ଦରଗ୍ରାମ ତାଙ୍କ ପିଉସାଙ୍କ ଘରେ ରହି ଆନ୍ଦୋଳନରେ ଯୋଗ ଦେଉଥିଲେ।

୧୯୪୨ ଭାରତଛାଡ଼ ଆନ୍ଦୋଳନ ସମୟର କଥା । ଅଗଷ୍ଟ ୯ ତାରିଖ 'କର ବା ମର' ଘଡିସନ୍ଧି ବେଳ । ଯୁବକ କସ୍ତୁରୀ ଚରଣ କଲେଜ ପାଠଛାଡ଼ି ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ଦଳିତ ସମାଜର ନେତା ଥିଲେ । ୧୯୩୩

ମସିହାରେ କଣ୍ଟୁରୀ ସମାଜ ସେବାରେ ନିଜକୁ ନିୟୋଜନ କଲେ । ବନ୍ୟା ସମୟରେ କଣ୍ଟୁରୀଙ୍କ କାର୍ଯ୍ୟକଳାପ ନବକୃଷ୍ଣ ବାବୁ ଦେଖିଥିଲେ ଓ ତାଙ୍କ ଉପରେ ଅତ୍ୟନ୍ତ ଖୁସି ଥିଲେ ।

୧୯୪୨ ମସିହାରେ ଯେତେବେଳେ ସ୍ୱାଧୀନତା ଆନ୍ଦୋଳନ, ସେହି ସମୟରେ କଟକରୁ ମଥୁରୀ ବାବୁ, ବ୍ରହ୍ମପୁରରୁ ଦିବାକର ପଟ୍ଟନାୟକ ଓ ଅନେକ କଂଗ୍ରେସ ନେତା ବ୍ରହ୍ମପୁର ଜେଲ୍‌ରେ ଜାତୀୟ ପତାକା ଉତ୍ତୋଳନ କରାଇ ଚାରିପଟୁ ଘେରି ରହିଥିଲେ। ଏମାନଙ୍କୁ ନବବାବୁ ଓ ବିଶ୍ୱନାଥ ଦାସ ପ୍ରଭୃତି ସାହାଯ୍ୟ କରୁଥିଲେ ।

ତଣ୍ଡିକଣାଠାରୁ ତରିକୁନ୍ଦ ଗୁପ୍ତକେନ୍ଦ୍ରକୁ ଲିଫ୍‌ଲେଟ୍ ନେଇ କଣ୍ଟୁରୀ ବାବୁଙ୍କ ସହିତ ଗୋବିନ୍ଦ ମହାନ୍ତି, ବିଭୁତି ଆଚାର୍ଯ୍ୟ, ବର୍ସାଣି ସେନ୍‌ଗୁପ୍ତ ପ୍ରମୁଖ ସହଯୋଗ କରୁଥିଲେ । ସେଠାରେ ଏକ ସଭା କରାଯାଇ ନିଆଳି ଡାକବଙ୍ଗଳାକୁ ନିଆଁ ଲଗାଇ ପୋଡି ଦେଇଥିଲେ । ୧୯୪୬ରେ ସର୍ବାଣୀ ସେନ୍‌ଗୁପ୍ତ, ମୁରଲୀବାବୁ ଓ ଗୌରାଙ୍ଗବାବୁ ଗିରଫ ହୋଇ ଜେଲ୍ ଗଲେ । ୧୯୩୨ରୁ ୧୯୪୬ ପର୍ଯ୍ୟନ୍ତ ସେ ୫/୬ଥର ଜେଲ୍ ଯାଇଥିଲେ ।

ସେତେବେଳେ ଧୋୟା ଅଞ୍ଚଳରେ ବନ୍ୟାର ପ୍ରକୋପ । ଲୋକେ ଅକଥନୀୟ ହଇରାଣ ହରକତ ହେଉଥିଲେ । ଧୋୟା ୭୨ ମୌଜା ଲୋକଙ୍କ କଥା ଭାବି ଭାବି ମୁରଲୀ ବାବୁଙ୍କୁ ଶାନ୍ତି ମିଳୁ ନଥିଲା ।

ଚୀନ୍ ଭାରତ ଯୁଦ୍ଧ ସରି ସରି ଯାଇଥାଏ । ୧୯୬୨ ମସିହା କଥା । ଉତ୍ତାରଣ ପଞ୍ଚାୟତର ଗ୍ରୀନ୍ ଗୋଲାପଡିଆ ବିଶାଳ ଜନ ସମୁଦ୍ରରେ ପରିଣତ ହୋଇଗଲା । ସେ ଅନଶନ ଆରମ୍ଭ କଲେ, ଯାହାକି ଛିଣ୍ଡା ନଦୀ ମୁହଁକୁ ବନ୍ଦ କଲେ ୭୨ ମୌଜା ଲୋକେ ଶାନ୍ତିରେ ରହିପାରିବେ । ସେତେବେଳେ ମନ୍ତ୍ରୀ ବୀରେନ୍ ବାବୁଙ୍କୁ ଯୁବନେତା ଅଟଳ କାନୁନ୍‌ଗୋ ଓ ଅନ୍ୟ ବନ୍ଧୁମାନେ ଯାଇ ସାହାଯ୍ୟ ଭିକ୍ଷା କରିଥିଲେ। ସେ ଯାହାହେଉ ଏଥିରେ ସୁରେନ୍ଦ୍ର ପଟ୍ଟନାୟକ ଓ ପବିତ୍ର ମୋହନ ପ୍ରଧାନ ସାହାଯ୍ୟ ସହଯୋଗ କରି ଛିଣ୍ଡାନଦୀ ମୁହଁ ବନ୍ଦ କରିଥିବାରୁ ଲୋକେ ଧୋୟା ଗାନ୍ଧୀ ବୋଲି ମୁରଲୀ ବାବୁଙ୍କୁ କୁହନ୍ତି ।

ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ମୁରଲୀବାବୁ ଜନକଂଗ୍ରେସ ଦଳରୁ ନିର୍ବାଚିତ ହୋଇଥିଲେ । ସେ କଟକ ଲୋକାଲ ବୋର୍ଡର ସଦସ୍ୟ ଥିଲେ । ତାଙ୍କ ରାଜନୈତିକ ଜୀବନ କଟକର ସ୍ୱରାଜ୍ୟ ଆଶ୍ରମ ଓ ରାଧାନାଥଙ୍କ ସମାଜ ଅଫିସ କାର୍ଯ୍ୟାଳୟରେ କଟିଥିଲା । କଣ୍ଟୁରୀବାବୁ ୧୯୪୮ ମସିହାଠାରୁ ପ୍ରିୟନାଥ ଦେ'ଙ୍କ ସହିତ ମିଶି ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ। ଦେଶ ସ୍ୱାଧୀନ ହେବା ପରେ ସେ ଜଗତସିଂହପୁର ଓ ଗୋବିନ୍ଦପୁରରୁ ୪ଥର ନିର୍ବାଚିତ ହୋଇଥିଲେ । ଢେଙ୍କାନାଳଠାରେ ପ୍ରଜା ଆନ୍ଦୋଳନଠାରୁ ଆରମ୍ଭ କରି କଣ୍ଟୁରୀବାବୁ ଅନେକ ଦେଶ ହିତକର କାର୍ଯ୍ୟରେ ଯୋଗ ଦେଇଥିଲେ। ମୁରଲୀ ବାବୁଙ୍କ ୧୯୯୦ ମସିହା ନଭେମ୍ବର ୨୧ ତାରିଖରେ ମୃତ୍ୟୁବରଣ କଲେ । ତାଙ୍କ ଅନୁଜ ଭଳି କଣ୍ଟୁରୀବାବୁ ୯୩ ବର୍ଷ ବୟସରେ ମୃତ୍ୟୁବରଣ କଲେ । ସେଇ ଅମାୟିକ ବ୍ୟକ୍ତିତ୍ୱଙ୍କ ପ୍ରତି ଆମର ଗଭୀର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ।

ଉତ୍ତାରଣ, କସରଦା
ଜିଲ୍ଲା– କଟକ

❖ ❖ ❖

# ଭାରତରେ ଅଗଷ୍ଟ ବିପ୍ଳବ

ଗୁରୁକଲ୍ୟାଣ ମହାପାତ୍ର

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସମଗ୍ର ଭାରତରେ ବ୍ରିଟିଶ ସରକାରଙ୍କୁ ତଡିବା ଲାଗି ଅନ୍ତିମ ପର୍ଯ୍ୟାୟର ଯେଉଁ ଆନ୍ଦୋଳନ ସଂଘଟିତ ହୋଇଥିଲା, ତାହା ଥିଲା ୧୯୪୨ର 'ଭାରତଛାଡ ଆନ୍ଦୋଳନ' । ଗାନ୍ଧିଜୀଙ୍କର 'କର ଅବା ମର'ର ଆହ୍ୱାନ କୋଟି କୋଟି ଭାରତୀୟଙ୍କ ହୃଦୟରେ ପ୍ରତିଧ୍ୱନିତ ହୋଇ ଏହା ଏକ ବିରାଟ ଗଣ ଆନ୍ଦୋଳନରେ ପରିଣତ ହୋଇଥିଲା । ଏହି ଆନ୍ଦୋଳନ ଆମ ଇତିହାସରେ 'ଅଗଷ୍ଟ ବିପ୍ଳବ' ଭାବେ ମଧ୍ୟ ପରିଚିତ । ଏପରି ଏକ 'ଅଗଷ୍ଟ ବିପ୍ଳବ' ଆରମ୍ଭ କରିବା ଲାଗି ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ପାଇଁ ଆନ୍ଦୋଳନ କରୁଥିବା କଂଗ୍ରେସ ତାହାର କାର୍ଯ୍ୟକାରୀ କମିଟିରେ ୱାର୍ଦ୍ଧାଠାରେ ୧୯୪୨ ଜୁଲାଇ ୧୪ ତାରିଖରେ ପ୍ରଥମେ ନିଷ୍ପତ୍ତି ହୋଇଥିଲା । ଏହା ପରେ ବମ୍ବେ (ଏବର ମୁମ୍ବାଇ)ଠାରେ ୧୯୪୨ ଅଗଷ୍ଟ ୭ ଓ ୮ ତାରିଖରେ ଅଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନରେ ଏହି ମହାବିପ୍ଳବ ପାଇଁ ଚୂଡାନ୍ତ ନିଷ୍ପତ୍ତି ହୋଇଥିଲା । ତତ୍କାଳୀନ ବ୍ରିଟିଶ ଶାସକ ଏହି ବ୍ୟାପକ ଆନ୍ଦୋଳନର ପ୍ରସ୍ତୁତି କାର୍ଯ୍ୟକ୍ରମ ଦେଖି ବିଚଳିତ ହୋଇପଡିଥିଲେ ।

୧୯୪୨ ମସିହା ଅଗଷ୍ଟ ୭ ତାରିଖରେ ପୂର୍ବ ନିଷ୍ପତ୍ତି ଅନୁଯାୟୀ ବମ୍ବେଠାରେ ଅଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନଟି ତତ୍କାଳୀନ କଂଗ୍ରେସ ସଭାପତି ମୌଲାନା ଆବୁଲ କାଲାମ୍ ଆଜାଦଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ମହାତ୍ମା ଗାନ୍ଧୀଙ୍କର 'କର ବା ମର' ଆହ୍ୱାନ ସେତେବେଳେ ହିଁ ସମଗ୍ର ଭାରତରେ ପ୍ରକମ୍ପିତ ହୋଇ ଏହି ଆନ୍ଦୋଳନକୁ ଏକ ବିରାଟ ଆନ୍ଦୋଳନରେ ପରିଣତ କରିଥିଲା । ତହିଁ ପରଦିନ ଅର୍ଥାତ୍ ୧୯୪୨ ମସିହା ଅଗଷ୍ଟ ୮ ତାରିଖରେ 'ଭାରତଛାଡ ଆନ୍ଦୋଳନ'ର ପ୍ରସ୍ତାବ କଂଗ୍ରେସ କମିଟି ଦ୍ୱାରା ଗୃହୀତ ହୋଇଥିଲା । ମାତ୍ର ଆଶ୍ଚର୍ଯ୍ୟ କଥା ଯେ ତହିଁ ପରଦିନ ଅର୍ଥାତ୍ ଅଗଷ୍ଟ ୯ ତାରିଖ ପତ୍ୟୁଷରେ ଏହି ଆନ୍ଦୋଳନ ଦାନା ଧରିବା ବେଳକୁ ଗାନ୍ଧିଜୀଙ୍କ ସମେତ ଆନ୍ଦୋଳନକାରୀ ତୁଙ୍ଗ ନେତାମାନଙ୍କୁ ତତ୍କାଳୀନ ବ୍ରିଟିଶ ପୁଲିସ ଗିରଫ କରିନେଲେ । ଅନ୍ତିମ ପର୍ଯ୍ୟାୟର ଏହି ବିରାଟ ଆନ୍ଦୋଳନକୁ ଦମନ କରିବା ସକାଶେ ବ୍ରିଟିଶ ସରକାର ବହୁ ଉଦ୍ୟମ କରିଥିଲେ ହେଁ ତାହା ଫଳପ୍ରଦ ହୋଇନଥିଲା । ଅବଶ୍ୟ ଏହି ଆନ୍ଦୋଳନକୁ ନେତୃତ୍ୱହୀନ କରିବାକୁ ତତ୍କାଳୀନ ବ୍ରିଟିଶ ସରକାର ଉଦ୍ୟମ ଜାରି ରଖି ତୁଙ୍ଗ ନେତାଙ୍କ ସମେତ ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କୁ ଗିରଫ କରି କାରାଦଣ୍ଡ ଦେଇଥିଲେ । ଏହା ସତ୍ତ୍ୱେ ଏହି ଆନ୍ଦୋଳନ ଆପଣାଛାଏଁ ଗଢି ଉଠି ନିଆଁ ଭଳି ଜଳି ଉଠିଥିଲା ଓ ଏକ ବିରାଟ ଗଣ ଆନ୍ଦୋଳନ ବା ବିପ୍ଳବରେ ପରିଣତ ହୋଇଥିଲା । ଏହି ଆନ୍ଦୋଳନ ଏପରି ପ୍ରଭାବଶାଳୀ ଥିଲା ଯେ ଏହି ଆନ୍ଦୋଳନକୁ ସ୍ୱାଧୀନତା ହାସଲ ଯାଏଁ ଜାରି ରଖିବାକୁ ଗାନ୍ଧିଜୀ ଜେଲ୍ ଭିତରେ ଥାଇ ଆହ୍ୱାନ ଦେଇଥିଲେ ।

ଭାରତରେ ତତ୍କାଳୀନ ବ୍ରିଟିଶ ସରକାରଙ୍କ ସର୍ବୋଚ୍ଚ ପ୍ରତିନିଧି ବା ବଡଲାଟ୍ ଥିଲେ ଲିନଲ ଥୋଗୋ । ସେ ଭୟଭୀତ ହୋଇ ଯାଇଥିଲେ ଏହି ଭାରତଛାଡ ଆନ୍ଦୋଳନର ବ୍ୟାପକତା ଅନୁଭବ କରି । ତତ୍କାଳୀନ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କୁ ସେ ଗୋପନରେ ଚିଠି ଲେଖିଲେ ଯେ ୧୮୫୭ର ସିପାହୀ ବିଦ୍ରୋହ ପରେ ଏପରି ବିଦ୍ରୋହ ଅତି ଭୟଙ୍କର ରୂପ ନେଇଛି, ଯାହାକୁ ଦମନ କରିବା କଷ୍ଟସାଧ୍ୟ । ଗାନ୍ଧିଜୀଙ୍କ ଆହ୍ୱାନରେ ଲୋକେ ଅହିଂସା ଆନ୍ଦୋଳନ ତ କରିଥିଲେ, କେହି କେହି ମଧ୍ୟ ସେ କଥା ଭୁଲିଯାଇ ଥାନା ପୋଡିଦେଲେ । ରେଳପଥ ଓ ପୋଲ ଉଡାଇ ଦେଲେ । ଫଳରେ ବ୍ରିଟିଶ ପୁଲିସ ବା ସୈନ୍ୟବାହିନୀ ଏହି ଆନ୍ଦୋଳନକୁ ଦମନ କରିବା ଲାଗି ଗାଁ ଭିତରକୁ ପ୍ରବେଶ କରିପାରି ନଥିଲେ ।

ବ୍ରିଟିଶ ପୁଲିସ ଓ ସୈନ୍ୟବାହିନୀ ଆଖିରେ ଧୂଳି ଦେଇ ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ଗୋପନରେ ରହି ଆନ୍ଦୋଳନକୁ ଜାରି ରଖିଥିଲେ, ସେମାନେ ଥିଲେ ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ରାମମନୋହର ଲୋହିଆ ଓ ଅରୁଣା ଆସଫ୍ ଅଲ୍ଲୀ । ଯେଉଁ ଯୁବକ ଜଣକ ବିମାନ ଚାଳନା କରି ଏହି ନେତାମାନଙ୍କୁ ଆନ୍ଦୋଳନ ବେଳେ ସାହାଯ୍ୟ କରୁଥିଲେ, ସେ ଥିଲେ ଡାଲମିଆଁ ଜୈନ କମ୍ପାନୀର ସୁଦକ୍ଷ ବିମାନ ଚାଳକ ବିଜୁ ପଟ୍ଟନାୟକ । ବ୍ରିଟିଶ ପୁଲିସ ବିଜୁଙ୍କୁ ଗିରଫ କରି ନାନାଦି ଶାରୀରିକ ନିର୍ଯାତନା ଦେଇଥିଲା ସତ, ମାତ୍ର ବ୍ରିଟିଶ ସରକାରଙ୍କ ଉଦ୍ୟମ ଫଳପ୍ରଦ ହୋଇ ନଥିଲା । ଏହି ବିରାଟ ଆନ୍ଦୋଳନରେ ସମଗ୍ର ଭାରତରେ ପ୍ରାୟ ୧୫ ହଜାର ଆନ୍ଦୋଳନକାରୀ ବ୍ରିଟିଶ ପୁଲିସ ଗୁଳିରେ ପ୍ରାଣ ହରାଇଥିଲେ ବୋଲି ଜଣାଯାଇଛି ।

ଅନ୍ୟାନ୍ୟ ରାଜ୍ୟ ପରି ଓଡ଼ିଶାରେ ମଧ୍ୟ ଏହି ଭାରତଛାଡ ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବର ପ୍ରଭାବ ଗଭୀରଭାବେ ଅନୁଭୂତ ହୋଇଥିଲା । ଓଡ଼ିଶାର ପ୍ରାୟ ଚାରି ହଜାର ସଂଗ୍ରାମୀଙ୍କୁ ବ୍ରିଟିଶ ପୁଲିସ ଗିରଫ କରିନେଇଥିଲେ । ରାଜ୍ୟର ପ୍ରାୟ ସାତଟି ସ୍ଥାନରେ ଗୁଳିକାଣ୍ଡ ହୋଇଥିଲା ଓ ସେଥିରେ ପ୍ରାୟ ୭୨ ଜଣ ପ୍ରାଣ ହରାଇଥିଲେ । ଓଡ଼ିଶାର ବିଭିନ୍ନ ତିନୋଟି ଜେଲ୍‌ରୁ କୁଆଡେ ୬୮ଜଣ ପ୍ରାଣ ହରାଇଥିଲେ ଓ ବିଭିନ୍ନ ଅଭିଯୋଗକ୍ରମେ ବିଭିନ୍ନ ସ୍ଥାନରୁ ପ୍ରାୟ ୨୦ ହଜାର ଟଙ୍କାର ଜରିମାନା ଆଦାୟ କରାଯାଇଥିଲା । ଓଡ଼ିଶାରେ ୧୯୪୨ମସିହା ଅଗଷ୍ଟ ୯ରୁ ଆରମ୍ଭ ହୋଇଥିବା ଏହି ବିପ୍ଳବ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଲୁଣିଆ ଖଇରାଡିହି ଓ ଇରମ ସମେତ ଅବିଭକ୍ତ କୋରାପୁଟ ଜିଲ୍ଲାର ମାଥିଲି ଓ ପାପଡାହାଣ୍ଡି, କଟକ ଜିଲ୍ଲାର କାଇପଡା, ପୁରୀ ଜିଲ୍ଲାର ନିମାପଡା ପ୍ରଭୃତି ଅଞ୍ଚଳରେ ତୀବ୍ର ଆକାର ଧାରଣ କରିଥିଲା । ଏହିସବୁ ସ୍ଥାନରେ ଗୁଳିକାଣ୍ଡ ମଧ୍ୟ ଘଟିଥିଲା । ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଲୁଣିଆ, ଖଇରାଡିହି ଓ ଇରମରେ ପୁଲିସ ଗୁଳିରେ ସର୍ବାଧିକ ୪୨ଜଣ ପ୍ରାଣ ହରାଇଥିଲା ବେଳେ ଅବିଭକ୍ତ କୋରାପୁଟ ଜିଲ୍ଲାର ମାଥିଲି ଓ ପାପଡାହାଣ୍ଡିରେ ବ୍ରିଟିଶ ପୁଲିସ ଗୁଳିରେ ୨୫ଜଣ ପ୍ରାଣ ହରାଇଥିଲେ । କଟକ ଜିଲ୍ଲାର କାଇପଡାରେ ୪ଜଣ ଓ ପୁରୀ ଜିଲ୍ଲାର ନିମାପଡାରେ ଜଣେ ପୁଲିସ ଗୁଳିରେ ପ୍ରାଣ ହରାଇଥିବା କଥା ଜଣାଯାଇଛି । ଅବଶ୍ୟ ଏହି ଅଗଷ୍ଟ ବିପ୍ଳବ ଚାଲିଥିବା ବେଳେ ୧୯୪୨ ମସିହା ସେପ୍ଟେମ୍ବର ୨୮ ତାରିଖରେ ସନ୍ଧ୍ୟା ପ୍ରାୟ ୫ଟା ସମୟରେ ଭଦ୍ରକ ଅନ୍ତର୍ଗତ ଇରମଠାରେ ବ୍ରିଟିଶ ବିରୋଧୀ ସଭା ଚାଲିଥିବା ବେଳେ ବ୍ରିଟିଶ ପୁଲିସର ଅତର୍କିତ ଗୁଳିମାଡରେ ୨୯ ଜଣ ନିହତ ହେବା ସଙ୍ଗେ ସଙ୍ଗେ ୧୫୦ଜଣ ଆହତ ହୋଇଥିଲେ । ଶତାଧିକ ଲୋକଙ୍କୁ ପୁଲିସ ଗିରଫ କରିନେଲେ । ଓଡ଼ିଶା ମାଟିରେ ଏହାକୁ ଦ୍ୱିତୀୟ ଜାଲିଓ୍ୱାନାଓ୍ୱାଲାବାଗ ବୋଲି ଇତିହାସ ଆଖ୍ୟା ଦେଇଛି । ଭାରତଛାଡ ଆନ୍ଦୋଳନ ବେଳେ ଓଡ଼ିଶାର ପୂର୍ବତନ ଗଡଜାତ ଢେଙ୍କାନାଳ, ତାଳଚେର, ନୟାଗଡ, ଆଠଗଡ ଓ ନୀଳଗିରିରେ ମଧ୍ୟ ଅନୁରୂପ ଭାବେ ପ୍ରଜାମଣ୍ଡଳ ଆନ୍ଦୋଳନ ଜୋରସୋରରେ ଚାଲିଥିଲା ।

ଅଗଷ୍ଟ ବିପ୍ଳବରେ ଭାଗ ନେଇଥିବା କାରଣରୁ କୋରାପୁଟ ଜିଲ୍ଲାର ଆଦିବାସୀ ନେତା ଲକ୍ଷ୍ମଣ ନାଏକଙ୍କୁ ମିଥ୍ୟା ଅଭିଯୋଗରେ ଫାଶୀ ଦଣ୍ଡାଦେଶ ହୋଇଥିଲା । ସେ ଜଣେ ଫରେଷ୍ଟ ଗାର୍ଡ଼କୁ ହତ୍ୟା କରିଥିଲେ ବୋଲି ଅଭିଯୋଗ କରାଯାଇଥିଲା । ଫଳରେ ବ୍ରହ୍ମପୁର ଜେଲ୍ ମଧ୍ୟରେ ୧୯୪୩ ମସିହା ମାର୍ଚ୍ଚ ୨୮ରେ ତାଙ୍କୁ ଏକମାତ୍ର ଓଡ଼ିଆ ଭାବେ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଯାଇଥିଲା । ସେ ଶହୀଦ ହେଲେ । ଭାରତରେ ଅଗଷ୍ଟ ବିପ୍ଳବ ତେଣୁ ବିଭିନ୍ନ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ।

କ୍ୱାର୍ଟସ ନଂ ଭିଏ ୨୯/୩
ୟୁନିଟ୍‌-୨, ଭୁବନେଶ୍ୱର-୭୫୧୦୦୯

❖ ❖ ❖

# ସ୍ୱାଧୀନତାର ଉତ୍ତରଦାୟିତ୍ୱ ଓ ଶ୍ରୀ ଅରବିନ୍ଦ

ରାମଚନ୍ଦ୍ର ଦାଶ

ଅଗଷ୍ଟ ୧୫, ସମଗ୍ର ଭାରତବାସୀଙ୍କ ପାଇଁ ଏକ ଗୌରବର ଦିବସ । ଏହିଦିନ କେବଳ ଭାରତ ସ୍ୱାଧୀନ ହୋଇ ନଥିଲା, ଏହି ଦିନ ମଧ୍ୟ ଭାରତମାତାର ଜଣେ ଯୋଗ୍ୟ ସନ୍ତାନଙ୍କର ଧରାପୃଷ୍ଠରେ ଆବିର୍ଭାବ ଘଟିଥିଲା । ପ୍ରତିବର୍ଷ ଭାରତବାସୀ ପରମ ଶ୍ରଦ୍ଧାରେ ଏକାଧାରରେ ସ୍ମରଣ କରିବେ ମଧ୍ୟ । ଏହି ଦିବସରେ ହୋଇଥିଲା ଭାରତର ସ୍ୱାଧୀନତାର ସୂର୍ଯ୍ୟୋଦୟ ଓ ସ୍ୱାଧୀନତାର ଅଗ୍ରଦୂତ ଶ୍ରୀ ଅରବିନ୍ଦଙ୍କ ଅଭ୍ୟୁଦୟ । ପଶ୍ଚିମବଙ୍ଗ ରାଜ୍ୟର କଲିକତା (ବର୍ତ୍ତମାନ କୋଲକାତା) ନିକଟବର୍ତ୍ତୀ କୋନ୍ ନଗରରେ ଡକ୍ଟର କୃଷ୍ଣଧନ ଘୋଷ ଓ ମାତା ସ୍ୱର୍ଣ୍ଣଲତାଙ୍କ ଔରସରୁ ୧୮୭୨ ମସିହା ଅଗଷ୍ଟ ୧୫ ତାରିଖରେ ଅରବିନ୍ଦ ଜନ୍ମଗ୍ରହଣ କରିଥିଲେ । ଶ୍ରୀଅରବିନ୍ଦଙ୍କ ପିତାମାତା ତାଙ୍କୁ ଆଦରରେ 'ଅରୋ' ବୋଲି ଡାକୁଥିଲେ । ସେ ଥିଲେ ପିତାମାତାଙ୍କର ତୃତୀୟ ସନ୍ତାନ । ତାଙ୍କ ବଡଭାଇଙ୍କ ନାମ ବିନୟ ଭୂଷଣ ଓ ମନମୋହନ । ତାଙ୍କ ଭଉଣୀ ସରୋଜିନୀ ଓ ସାନଭାଇ ବାରୀନ୍ଦ୍ର କୁମାର । ଡକ୍ଟର କୃଷ୍ଣଧନ ଘୋଷ ନିଜ ପିଲାମାନଙ୍କୁ ପାଶ୍ଚାତ୍ୟ ଶୈଳୀରେ ଗଢ଼ି ତୋଳିବାକୁ ଚାହୁଁଥିଲେ । ଅପରପକ୍ଷେ ସ୍ୱର୍ଣ୍ଣଲତା ଦେବୀ ଥିଲେ ଜଣେ ଧର୍ମପରାୟଣା, ଦେଶଭକ୍ତି, ଶିକ୍ଷିତା ନାରୀ, ଉଭୟଙ୍କ ଗୁଣାବଳୀର ପ୍ରଭାବ ପିଲାମାନଙ୍କ ଉପରେ ପଡିଥିଲା । ସ୍ୱର୍ଣ୍ଣଲତାଙ୍କ ମସ୍ତିଷ୍କ ବିକୃତି ଯୋଗୁଁ ସେ ପିଲାମାନଙ୍କ ଲାଳନପାଳନ କରିପାରିଲେ ନାହିଁ । କୃଷ୍ଣଧନ ଶ୍ରୀ ଅରବିନ୍ଦଙ୍କ ଲାଳନପାଳନ ଦାୟିତ୍ୱ ଜଣେ ଇଂରେଜ ଧାଇଙ୍କୁ ସମର୍ପି ଦେଲେ । ଅତି ଛୋଟ ବୟସରୁ ସେ ମାତୃସ୍ନେହରୁ ବଞ୍ଚିତ ହେଲେ । ପିଲାଟି ଦିନରୁ ଶ୍ରୀ ଅରବିନ୍ଦ ମାତୃସ୍ନେହ ଓ ମାତୃଭାଷାର ସ୍ୱାଦ ପାଇପାରି ନଥିଲେ । ପରବର୍ତ୍ତୀ ସମୟରେ ସେ ଭାରତକୁ ଭଲଭାବେ ଚିହ୍ନିପାରି ନଥିଲେ । ତେଣୁ ସେ କହୁଥିଲେ– 'ଭାରତ ଏକ ଜଡ ପଦାର୍ଥ, ମାଟି, କ୍ଷେତ୍ର, ବନ, ପର୍ବତ, ନଦୀକୁ ନେଇ ଗଠିତ ଭୂଗର୍ଭ ନୁହେଁ । ଏ ହେଉଛି ସ୍ୱୟଂ ଜଗଜ୍ଜନନୀ । ପାଞ୍ଚବର୍ଷ ବୟସରୁ ଅରୋଙ୍କ ବାଲ୍ୟଶିକ୍ଷା ଆରମ୍ଭ ହେଲା । ପ୍ରଥମେ ସେ ଲୋରେଟୋ କନ୍‌ଭେଣ୍ଟ ସ୍କୁଲ, ଦାର୍ଜିଲିଂରେ ନାମ ଲେଖାଇଲେ । ସାତବର୍ଷ ବୟସରେ ତାଙ୍କୁ ଦେଶ ଛାଡି ଯିବାକୁ ପଡିଲା । ତାଙ୍କ ମାତାଙ୍କ ମସ୍ତିଷ୍କ ରୋଗ ଚିକିତ୍ସା ପାଇଁ ପିତା କୃଷ୍ଣଧନ ସପରିବାର ଯାଇ ମାଞ୍ଚେଷ୍ଟରରେ ରହିଲେ । ସେଠାରେ ଡୁଟେ ଦମ୍ପତିଙ୍କ ତତ୍ତ୍ୱାବଧାନରେ ଶ୍ରୀ ଅରବିନ୍ଦଙ୍କ ପାଠପଢ଼ା ଚାଲିଲା । ଏହି ବୟସରୁ ହିଁ ତାଙ୍କ ପ୍ରତିଭାର ବିକାଶ ଘଟିଲା । ତାଙ୍କୁ ଯାହା ଶିକ୍ଷା ଦିଆଯାଉଥିଲା ସେ ସଙ୍ଗେ ସଙ୍ଗେ ସବୁ ଶିଖି ଦେଉଥିଲେ । ସେ ଥିଲେ ଶାନ୍ତ ସ୍ୱଭାବର ଓ ବିଚକ୍ଷଣ ପ୍ରତିଭାର ଅଧିକାରୀ । ମାତ୍ର ଦଶବର୍ଷ ବୟସରୁ ଲାଟିନ୍ ଓ ଇଂରାଜୀ ଭାଷାରେ ସୁନ୍ଦର କବିତା ଲେଖିବାକୁ ଆରମ୍ଭ କଲେ । ଏଗାର ବର୍ଷ ବୟସରେ ସେ ଅନ୍ତରରେ ଅନୁଭୂତି ଲାଭ କଲେ ଯେ ସାରା ଜଗତ ପାଇଁ ତାଙ୍କୁ ଭୂମିକା ଗ୍ରହଣ କରିବାକୁ ପଡିବ । ତେରବର୍ଷ ବୟସରେ ସେ ଲଣ୍ଡନ ଯାଇ ସେଣ୍ଟ ପଲ୍‌ସ ସ୍କୁଲରେ ଭର୍ତ୍ତି ହେଲେ । ସେଠାରେ ସେ ଗ୍ରୀକ୍ ଓ ଫରାସୀ ଭାଷା ଶିଖିଲେ । ଚଉଦ ବର୍ଷ ବେଳକୁ ସେ ଇଉରୋପରେ ଇଂରାଜୀ, ଲାଟିନ୍, ଗ୍ରୀକ୍, ଫରାସୀ, ଇଟାଲିୟାନ୍, ଜର୍ମାନୀ ଓ ସ୍ପେନିସ୍ ଭାଷାର ଅଧିକାରୀ ହୋଇ ସାରିଥିଲେ । ଏହି ସମୟରେ ତାଙ୍କୁ ନାନା ଦୁଃଖକଷ୍ଟ ସହ୍ୟ କରିବାକୁ ପଡିଥିଲା । ଟଙ୍କା ଅଭାବରୁ ବେଳେ ବେଳେ ସେ ଭୋକ ଉପାସରେ ରହୁଥିଲେ । ଶୀତରେ ଘୋଡେଇ ହେବା ପାଇଁ ତାଙ୍କ ନିକଟରେ ଚଦରଟିଏ ନଥିଲା । ଶ୍ରୀଅରବିନ୍ଦ ଲଣ୍ଡନରେ ରହି ପାଠ ପଢୁଥିବା ସମୟରେ ତାଙ୍କ ପିତା କୃଷ୍ଣଧନ ତାଙ୍କ ଭିତରେ ଦେଶପ୍ରେମର ବୀଜ ବପନ କରିଥିଲେ । ସେ ସମୟରେ ଭାରତୀୟମାନଙ୍କ ପ୍ରତି ଇଂରେଜମାନଙ୍କ ଅକଥନୀୟ ଅତ୍ୟାଚାର ବିଷୟରେ ଚିଠି ଲେଖି ଜଣାଉଥିଲେ । ଏସବୁ ପଢ଼ି ଶ୍ରୀ ଅରବିନ୍ଦଙ୍କ ମନରେ ଦେଶପ୍ରେମର ଭାବ ଜାଗ୍ରତ ହେଲା । ଏହା ଥିଲା ଦେଶ କାର୍ଯ୍ୟ ପାଇଁ ଅୟମାରମ୍ଭ ।

ପରାଧୀନତାର ବନ୍ଧନରୁ ଦେଶକୁ ମୁକ୍ତ କରିବା ପାଇଁ ସେ ତାଙ୍କ ସମଗ୍ର ଜୀବନକୁ ଉତ୍ସର୍ଗ କରିଦେଇଥିଲେ। ପରାଧୀନତାର ରୁକ୍ଷ ମରୁଭୂମିରେ ସ୍ୱାଧୀନତା– ମନ୍ଦାକୀନିର ଆଦ୍ୟଧାରା ବୁହାଇଥିଲେ। ସମଗ୍ର ଭରତବର୍ଷ ଓ ମାନବ ଜାତି ପାଇଁ ତାଙ୍କ ଅବଦାନ ଅବିସ୍ମରଣୀୟ ଓ ଅତୁଳନୀୟ। ପରବର୍ତ୍ତୀ ସମୟରେ ଏହି ଅସାଧାରଣ ବାଳକ 'ଶ୍ରୀଅରବିନ୍ଦ' ନାମରେ ପରିଚିତ ହୋଇଥିଲେ। ସୌଭାଗ୍ୟ ବଶତଃ ତାଙ୍କ ଜନ୍ମ ତିଥିରେ ହିଁ ଭାରତ ସ୍ୱାଧୀନ ହେଲା। ଆଜି ସେ ବିଶ୍ୱବନ୍ଦିତ। ତାଙ୍କ ସମଗ୍ର ଜୀବନ ବିଷୟରେ ବର୍ଣ୍ଣନା କରିବା କିମ୍ବା ଜାଣିବା ଆମର ଜ୍ଞାନର ପରିସୀମା ବାହାରେ: କିନ୍ତୁ ସାଧନା ଓ ଅଧ୍ୟବସାୟ ଥିଲେ ସେହି ମହାପୁରୁଷଙ୍କ ବିଷୟରେ ଜାଣିପାରିବା । ତାଙ୍କ ଜୀବନ ଆଦର୍ଶକୁ ଗ୍ରହଣ କଲେ ଆମ ଜୀବନ ମଧ୍ୟ ସାର୍ଥକ ହୋଇପାରିବ ।

ଅକରପଡା, ନଳୀପୁର
ବାଲିଚନ୍ଦ୍ରପୁର, ମାହାଙ୍ଗା, କଟକ

# ବନ୍ଦେ ଉତ୍କଳ ଭାରତୀ

ଦେବେନ୍ଦ୍ର ନାଥ ମହାନ୍ତି

ମମତା ମଧୁର ଭାଷାରେ ବିଭୋର
ଓଡ଼ିଆ ମୋ ଭାଷାକୁ ଜୁହାର ।
ଚକା ଚକା ହୋଇ ଅକ୍ଷର ସମ୍ଭାର
ଠୋପା ଠୋପା ପରି ଦିଶେ ମନୋହର
କୁଞ୍ଚ କୁଞ୍ଚିଆ ଛଟା ଢଳ ଢଳିଆ
ଜଳ ଜଳ ସୁଢଳ ଆଖି ଦୃଶିଆ ।

ଲୋଡା ନାହିଁ ବର୍ଣ୍ଣ, ଭାଷା, ପରିଚୟ
ଆପ୍ଲୁତ ପ୍ରତି ଜନ ମନ ହୃଦୟ ।
ବର୍ଣ୍ଣ ଯୁଗଳ ସ୍ୱର– ବ୍ୟଞ୍ଜନ ଶୋଭା
ଯୌଥ କୁଟୁମ୍ବ ସଦୃଶତା ପ୍ରତିଭା ।
ଅଢେଇ ହଜାର ବରଷ ପ୍ରାଚୀନ
ଶାସ୍ତ୍ର ପୁରାଣରେ ଭୂୟସୀ ବର୍ଣ୍ଣନ ।

ଅ, ଆ, ଇ, ଈ, ଉ, ଊ, ର, ଏ, ଐ, ଓ, ଔ
ଭବ୍ୟ ସ୍ୱରବର୍ଣ୍ଣ ମାନ୍ୟ ଦେଇଥାଉ ।
ଅନୁପମ ସ୍ୱରବର୍ଣ୍ଣ ପ୍ରସାଧନ
ଯୋଗ୍ୟ ଲିଖନ ପଠନ ପ୍ରଣିଧାନ ।
ଆବର ତ୍ରୟଃତ୍ରିଂଶ ବର୍ଣ୍ଣ ଶୋଭନ
କ୍ଷ, ଡ, ଢ, ଲ, ୟ ଅବଶେଷ ବ୍ୟଞ୍ଜନ ।

ଅନୁସ୍ୱାର ବିସର୍ଗ ଚନ୍ଦ୍ରବିନ୍ଦୁର
ପୂର୍ଣ୍ଣ ସୌନ୍ଦର୍ଯ୍ୟ ବ୍ୟଞ୍ଜନ ସମାହାର ।
ନମନ ଭକ୍ତକବି ମଧୁସୂଦନ
ଶୈଶବରେ ଦେଲେ ବର୍ଣ୍ଣବୋଧ ଜ୍ଞାନ ।
ସଂଖ୍ୟା କ୍ରମେ କୃତୀ ସନ୍ତାନ ଅନେକ
ସାରସ୍ୱତ ପ୍ରେମୀ ସାହିତ୍ୟ ସାଧକ ।

ବିଜ୍ଞ ଭାଷ୍ୟକାର, ଲେଖକ କାବ୍ୟିକ
ଓଡ଼ିଆ ଭାଷାର ସମୃଦ୍ଧ କାରକ ।
ମହୀୟସୀ ନାରୀ– କବି ଓ ପ୍ରଣେତା
ଉତ୍କଳ ସାହିତ୍ୟ ଗାଥା ରଚୟିତା ।
ଜାତିପ୍ରାଣ, ଉତ୍କଳଗୌରବ ସର୍ବ
ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ଖର୍ବ ଖର୍ବ ।

ସର୍ବେ ନିଜ ପରାକାଷ୍ଠା ଦୃଷ୍ଟାନ୍ତ
ରଚିଛନ୍ତି ଓଡ଼ିଆ ଭାଷାର ବୃତ୍ତାନ୍ତ ।
ଓଡ଼ିଆ ପାଇଛି ଆର୍ଯ୍ୟ ଭାଷା ମାନ୍ୟ
ଶାସ୍ତ୍ରୀୟ ଭାଷାରେ ଅଟେ ଗଣ୍ୟ ମାନ୍ୟ ।

ଉତ୍କଳବାସୀ କରେ ନିବେଦନ
ଦେବା ଓଡ଼ିଆକୁ ଉଚ୍ଚ ସନମାନ ।
ଉଇଁଲେଣି ପ୍ରାଚୀ ଗଗନେ ତପନ
ବାହୁ ତୋଳି ଜାଗ ଉତ୍କଳ ସନ୍ତାନ ।

ଘରେ ଘରେ ହେଉ ଓଡ଼ିଆର ପୂଜା
ବଜା ଓଡ଼ିଆ ଭାଇ ବାଇଦ ବଜା ।
ସ୍ୱାର୍ଥ ତ୍ୟାଗ କରି କଟୀବଦ୍ଧ ହୋଇ
ଭାଷା ସମୃଦ୍ଧିରେ ମନ ପ୍ରାଣ ଦେଇ,
ଦେଶ ପାଇଁ ଜୀବନ ଉତ୍ସର୍ଗ କରିବା,
ଏଠାରେ ଗଢିବା ଭୂସ୍ୱର୍ଗ ।
ମାତୃଭାଷା ବତ୍ସଳ ଓଡ଼ିଆ ଜାତି
ସହୃଦୟେ ବନ୍ଦେ ଉତ୍କଳ ଭାରତୀ ।

୬୧୪/୩, ଲେନ୍–୮
ଶ୍ରୀବିହାର, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

# ଭାରତର ମୁକ୍ତି ଆନ୍ଦୋଳନକୁ ଓଡ଼ିଶାର ଅବଦାନ

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

୧୮୫୭ ମସିହାର ସିପାହୀ ବିଦ୍ରୋହ ବା ଭାରତର ପ୍ରଥମ ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମର ୪୦ ବର୍ଷ ପୂର୍ବରୁ ବ୍ରିଟିଶ ସରକାରଙ୍କ ବିରୋଧରେ ଓଡ଼ିଶାର ପାଇକମାନେ ୧୮୧୭ ମସିହାରେ ସଶସ୍ତ୍ର ଆନ୍ଦୋଳନ କରିଥିଲେ, ଯଦିଓ ଐତିହାସିକମାନେ ଜାତୀୟ ସ୍ତରରେ ଏଥିପ୍ରତି ଅଧିକ ଗୁରୁତ୍ୱ ଦେଇନାହାନ୍ତି । ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ, ତାପଙ୍ଗ ଦଳବେହେରା ଓ ଗଜପତି ଦ୍ୱିତୀୟ ମୁକୁନ୍ଦ ଦେବଙ୍କ ନେତୃତ୍ୱରେ ଓଡ଼ିଶାରେ ବ୍ରିଟିଶ ସରକାରଙ୍କ ବିରୋଧରେ ପାଇକ ବିଦ୍ରୋହ ହୋଇଥିଲା । ପ୍ରଥମେ ଘୁମୁସରର କନ୍ଧମାନେ ବିଦ୍ରୋହ କରିଥିଲେ ଓ ପରେ ପରେ ଅବିଭକ୍ତ ପୁରୀ ଜିଲ୍ଲାର ପାଇକମାନେ ଏହି ବିଦ୍ରୋହରେ ଯୋଗ ଦେଇଥିଲେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ । ବକ୍ସି ଜଗବନ୍ଧୁଙ୍କୁ ଜୟୀ ରାଜଗୁରୁ ଓ ତାପଙ୍ଗ ଦଳବେହେରା ସକ୍ରିୟ ସହଯୋଗ କରିଥିଲେ ଓ ଖୋର୍ଦ୍ଧା ରାଜା ଗଜପତି ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ସ୍ୱାଧୀନ ରାଜା ରୂପେ ଘୋଷଣା କରିଥିଲେ ।

ପିପିଲି ଥାନା ଆକ୍ରମଣ କରି ବିଦ୍ରୋହୀମାନେ ବିଜୟୀ ହୋଇଥିଲେ ଓ ଟ୍ରେଜେରୀ ଲୁଟ୍ କରି ନେଇଥିଲେ । କୁଜଙ୍ଗ ଅଞ୍ଚଳରେ ମଧ ପାଇକ ବିଦ୍ରୋହ ଦେଖାଯାଇଥିଲା । ଇଂରେଜ ସରକାର ବ୍ୟତିବ୍ୟସ୍ତ ହୋଇ ପଡିଥିଲେ । ପାଇକ ବିଦ୍ରୋହ ଦମନ ପାଇଁ ଅଧିକ ଇଂରେଜ ଫୋର୍ସ ପୁରୀ ଜିଲ୍ଲାକୁ ଆସିଥିଲେ । ଇଂରେଜ ସରକାର ବହୁ କଷ୍ଟରେ ପାଇକ ବିଦ୍ରୋହ ଦମନ କରିଥିଲେ ମଧ ବକ୍ସି ଜଗବନ୍ଧୁଙ୍କୁ ଧରିପାରି ନଥିଲେ । ବକ୍ସି ଜଗବନ୍ଧୁଙ୍କ ଜଣେ ସହକର୍ମୀ ଟଙ୍କା ଲୋଭରେ ବକ୍ସି ଜଗବନ୍ଧୁଙ୍କୁ ଧରିବାକୁ ସକ୍ଷମ ହୋଇଥିଲେ ଓ ବନ୍ଦୀ କରି କାରାଗାରରେ ରଖିଥିଲେ । ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ କଳାପାଣି ପଠାଇ ଦିଆଯାଇଥିଲା । ଜୟୀ ରାଜଗୁରୁ ଓ ତାପଙ୍ଗ ଦଳବେହେରା ଧରାପଡି ଦଣ୍ଡିତ ହୋଇଥିଲେ । ପାଇକ ବିଦ୍ରୋହ ଦମନ ହୋଇଥିଲେ ମଧ ଇଂରେଜ ସରକାରଙ୍କ ବିରୋଧରେ ସମଗ୍ର ଭାରତରେ ଏହା ପ୍ରଥମ ସଶସ୍ତ୍ର ଆନ୍ଦୋଳନ ଥିଲା । ଦେଶର ଐତିହାସିକମାନେ ଏଥିପ୍ରତି ଯେତିକି ଗୁରୁତ୍ୱ ଦିଆଯିବା କଥା ତାହା ଏପର୍ଯ୍ୟନ୍ତ ଦେଇନାହାଁନ୍ତି ।

**୧୮୫୭ ସିପାହୀ ବିଦ୍ରୋହ:** ୧୮୫୭ର ସିପାହୀ ବିଦ୍ରୋହରେ ମଧ ଓଡ଼ିଶାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ସମ୍ବଲପୁରର ରାଜା ବୀର ସୁରେନ୍ଦ୍ର ସାଏ ସମଗ୍ର ସମ୍ବଲପୁର ଅଞ୍ଚଳରେ ସିପାହୀ ବିଦ୍ରୋହର ନେତୃତ୍ୱ ନେଇଥିଲେ ଓ ତାଙ୍କ ଦ୍ୱାରା ବହୁ ଇଂରେଜ ସୈନ୍ୟ ମୃତାହତ ହୋଇଥିଲେ ।

ପୁରୀର ଚାଖି ଖୁଣ୍ଟିଆ ରାଣୀ ଲକ୍ଷ୍ମୀବାଈଙ୍କୁ ସମ୍ପୂର୍ଣ୍ଣ ସହଯୋଗ କରିଥିଲେ । ସେ ନିଜ ଜୀବନକୁ ପାଣି ଛଡାଇ ମହାରାଣୀଙ୍କୁ ସହଯୋଗ କରିଥିଲେ । ବୀର ସୁରେନ୍ଦ୍ର ସାଏ ଓ ତାଙ୍କର ପାଇକମାନେ ପରାସ୍ତ ହୋଇ ନିହତ ହୋଇଥିଲେ ମଧ ସେ ଗୌରବମୟ ଇତିହାସ ସୃଷ୍ଟି କରିଯାଇଛନ୍ତି ।

ଭାରତୀୟ ଜାତୀୟ କଂଗ୍ରେସ ୧୮୮୫ ମସିହାରେ ଗଠିତ ହୋଇଥିଲା । ମଧୁବାବୁ (ମଧୁସୂଦନ ଦାସ) ପ୍ରଥମେ ଓଡ଼ିଶାରେ କଂଗ୍ରେସର ନେତୃତ୍ୱ ନେଇଥିଲେ ।

୧୯୦୧ ମସିହାରେ କଲିକତା ନଗରୀରେ ଭାରତୀୟ ଜାତୀୟ କଂଗ୍ରେସର ମହା ଅଧିବେଶନ ଅନୁଷ୍ଠିତ ହୋଇଥିଲା । ମଧୁବାବୁ ଓଡ଼ିଶାରୁ ଏକ ପ୍ରତିନିଧି ଦଳ ନେଇ କଂଗ୍ରେସ ମହା ଅଧିବେଶନରେ ଯୋଗ ଦେଇଥିଲେ । ସେତେବେଳେ ଓଡ଼ିଶାକୁ ଖଣ୍ଡଖଣ୍ଡ କରି ବଙ୍ଗ, ବିହାର ଓ ମାନ୍ଦ୍ରାସକୁ ବାଣ୍ଟି ଦିଆଯାଇଥିଲା । ତେଣୁ ଭାଷାଭିତ୍ତିକ ପ୍ରଦେଶ ଗଠନ ପାଇଁ ମଧୁବାବୁ କଂଗ୍ରେସର ଏହି ମହା ଅଧିବେଶନରେ ପ୍ରସ୍ତାବ ଆଗତ କରିଥିଲେ । କିନ୍ତୁ

କଂଗ୍ରେସ ଅଧିବେଶନରେ ବହୁ ଭୋଟରେ ଏହି ପ୍ରସ୍ତାବ ନାକଚ ହୋଇଯାଇଥିଲା । ତେଣୁ ମଧୁବାବୁ କଂଗ୍ରେସ ଅଧିବେଶନ ବର୍ଜନ କରି ପଳାଇ ଆସିଥିଲେ ଓ ଓଡ଼ିଶାରେ 'ଉତ୍କଳ ସମ୍ମିଳନୀ' ୧୯୦୩ ମସିହାରେ ପ୍ରତିଷ୍ଠା କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଆନ୍ଦୋଳନ କରିଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ପ୍ରଥମ ସଭାପତି ହୋଇଥିଲେ ୧୯୨୦ ମସିହାରେ । ଜଗତ୍‌ସିଂହପୁରର ଭାଗିରଥି ମହାପାତ୍ର ପ୍ରଥମ ସାଧାରଣ ସମ୍ପାଦକ ହୋଇଥିଲେ ।

**ଅହିଂସା ଅସହଯୋଗ ଆନ୍ଦୋଳନ:** ୧୯୨୧ ମସିହା ଅହିଂସା ଅସହଯୋଗ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ । ତାଙ୍କ ନେତୃତ୍ୱରେ ଓଡ଼ିଶାର ସହର ବଜାରଠାରୁ ଆରମ୍ଭ କରି ପୁରପଲ୍ଲୀ ପର୍ଯ୍ୟନ୍ତ ଅହିଂସା ଅସହଯୋଗ ଆନ୍ଦୋଳନ ଦାବାଗ୍ନି ପରି ବ୍ୟାପୀ ଯାଇଥିଲା । ଗାନ୍ଧିଜୀଙ୍କ ଆହ୍ୱାନରେ ବହୁ ଯୁବକ ସରକାରୀ ଚାକିରି ଓ ପାଠପଢ଼ା ପରିତ୍ୟାଗ କରି ଆନ୍ଦୋଳନରେ ଝାସ ଦେଇଥିଲେ । ଗୋପବନ୍ଧୁ ଚୌଧୁରୀ ଯାଜପୁରରେ ଡେପୁଟି କଲେକ୍ଟର ପଦରୁ ଇସ୍ତଫା ପ୍ରଦାନ କରି ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରମୁଖ କଲେଜ ପାଠପଢ଼ା ପରିତ୍ୟାଗ କରି ଆନ୍ଦୋଳନରେ ଝାସ ଦେଇଥିଲେ । ବିହାରର ଚୌରୀଚୌରାଠାରେ ଉତ୍ତ୍ୟକ୍ତ ଜନତା ଏକ ଇଂରେଜ ସରକାରଙ୍କ ପୋଲିସ୍‌କୁ ଜୀବନ୍ତ ଦଗ୍ଧ କରିଦେବାରୁ ମହାତ୍ମା ଗାନ୍ଧୀ ମର୍ମାହତ ହୋଇ ଅହିଂସା ଅସହଯୋଗ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଇଥିଲେ । ଜନସାଧାରଣଙ୍କୁ ପ୍ରକୃତ ଅହିଂସା ମାର୍ଗ ବିଷୟରେ ଶିକ୍ଷା ନଦେଇ ଏତେବଡ ଆନ୍ଦୋଳନକୁ ଠେଲିଦେଇ ମୁଁ ହିମାଳୟ ପରି ଭୁଲ କରିଛି ବୋଲି ଗାନ୍ଧିଜୀ ସ୍ୱୀକାର କରିଥିଲେ ।

**ଗାନ୍ଧିଜୀଙ୍କ ଓଡ଼ିଶାରେ ପଦଯାତ୍ରା:** ଏହା ପରେ ଆରମ୍ଭ ହେଲା ଗାନ୍ଧିଜୀଙ୍କ ଭାରତ ବ୍ୟାପୀ ପଦଯାତ୍ରା । ୧୯୨୪ରେ ଓଡ଼ିଶାରେ ଗାନ୍ଧିଜୀଙ୍କ ପ୍ରଥମ ପଦଯାତ୍ରା ଆରମ୍ଭ ହୋଇଥିଲା । ଉତ୍କଳ ପ୍ରଦେଶ କଂଗ୍ରେସ ସଭାପତି ଗୋପବନ୍ଧୁ ଦାସଙ୍କ ଆହ୍ୱାନରେ ରାଜ୍ୟର ହଜାର ହଜାର କର୍ମୀ ଏହି ପଦଯାତ୍ରାରେ ଯୋଗ ଦେଇଥିଲେ । କଟକର ପୁରୀଘାଟଠାରେ କାଠଯୋଡି ନଦୀ ବାଲିରେ ଗୋପବନ୍ଧୁଙ୍କ ସଭାପତିତ୍ୱରେ ବିଶାଳ ସଭା ଅନୁଷ୍ଠିତ ହୋଇଥିଲା ଓ ଜାତିର ଜନକ ମହାତ୍ମା ଗାନ୍ଧୀ ଏହି ଜନସଭାରେ ଭାଷଣ ଦେଇଥିଲେ । ପୁରୀ ସିଂହଦ୍ୱାରରେ ମଧ୍ୟ ଗୋପବନ୍ଧୁଙ୍କ ସଭାପତିତ୍ୱରେ ଅନୁଷ୍ଠିତ ବିଶାଳ ସଭାରେ ମହାତ୍ମା ଗାନ୍ଧୀ ଭାଷଣ ଦେଇଥିଲେ । ୧୯୨୮ ମସିହାରେ ଗୋପବନ୍ଧୁଙ୍କ ମହାପ୍ରୟାଣ ପରେ କଂଗ୍ରେସ ଆନ୍ଦୋଳନ ଓଡ଼ିଶାରେ ଦବିଯାଇ ନଥିଲା । ଦାଣ୍ଡି ଅଭିଯାନ ଓଡ଼ିଶାରେ ସଫଳ ହୋଇଥିଲା ଓ ଇରମଠାରେ ବ୍ରିଟିଶ ସେନାଙ୍କ ଗୁଳିରେ ଅନେକ ସତ୍ୟାଗ୍ରହୀ ଟଳି ପଡିଥିଲେ ସବୁଦିନ ପାଇଁ । ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ନୀଳକଣ୍ଠ ଦାସ, ଡକ୍ଟର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାସ, ରମାଦେବୀ, ମାଳତୀ ଦେବୀ, ସରଳା ଦେବୀ ପ୍ରମୁଖ ନାରୀନେତ୍ରୀମାନେ ସୁରେନ୍ଦ୍ର ନାଥ ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ ଆଦି ଯୁବକମାନେ ସାରା ରାଜ୍ୟରେ କଂଗ୍ରେସକୁ ଲୋକପ୍ରିୟ ଅନୁଷ୍ଠାନରେ ପରିଚିତ କରିପାରିଥିଲେ ।

**ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ:** ୧୯୩୬ ଏପ୍ରିଲ ପହିଲାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ଓ ଓଡ଼ିଶା ବିଧାନସଭା ପାଇଁ ସାଧାରଣ ନିର୍ବାଚନ କରାଗଲା । ପଣ୍ଡିତ ନୀଳକଣ୍ଠ ଦାସ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଥାନ୍ତି ଓ ତାଙ୍କ ନେତୃତ୍ୱରେ ବିଧାନ ସଭାରେ କଂଗ୍ରେସ ଦଳ ବିପୁଳ ସଂଖ୍ୟା ଗରିଷ୍ଠତା ଲାଭ କଲା । କିନ୍ତୁ ଗଭର୍ଣ୍ଣର ଓ ମନ୍ତ୍ରିମଣ୍ଡଳର ସମ୍ପର୍କ ନେଇ ବିବାଦ ଉପୁଜିବାରୁ ଜାତୀୟ କଂଗ୍ରେସ ଦଳ ମନ୍ତ୍ରିମଣ୍ଡଳ ନଗଢିବା ପାଇଁ ନିଷ୍ପତ୍ତି ନେଲା । ଫଳରେ ଓଡ଼ିଶାରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନେତୃତ୍ୱରେ କାମଚଳା ସରକାର ଗଠନ ହୋଇଥିଲା । ପରେ ଇଂରେଜ ସରକାର ଓ ଜାତୀୟ କଂଗ୍ରେସ ମଧ୍ୟରେ ସମସ୍ୟାର ସମାଧାନ ହୋଇଯିବାରୁ ବିଶ୍ୱନାଥ ଦାସଙ୍କ ପ୍ରଧାନମନ୍ତ୍ରିତ୍ୱରେ ଓଡ଼ିଶାରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ।

**ଭାରତ ଛାଡ ଆନ୍ଦୋଳନ:** ୧୯୪୨ ଅଗଷ୍ଟ ୯ ତାରିଖରୁ ଭାରତୀୟ ଜାତୀୟ କଂଗ୍ରେସ ଭାରତଛାଡ ଆନ୍ଦୋଳନ ଆରମ୍ଭ କଲା ଓ ରାଜ୍ୟମାନଙ୍କରେ ଥିବା କଂଗ୍ରେସ ସରକାରଗୁଡିକ ଇସ୍ତଫା ପ୍ରଦାନ କରି ଆନ୍ଦୋଳନରେ ସାମିଲ ହେଲେ । ଓଡ଼ିଶାରୁ ହଜାର ହଜାର ନେତା ଓ କର୍ମୀ ଗିରଫ ହୋଇ ଜେଲ୍‌ରେ ରହିଲେ । କୋରାପୁଟର ଲକ୍ଷ୍ମଣ ନାଏକଙ୍କୁ ବ୍ରହ୍ମପୁର ଜେଲ୍‌ରେ ଫାଶୀ ଦିଆଯିବା ଅତ୍ୟନ୍ତ ଦୁଃଖଦାୟକ ଥିଲା । ସବୁ ନେତାମାନେ ଜେଲ୍ ଯାଇଥିବା ବେଳେ ସୁରେନ୍ଦ୍ର ନାଥ ଦ୍ୱିବେଦୀ କେତେକ ସହକର୍ମୀଙ୍କ ସହ ଅଣ୍ଡର ଗ୍ରାଉଣ୍ଡ୍‌ରେ ରହି ଆନ୍ଦୋଳନ ଚଳାଇ ରଖିଥିଲେ । ସେ ଜୟପ୍ରକାଶ ନାରାୟଣ, ରାମ ମନୋହର ଲୋହିଆଙ୍କ ସହ

ସମ୍ପର୍କ ରକ୍ଷା କରିଥିଲେ । **ପାଇଲଟ୍ ବିଜୟାନନ୍ଦ ପଟ୍ଟନାୟକ:** ଇଂରେଜ ସରକାରଙ୍କ ପାଇଲଟ ଥିବା ବିଜୟାନନ୍ଦ ପଟ୍ଟନାୟକ ଗୁପ୍ତରେ ଜୟପ୍ରକାଶ, ରାମ ମନୋହର ଲୋହିଆ ଓ ଅରୁଣା ଆସଫ୍ ଅଲ୍ଲୀଙ୍କୁ ବିମାନରେ ବିଭିନ୍ନ ସ୍ଥାନକୁ ରାତ୍ରିରେ ନେଇ ଯାଉଥିବାରୁ ସେମାନେ ଧରାପଡୁ ନଥିଲେ । ଶେଷରେ ବିଜୁବାବୁଙ୍କ ଏହି ଗୋପନୀୟ କାର୍ଯ୍ୟ ଜଣାପଡିଥିଲା ଓ ସେ ଦିଲ୍ଲୀରେ ଗିରଫ ହୋଇ ଜେଲ୍ ଯାଇଥିଲେ । ଏହିପରି ଓଡ଼ିଶାର କୋଣ ଅନୁକୋଣରେ ଭାରତଛାଡ ଆନ୍ଦୋଳନ ବ୍ୟାପି ଯାଇଥିଲା । ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସମିତିର ସଦସ୍ୟ ହିସାବରେ ଡକ୍ଟର ମହତାବ ଅହମ୍ମଦାବାଦ୍ ଫୋର୍ଟରେ ନେହେରୁ ଓ ପଟେଲ ଆଦି ଅନ୍ୟ କର୍ମୀ କମିଟି ସଦସ୍ୟମାନଙ୍କ ସହିତ ବନ୍ଦୀ ହୋଇ ରହିଥିଲେ । ଓଡ଼ିଶାର ସମସ୍ତ କଏଦୀଖାନା କଂଗ୍ରେସ କର୍ମୀ ଓ ନେତାମାନଙ୍କ ଦ୍ୱାରା ପୂରି ଯାଇଥିଲା । ବୟସ୍କ ନେତା, ଯୁବଗୋଷ୍ଠୀ, ମହିଳାଗୋଷ୍ଠୀ ଓ ଛାତ୍ରଗୋଷ୍ଠୀ ସମସ୍ତେ ଏହି ଆନ୍ଦୋଳନରେ ଲମ୍ଫ ପ୍ରଦାନ କରିଥିଲେ । ଓକିଲ ଓ ଶିକ୍ଷକମାନେ ବହୁ ସଂଖ୍ୟାରେ ଆନ୍ଦୋଳନରେ ଭାଗ ନେଇଥିଲେ । କୋରାପୁଟର ସଦାଶିବ ତ୍ରିପାଠୀ ଯେ କି ପରେ ମୁଖ୍ୟମନ୍ତ୍ରୀ ହୋଇଥିଲେ ସେ ଶିକ୍ଷକତା ଛାଡି ଏହି ଆନ୍ଦୋଳନରେ ଯୋଗ ଦେଇଥିଲେ ।

ଭାରତଛାଡ ଆନ୍ଦୋଳନ ସମୟରେ ରେଭେନ୍ସା ମହାବିଦ୍ୟାଳୟରେ ଉଡୁଥିବା ୟୁନିୟନ୍‌ଜ୍ୟାକ୍ ପତାକାକୁ ମନମୋହନ ମିଶ୍ର, ନୀଳମଣି ରାଉତରାୟ ଓ ପ୍ରଦୀପ୍ତ କିଶୋର ଦାସ ପ୍ରମୁଖ ଛାତ୍ରନେତାମାନେ ଖୋଲିଦେଇ ଜାତୀୟ କଂଗ୍ରେସର ପତାକା ଉଡାଇଥିଲେ ।

ଏହିପରି ଭାବରେ ଭାରତର ମୁକ୍ତି ଆନ୍ଦୋଳନକୁ ଓଡ଼ିଶାର ଦାନ ଅତୁଳନୀୟ ଥିଲା ।

ପୂର୍ବତନ ବିଧାୟକ, ମାହାଙ୍ଗା

# ଆଜି ସେହି ଶୁଭଦିନ

**କାଞ୍ଚନ ମିଶ୍ର**

ଆମ ଭାରତର ହସ୍ତିନାପୁରରେ
ଥିଲେ ସମ୍ରାଟ ଭରତ
ତାଙ୍କରି ନାମରେ ଆମ ଜନ୍ମଭୂମି
ହୋଇଛି ଆଜି ଭାରତ ।

ଆମ ଆର୍ଯ୍ୟଭୂମି ପୁଣ୍ୟଦେବ ଭୂମି
ପୁରାତନ ଏହି ଦେଶ
ଲଭିଥିଲା ଖ୍ୟାତି ଦେଶ ବିଦେଶରେ
ଚାରିଆଡେ ତା'ର ଯଶ

ସୁନାର ଭାରତେ ସୁଖଦୁଃଖ ମଣି
କାଟୁଥିଲୁ ଆମେ ଦିନ
ଦୁର୍ଭାଗ୍ୟ ଆସିଲା ଆମ ଭାରତକୁ
ବିଦେଶୀଙ୍କ ଆଗମନ ।

ଇଂରେଜୀ ଶାସନ ଅବସାନ ପାଇଁ
ସର୍ବେ ହେଲେ ଏକଯୁଟ
କ୍ରମେ ଆନ୍ଦୋଳନ ବ୍ୟାପିଲା ଦେଶରେ
ଚାରିଆଡେ ଧର୍ମଘଟ ।

ଭାରତବାସୀଙ୍କ ବିରୋଧକୁ ଦେଖି
ଗୋରା ସରକାର ଡରି
ସ୍ଥିର କରି ଗଲେ ସ୍ୱଦେଶ ପ୍ରସ୍ଥାନ
ଶାସନରୁ ଅପସରି ।

ଉଣେଇଶ ଶହ ସତଚାଳିଶରେ
ଅଗଷ୍ଟ ପନ୍ଦର ଦିନ
ସେହିଦିନ ଆମେ ଲଭିଲୁ ସ୍ୱାଧୀନ
ଆଜି ସେହି ଶୁଭଦିନ ।

ଜୟଦୁର୍ଗା ନଗର, ବମିଖାଲ
ଭୁବନେଶ୍ୱର

# ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ମୂଳି ବାଉଁଶ ଓ ଠେଙ୍ଗା କାହାଣୀ

ରାମଚନ୍ଦ୍ର ଦାଶ

ଫିରିଙ୍ଗିମାନେ ଆମ ସ୍ୱର୍ଣ୍ଣପ୍ରସୂ ଭାରତର ଐଶ୍ୱର୍ଯ୍ୟ ଦେଖି ଇଷ୍ଟ ଇଣ୍ଡିଆ କମ୍ପାନୀ ନାମରେ ଏଠାରେ ରହି ଭାରତବର୍ଷକୁ ପରାଧୀନତାର ଶୃଙ୍ଖଳ ପିନ୍ଧାଇ ଦେଲେ । ସେମାନେ ଆମ ଓଡ଼ିଶାର କେତେକ ଅଞ୍ଚଳରେ ବାଣିଜ୍ୟ କୋଠି ସ୍ଥାପନ କରି ପ୍ରତ୍ୟେକ ଗଡଜାତ ଅଞ୍ଚଳ ଶାସନ ନିମନ୍ତେ ଜଣେ ଜଣେ ପଲିଟିକାଲ ଏଜେଣ୍ଟ ନିଯୁକ୍ତ କରିଥିଲେ । ଇଂରେଜମାନଙ୍କ ତରଫରୁ ରଣପୁର ଅଞ୍ଚଳ ନିମନ୍ତେ ବେଜେଲଗେଟ୍ ନାମରେ ଜଣେ ଦୁର୍ଦ୍ଧର୍ଷ ଓ ଅତ୍ୟାଚାରୀ ପଲିଟିକାଲ ଏଜେଣ୍ଟ ନିଯୁକ୍ତ କରାଯାଇଥିଲା ।

ବେଜେଲଗେଟ୍ ଅତ୍ୟାଚାରରେ ରଣପୁରବାସୀ କାକୁସ୍ଥ ହୋଇ ରହୁଥିଲେ । କ୍ରମେ ଏଠାରେ ସ୍ୱାଧୀନତା ଆନ୍ଦୋଳନ ମୁଣ୍ଡ ଟେକିଲା । ଉତ୍ୟକ୍ତ ମେଳିଆମାନେ ଅତ୍ୟାଚାରୀ ବେଜେଲଗେଟ୍‌କୁ ବାଉଁଶ ମୂଳି ଓ ଠେଙ୍ଗା ସାହାଯ୍ୟରେ ପିଟିପିଟି ମାରିଦେଲେ । ତଡିତ୍ ବେଗରେ ବେଜେଲଗେଟ୍ ବିପ୍ଳବୀଙ୍କ ହାତରେ ମରିବା ଖବର ବିଲାତ୍ ପାର୍ଲାମେଣ୍ଟକୁ ଚାଲିଗଲା । ପାର୍ଲାମେଣ୍ଟର ବଡଲାଟ୍ ବେଜେଲଗେଟ୍ କିପରି ଓ କେଉଁ ଅସ୍ତ୍ର ସାହାଯ୍ୟରେ ମଲେ, ଏହାର ବିବରଣୀ ଜାଣିବାକୁ ଚାହିଁଲେ । ବଡଲାଟ୍ ଜାଣିଥିଲେ ଭାରତରେ ବନ୍ଧୁକ, ଗୁଳି, ତୋପ ଆଦି ନଥାଏ ।

ରଣପୁର ଅଞ୍ଚଳର ବେଜେଲଗେଟ୍ ହତ୍ୟାକାଣ୍ଡ ପରେ ବିଲାତ ପୋଲିସ୍ ଜବତ କରିଥିବା ବ୍ୟବହୃତ ବାଉଁଶ ମୂଳି ଓ ଠେଙ୍ଗା ସବୁ ପାଣିଜାହାଜରେ ଯାଇ ବିଲାତ ପାର୍ଲାମେଣ୍ଟରେ ଦାଖଲ କରାଗଲା । ଜବତ ଅସ୍ତ୍ର ତାଲିକାରେ ମନ୍ତବ୍ୟ ଲେଖାଥିଲା ରଣପୁରର ଉତ୍ୟକ୍ତ ମେଳିଆମାନେ ଏହି ବାଉଁଶ ମୂଳି ଓ ଠେଙ୍ଗା ଅସ୍ତ୍ରରେ ସାହେବଙ୍କର ମୁଣ୍ଡ ଫଟାଇ ମାରି ଦେଇଥିଲେ ।

ବଡଲାଟ୍ ଏସବୁ ଅସ୍ତ୍ର ଦେଖି ପଚାରିଲେ ଏହା କିପରି ଫୁଟେ ? ପୋଲିସ ଅଧିକାରୀମାନେ କହିଲେ ଏହା ଫୁଟେ ନାହିଁ । ବଡଲାଟ ପୁଣି କହିଲେ ଫୁଟେ ନାହିଁ ତ ବେଜେଲଗେଟ୍ ମଲେ କେମିତି ? ମୋତେ ଏହା ପରିଚାଳନା କରି ଦେଖାଅ ।

ପୋଲିସ ଅଧିକାରୀମାନେ ସନ୍ତର୍ପଣ ଭାବେ କହିଲେ, ଆପଣ ଅନୁମତି ଦେଲେ ଆମେ ଏହା ପ୍ରଦର୍ଶନ କରିବୁ । ବଡଲାଟ ଅନୁମତି ଦେଲେ । ଦଳେ ପୋଲିସ୍ ଅଧିକାରୀ ମୂଳି ବାଉଁଶ ଧରିଲେ ଆଉ ପଂଝାଏ ଠେଙ୍ଗା ଧରିଲେ । ଯେଉଁମାନେ ବାଉଁଶ ମୂଳି ଧରିଥିଲେ, ସେମାନେ ମୂଳିରେ ବଡଲାଟ୍‌ଙ୍କୁ ଆଘାତ ଦେଲେ ଓ ଯେଉଁମାନେ ଠେଙ୍ଗା ଧରିଥିଲେ ସେମାନେ ଠେଙ୍ଗାରେ ବଡଲାଟଙ୍କ ଚିକ୍‌ମିକିଆ ଚନ୍ଦାମୁଣ୍ଡକୁ ଆଘାତ କଲେ ।

ବଡ୍‌ଲାଟ୍ ଚିତ୍କାର କରି କହିଲେ 'ହାଓ ଡେଞ୍ଜରସ୍ ଦିଜ୍ ୱେପନ୍‌ସ ଆର ! କିପ୍ ଦେମ୍ ଇନ୍ ଆୱାର ମ୍ୟୁଜିୟମ ଷ୍ଟେଟିଙ୍ଗ ଦି ଫ୍ୟାକ୍ଟସ୍ ।' ସେହିଦିନ ଠାରୁ ବିଲାତ୍ ମ୍ୟୁଜିୟମରେ ଆମ ଓଡ଼ିଶା ରଣପୁର ବାଉଁଶ ମୂଳି ଓ ଠେଙ୍ଗା ବିଲାତ ମ୍ୟୁଜିୟମରେ ବେଜେଲଗେଟ୍ ହତ୍ୟା କାହାଣୀ ମନ୍ତବ୍ୟ ସହିତ ସଂରକ୍ଷିତ ହୋଇ ରହିଛି ।

ବିଦ୍ୟାଧରପୁର (ସୁଆଣ୍ଡୋ)
ଗୁଆଳିଗୋରଡା, ଗବକୁଣ୍ଡ
ପୁରୀ– ୭୫୨୦୪୫

# ବିଶିଷ୍ଟ ଗାନ୍ଧୀବାଦୀ ଓ ମୁକ୍ତି ସଂଗ୍ରାମୀ ନନ୍ଦକିଶୋର

କୃଷ୍ଣଚନ୍ଦ୍ର ସୁଆର

ଭାରତର ମୁକ୍ତିସଂଗ୍ରାମ ଯେଉଁମାନଙ୍କ ଆତ୍ମତ୍ୟାଗ ଦ୍ୱାରା ପରିପୁଷ୍ଟ ହୋଇଥିଲା, ସେମାନଙ୍କ ମଧ୍ୟରେ ବିଶିଷ୍ଟ ଗାନ୍ଧିବାଦୀ ଓ ମୁକ୍ତି ସଂଗ୍ରାମୀ ନନ୍ଦକିଶୋର ଦାସ ଥିଲେ ଅନ୍ୟତମ ।

ସ୍ୱାଧୀନତା ଆନ୍ଦୋଳନ ସହିତ ସେ ପ୍ରତ୍ୟକ୍ଷଭାବେ ସଂପୃକ୍ତ ରହି ଭାରତଛାଡ ଆନ୍ଦୋଳନରେ ବାଇଶି ମାସ, ଲବଣ ସତ୍ୟାଗ୍ରହରେ ଅଠର ମାସ, ସତ୍ୟାଗ୍ରହ ଓ ହରିଜନ ଆନ୍ଦୋଳନରେ ଏକୋଇଶି ମାସ ସଶ୍ରମ କାରାଦଣ୍ଡ ଭୋଗ କରି ବ୍ରିଟିଶ ଶକ୍ତିଙ୍କ ଦ୍ୱାରା ନିର୍ଯାତିତ ହୋଇଥିଲେ । ସେ ଥିଲେ ଏକାଧାରରେ ଜଣେ ବିଶିଷ୍ଟ ଗାନ୍ଧିବାଦୀ, ସ୍ୱାଧୀନତା ସଂଗ୍ରାମୀ, ଆଦର୍ଶ ଶିକ୍ଷକ, ସଂଗଠକ, ସାଂସଦ, ବକ୍ତା, ସୁଲେଖକ, ସରଳ ଓ ନିରାଡମ୍ବର ସ୍ୱଭାବର । ଛାତ୍ରାବସ୍ଥାରେ ଦେଶବନ୍ଧୁ ଚିତ୍ତରଂଜନ, ବିପିନ ବିହାରୀ ପାଲ ଓ ଜୀତେନ୍ଦ୍ରନାଥ ବାନାର୍ଜୀ ପ୍ରଭୃତିଙ୍କ ଓଜସ୍ୱିନୀ ଭାଷଣମାନ ଶୁଣି ସେ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇଥିଲେ । ସେ ଚାହିଁ ଥିଲେ ଖୁବ୍ ଉଚ୍ଚପଦସ୍ଥ ଚାକିରି କରି ଅର୍ଥ ରୋଜଗାର କରିପାରିଥାନ୍ତେ କିନ୍ତୁ ସେ ତାହା ନକରି ସ୍ୱାଧୀନତା ସଂଗ୍ରାମରେ ନିଜକୁ ଝାସ ଦେଇଥିଲେ । ଏହି ବହୁମୁଖୀ ପ୍ରତିଭା ସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ବାଲେଶ୍ୱର ଜିଲ୍ଲା ସୋର ଥାନା ଅନ୍ତର୍ଗତ ଗୁହାରିଆସାହି ଗ୍ରାମରେ ୧୮୯୪ ମସିହା ଅଗଷ୍ଟ ମାସ ପବିତ୍ର ନନ୍ଦୋତ୍ସବରେ । ତାଙ୍କ ପିତାଙ୍କ ନାମ ଶ୍ୟାମ ଚରଣ ଦାସ ଓ ମାତାଙ୍କ ନାମ ଅମ୍ବିକା ଦେବୀ । ନୀଳଗିରି ପ୍ରଜାମଣ୍ଡଳର ନେତା ଓ ସଭାପତି ଏବଂ ସ୍ୱାଧୀନତା ସଂଗ୍ରାମୀ । ନନ୍ଦୋତ୍ସବ ଦିନ ଜନ୍ମ ଗ୍ରହଣ କରିଥିବାରୁ ପିତା ତାଙ୍କ ନାମ ରଖିଥିଲେ ନନ୍ଦକିଶୋର । ତାଙ୍କ ଉପରେ ଜଣେ ଭଉଣୀ । ନାଁ ଥିଲା ମୋହିନୀ, ତଳେ ଜଣେ ଭାଇ । ବାଲ୍ୟାବସ୍ଥାରେ ତାଙ୍କ ପିତାଙ୍କ ଦେହାନ୍ତ ହୋଇଥିଲା । ମା'ଙ୍କୁ ମିଶାଇ ପରିବାରରେ ଚାରିଜଣ ସଦସ୍ୟ ହେତୁ 'ନିଜର ଦାରିଦ୍ର୍ୟକୁ ପଦାରେ ଦେଖାଅ ନାହିଁ । ନିଜ ଗୋଡରେ ଠିଆହୁଅ' ବୋଲି ମା' କହୁଥିଲେ ଓ ଏହା ତାଙ୍କ ଉପରେ ଗଭୀର ପ୍ରଭାବ ପଡିଥିଲା । ବହୁ ଆର୍ଥିକ ଅସ୍ୱଚ୍ଛଳତା ମଧ୍ୟରେ ତାଙ୍କ ଜୀବନ କୁସୁମ ବିକଶିତ ହୋଇଥିଲା ।

ସ ଗ୍ରାମରେ ପ୍ରାଇମେରୀ ଶିକ୍ଷା ସମାପ୍ତି କରି ସାରିବା ପରେ ମଧ୍ୟ ଇଂରାଜୀ ଶିକ୍ଷା ନିମନ୍ତେ ୧୯୧୦ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଏଣ୍ଟ୍ରାନ୍‌ସ ଶ୍ରେଣୀରେ ନାମ ଲେଖାଇ ଥିଲେ । ସେତେବେଳେ ସେଠାକାର ପ୍ରଧାନ ଶିକ୍ଷକ ଥିଲେ ଉପେନ୍ଦ୍ର ନାରାୟଣ ଦତ୍ତଗୁପ୍ତ । ତାଙ୍କର ସ୍ନେହ, ଶ୍ରଦ୍ଧା ତାଙ୍କୁ ଭବିଷ୍ୟତ ନିର୍ମାଣ ପାଇଁ ଉତ୍ସାହ ଦେଇଥିଲା । ୧୯୧୪ ମସିହାରେ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଏବଂ ସମଗ୍ର ବିହାର ଓଡିଶା ବୃତ୍ତି ତାଲିକାରେ ପଞ୍ଚମ ସ୍ଥାନ ଅଧିକାର କରିଥିଲେ । ବାଲେଶ୍ୱର ଜିଲ୍ଲା ସ୍କୁଲରୁ ଓଡିଶାରେ ପ୍ରଥମ ହୋଇ ସେ ବୃତ୍ତି ପାଇଥିବାରୁ ସ୍କୁଲ ତରଫରୁ ତାଙ୍କୁ ସ୍ୱର୍ଣ୍ଣ ପଦକ ଦିଆଯାଇଥିଲା । ତତ୍ପରେ ସେ କଟକ ରେଭେନ୍ସା କଲେଜରେ ଅଧ୍ୟୟନ କରିଥିଲେ । ଖେଳ, ନାଟକ ପ୍ରତି ମଧ୍ୟ ତାଙ୍କର ଆଗ୍ରହ ଥିଲା । ୧୯୧୬ ମସିହାରେ ଆଇ.ଏ., ୧୯୧୮ ମସିହାରେ ଇଂରାଜୀ ଅନର୍ସ ସହ ବି.ଏ. ପାସ୍ କରିଥିଲେ । କଲେଜ ଅଧ୍ୟୟନ କାଳରେ ସେ ପଣ୍ଡିତ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ପ୍ରମୁଖ ସାଧକମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ୧୯୧୮ ମସିହାରେ ଏମ୍.ଏ ଓ ଆଇନ୍ ପଢ଼ିବା ପାଇଁ ସେ କଲିକତା ଯାଇଥିଲେ । ସେତେବେଳେ ଓଡିଶାରେ ଏମ୍.ଏ. ନଥିଲା । ଯେଉଁମାନେ ଉଚ୍ଚ ଶିକ୍ଷା ଅଧ୍ୟୟନ କରିବାକୁ ଚାହୁଁଥିଲେ, ସେମାନଙ୍କୁ କଲିକତା କିମ୍ବା ପାଟନା ଯିବାକୁ ପଡୁଥିଲା । କଲିକତା ବିଶ୍ୱବିଦ୍ୟାଳୟରୁ ୧୯୨୦ ମସିହାରେ ସେ ଇଂରାଜୀରେ ଏମ୍.ଏ. ପାସ୍ କରିଥିଲେ । ସେଠାରେ ରହଣି କାଳରେ ତାଙ୍କର ରାଜନୀତିକ ଜୀବନ ଆରମ୍ଭ ହୋଇଥିଲା । ବିଶେଷଭାବେ ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କରିଥିଲେ ଏବଂ ୧୯୨୧ରେ ସାବରମତୀ ଯାଇ କଂଗ୍ରେସ ଅଧିବେଶନରେ ଯୋଗ

ଦେଇଥିଲେ । ତତ୍ପରେ ଗୋପବନ୍ଧୁ ତାଙ୍କ ସେବା ସ୍ୱଦେଶପ୍ରୀତି ଓ ନିର୍ଭୀକ ଚିନ୍ତାଧାରାରେ ପ୍ରୀତ ହୋଇ ତାଙ୍କ ପ୍ରତିଷ୍ଠିତ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଇଂରାଜୀ ଶିକ୍ଷକ ଭାବରେ ନିଯୁକ୍ତି ଦେଇଥିଲେ । ୧୯୨୨ ଏପ୍ରିଲ୍ ମାସରୁ ୧୯୨୬ ମସିହା ପର୍ଯ୍ୟନ୍ତ ସେ ସେଠାରେ କାର୍ଯ୍ୟ କରି ସମସ୍ତଙ୍କର ପ୍ରିୟଭାଜନ ହୋଇଥିଲେ । ସେହି ସମୟରେ ସେ ଗୋପବନ୍ଧୁଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । ଆର୍ଥିକ ଦୁରବସ୍ଥା ଯୋଗୁଁ ସତ୍ୟବାଦୀ ବିଦ୍ୟାଳୟକୁ ଯେତେବେଳେ ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ କରିବା ବା ସରକାରଙ୍କ ସାହାଯ୍ୟ ସହାନୁଭୂତି ଲୋଡିବା ପାଇଁ ମସୁଧା କରାଗଲା, ସେତେବେଳେ ସେ ଜାତୀୟ ବିଦ୍ୟାଳୟ ତା'ର ମୂଳ ଆଦର୍ଶରୁ ବିଚ୍ୟୁତ ହେଉଥିବା ଓ ଗୋପବନ୍ଧୁ ଜାତୀୟ ବିଦ୍ୟାଳୟଠାରୁ ସଂପର୍କ ଛିନ୍ନ ହେବା ଲକ୍ଷ୍ୟ କରି ଶିକ୍ଷକତାରୁ ଇସ୍ତଫା ଦେଇଥିଲେ । ତତ୍‌ପରେ ପୂର୍ଣ୍ଣ ପ୍ରାଣରେ ସେ ଜାତୀୟ କାର୍ଯ୍ୟ, ରାଜନୀତି ଓ କଂଗ୍ରେସ ସଭ୍ୟ ହୋଇ ବିଭିନ୍ନ କାର୍ଯ୍ୟକ୍ରମରେ ଯୋଗ ଦେଲେ । ସେହି ସମୟରେ ସେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଂପାଦକ ଭାବରେ ମନୋନୀତ ହୋଇଥିଲେ । ପରେ ପରେ ତାଙ୍କର କାର୍ଯ୍ୟଦକ୍ଷତା ଓ ସେବା ନିଷ୍ଠା ସକାଶେ ୧୯୨୬ ମସିହାରେ ବିହାର–ଓଡିଶା କାଉନ୍‌ସିଲକୁ ନିର୍ବାଚିତ ହୋଇଥିଲେ । ବାଲେଶ୍ୱର ମୁନିସ୍‌ପାଲିଟି ଓ ଜିଲ୍ଲା ବୋର୍ଡର ସଭ୍ୟ ଭାବରେ ମଧ ସେ କାର୍ଯ୍ୟ କରିଥିଲେ । ଡକ୍ଟର ମହତାବ ଥିଲେ ତାଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ସହଯୋଗୀ । ତାଙ୍କ ସଂପାଦିତ ପ୍ରଜାତନ୍ତ୍ରରେ ସେତେବେଳେ ସେ ଇଂରେଜ ସରକାରଙ୍କ ବିରୁଦ୍ଧରେ ଧାରାବାହିକ ଲେଖାଲେଖି କରୁଥିଲେ । ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ୧୯୩୦ ମସିହାରେ ବିଦେଶୀ ଜିନିଷ ବର୍ଜନ ଓ ବାଲେଶ୍ୱର ଜିଲ୍ଲାର ଇଂଚୁଡି ଲବଣ ସତ୍ୟାଗ୍ରହ ଏଭଳି ଭାବେ ହୋଇଥିଲା ଯେ ଭାରତର ସମସ୍ତ ଇଂରେଜୀ ଶାସନକୁ ଦୋହଲାଇ ଦେଇଥିଲା । ଲବଣ ସତ୍ୟାଗ୍ରହରେ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ସେ ବିହାର ଓଡିଶା ବ୍ୟବସ୍ଥାପକ ସଭାର ସଭ୍ୟ ପଦରୁ ଇସ୍ତଫା ଦେଇ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ବିଭିନ୍ନ ଅଂଚଳକୁ ଯାଇ ସତ୍ୟାଗ୍ରହରେ ଯୋଗ ଦେବା ପାଇଁ ଲୋକମାନଙ୍କୁ ଅନୁପ୍ରାଣିତ କରିବା ଥିଲା ତାଙ୍କର କାର୍ଯ୍ୟ । ସେ ରଚନା କରିଥିବା କେତେକ କବିତା ସତ୍ୟାଗ୍ରହୀମାନଙ୍କ ପ୍ରାଣରେ ସ୍ପନ୍ଦନ ଆଣୁଥିଲା ଆନ୍ଦୋଳନରେ ଝାସ ଦେବା ପାଇଁ ।

ସେଇଥିପାଇଁ ପ୍ରଥମେ ୪/୫ଦିନ ବାଲେଶ୍ୱର ଜେଲ୍‌ରେ ରହିବା ପରେ ତାଙ୍କୁ ୧୮ ମାସ ହଜାରୀବାଗ ଜେଲ୍‌ରେ ସଶ୍ରମ କାରାଦଣ୍ଡ ଭୋଗ କରିବାକୁ ପଡିଥିଲା । ଜେଲ୍ ରହଣି କାଳରେ ସେ କଠୋର ପରିଶ୍ରମ କରିବା ସାଙ୍ଗକୁ ଅବସର ପାଇଲେ ଗୀତା ପାଠ କରୁଥିଲେ । ତାଙ୍କ ସହ ସହବନ୍ଦୀ ଭାବରେ ସେତେବେଳେ ରାଜେନ୍ଦ୍ର ପ୍ରସାଦ, ଅତୁଲ୍ୟ ଘୋଷ, ଗୋପବନ୍ଧୁ ଚୌଧୁରୀ ଏବଂ ମହତାବଙ୍କ ସମେତ ବହୁ ମାନ୍ୟଗଣ୍ୟ ସଂଗ୍ରାମୀ ରହୁଥିଲେ । ଗାନ୍ଧୀ–ଇରଉଇନ ଚୁକ୍ତି ଫଳରେ ମୁକ୍ତି ପାଇଥିଲେ । ପୁଣି ୧୯୩୨ ମସିହା ଜାନୁୟାରୀ ମାସରେ ସତ୍ୟାଗ୍ରହ, ହରିଜନ ଆନ୍ଦୋଳନ ତଥା ଗାନ୍ଧୀ– ଇରଉଇନ ଚୁକ୍ତି ଅବମାନନା ଆଳ ଯୋଗୁଁ ଗିରଫ ହୋଇ ୨୧ ମାସ କାଳ ଜେଲ୍‌ବରଣ କରିଥିଲେ । ୧୯୩୩ ମସିହାରେ ମହାତ୍ମା ଗାନ୍ଧୀଙ୍କର ଐତିହାସିକ ପଦଯାତ୍ରାରେ ସାମିଲ ହୋଇ ସେ ଗାନ୍ଧିଜୀଙ୍କ ସହ ଅନ୍ତରଙ୍ଗ ଆଲୋଚନା କରିବାର ସୁଯୋଗ ଲାଭ କରିଥିଲେ । ଏହା ସମ୍ଭବ ହୋଇଥିଲା ତାଙ୍କ ସାକ୍ଷୀଗୋପାଳ ରହଣି ସମୟରେ । ଏ ସଂପର୍କରେ ସେ ତାଙ୍କ ଆତ୍ମଜୀବନୀରେ କହନ୍ତି – 'ସାକ୍ଷୀଗୋପାଳକୁ ଯିବା ବାଟରେ ଗାନ୍ଧିଜୀ ମୋତେ ଡକାଇଲେ ଓ ଚାଲୁ ଚାଲୁ ମୋ ସହିତ ଅଧଘଣ୍ଟାରୁ ଅଧିକ ସମୟ କଥାବାର୍ତ୍ତା କରିଥିଲେ । ଓଡିଶାର ଦୃଢ଼ଷ୍ଠ ରାଜନୈତିକ କର୍ମୀମାନଙ୍କ ମଧରେ ମୁଁ ଜଣେ ଅତି ଦୃଢ଼ଷ୍ଠ କର୍ମୀ ବୋଲି ସେ କୌଣସି ସୂତ୍ରରୁ ଆଗରୁ ଶୁଣିଥିଲେ । ଗାନ୍ଧୀ ସେବାସଂଘର ସ୍ଥାୟୀ କର୍ମୀ ହିସାବରେ ମୋତେ ନିଆଯିବାର ପ୍ରସ୍ତାବ ସମ୍ବନ୍ଧରେ ସାମାନ୍ୟ ଆଲୋଚନା ହୋଇଥିଲା ।'

୧୯୩୬ରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ୧୯୩୭ ନିର୍ବାଚନରେ ସେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇ ଓଡିଶା ବିଧାନସଭାର ଉପବାଚସ୍ପତି ଭାବରେ କାର୍ଯ୍ୟ କରିଥିଲେ । ୧୯୪୨ମସିହା ଭାରତଛାଡ ଆନ୍ଦୋଳନରେ ପୁନଶ୍ଚ ଗିରଫ ହୋଇ ୨୨ ମାସ କାଳ ଅଟକବନ୍ଦୀ ଭାବରେ ବାଲେଶ୍ୱର ଜେଲ୍‌ରେ ରହିଥିଲେ । ତାଙ୍କୁ ବ୍ରହ୍ମପୁର ଜେଲ୍‌କୁ ସ୍ଥାନାନ୍ତରିତ କରାଯାଇ ନଥିଲା । ସ୍ୱାଧୀନତା ସଂଗ୍ରାମ କାଳରେ ସେ ଭାରତବର୍ଷର ତଥା ଓଡିଶାର ବହୁ ବଡବଡ ଲୋକଙ୍କ ସଂପର୍କରେ ଆସିଥିଲେ । ୧୯୪୪ ମସିହାରେ ଜେଲ୍‌ରୁ ଖଲାସ ହୋଇ ଆସିବା ପରେ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟି ସଭାପତି ଓ ପରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଭାବେ ସେ ନିଯୁକ୍ତ ହୋଇଥିଲେ । ୧୯୪୬ ମସିହାରେ କେନ୍ଦ୍ରୀୟ ବ୍ୟବସ୍ଥାପକ ସଭାକୁ ସେ ନିର୍ବାଚିତ ହୋଇଥିଲେ ଏବଂ ସମ୍ବିଧାନ ପ୍ରଣୟନ ସମୟରେ ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ । ୧୯୫୧ ମସିହା ସାଧାରଣ ନିର୍ବାଚନରେ ସେ ସୋର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ବିଜୟୀ ହୋଇ ୧୯୫୨ରୁ ୧୯୫୭ ମସିହା (ତା ୦୬.୦୩.୧୯୫୨ ରିଖରୁ ତା ୨୭.୦୫.୧୯୫୭ରିଖ) ପାଞ୍ଚବର୍ଷ ଯାଏଁ ଓଡିଶା ବିଧାନସଭାର ବାଚସ୍ପତି ହୋଇଥିଲେ । ସେତେବେଳେ ସେ ବାଚସ୍ପତି ଭାବରେ ନିଜର ପ୍ରଜ୍ଞା ଓ ଦକ୍ଷତାର ପରିଚୟ ଦେଇଥିଲେ । ଭାରତୀୟ ସମ୍ବିଧାନ ପ୍ରବର୍ତ୍ତନ ପରେ ବାସ୍ତବରେ ସେ ହେଉଛନ୍ତି ଓଡିଶା ବିଧାନ ସଭାର ପ୍ରଥମ ବାଚସ୍ପତି । ସେଥିପାଇଁ ସମଗ୍ର

ଓଡିଶା ରାଜ୍ୟରେ ସେ ଥିଲେ ବଡ ଗୌରବର ଅଧିକାରୀ । ସେତେବେଳେ ବର୍ଷିୟାନ ସଂଗ୍ରାମୀ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲେ । ସେ ଗୋଟିଏ ଛୋଟ ଘରେ ରହିବା ସାଙ୍ଗକୁ ଚାଲିଚାଲି ବିଧାନସଭାକୁ ଯାଉଥିଲେ ଏବଂ ରେଳରେ ତୃତୀୟ ଶ୍ରେଣୀ ଡବାରେ ଯାତାୟାତ କରୁଥିଲେ । ବହୁ ଅଭାବ ଅସୁବିଧା ଭିତରେ ରହୁଥିଲେ ମଧ୍ୟ ସେ ପାଉଥିବା ଦରମା ଟଙ୍କାରୁ ଦେଢ଼ଶହ ଟଙ୍କା ଭୂଦାନ ପାଣ୍ଠିକୁ ଦାନ କରୁଥିଲେ ଏବଂ ତାଙ୍କର ୮ ଏକର ପୈତୃକ ସଂପତ୍ତିରୁ ୨ ଏକର ଗରିବ ହରିଜନମାନଙ୍କୁ ଦାନ କରି ଦେଇଥିଲେ । ଏଭଳି ତ୍ୟାଗର ନଜିର ବାସ୍ତବରେ ବିରଳ । ୧୯୬୦ ମସିହାରେ ରାଜ୍ୟସଭାକୁ ତାଙ୍କୁ ସଦସ୍ୟଭାବେ ନିର୍ବାଚିତ କରାଯାଇଥିଲା । ୧୯୬୬ ମସିହା ପରେ କିନ୍ତୁ ସେ ଆଉ ପ୍ରତ୍ୟକ୍ଷ ରାଜନୀତିରେ ଭାଗ ନେଇନଥିଲେ । କେତେକ ବଦାନ୍ୟ ବ୍ୟକ୍ତିଙ୍କ ସହାୟତାରେ ତାଙ୍କ ପ୍ରତିଷ୍ଠିତ ସତ୍ୟାନନ୍ଦ ହାଇସ୍କୁଲ, ଉପେନ୍ଦ୍ରନାଥ କଲେଜ, ଅନାଥ ବାଳିକାଙ୍କ ପାଇଁ ପୁରୁବାଈ କନ୍ୟାଶ୍ରମ, ରାଧାନାଥ ପାଠାଗାର ସହିତ ନିଜକୁ ସଂଶ୍ଳିଷ୍ଟ କରି ସେସବୁ ଅନୁଷ୍ଠାନଗୁଡିକର ଉତ୍ତରୋତ୍ତର ଉନ୍ନତି ଘଟାଇଥିଲେ । ଏତଦ୍‌ବ୍ୟତୀତ ଗାନ୍ଧିଜୀଙ୍କ ଆଦର୍ଶ ଓ ବିନୋବାଙ୍କ ଭୂଦାନ ଆନ୍ଦୋଳନର ବାର୍ତ୍ତା ପ୍ରଚାରରେ ନିମଜ୍ଜିତ ରହିବା ସାଙ୍ଗକୁ ରାଜ୍ୟ ଭୂଦାନ ଯଜ୍ଞ ସମିତି ଓ ଗାନ୍ଧୀ ସ୍ମାରକ ନିଧିର ସଭାପତି ଦାୟିତ୍ୱ ସୁଚାରୁରୂପେ ତୁଲାଇଥିଲେ । ରାଜନୀତି ସାଙ୍ଗଠନିକ କାର୍ଯ୍ୟ ଓ ସମାଜସେବା ଭଳି ଅନେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହ କରିବା ଭିତରେ ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେ ଲେଖନୀ ଚଳାଇ କେତେଖଣ୍ଡ ପୁସ୍ତକ ରଚନା କରିଥିବା ଜାଣିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡେ । ସେ ରଚନା କରିଥିବା ସୃଷ୍ଟି ସମ୍ଭାର ମଧ୍ୟରେ ସାମାଜିକ ଉପନ୍ୟାସ 'ପ୍ରତିଶୋଧ', ଆତ୍ମଜୀବନ ଚରିତ, ମୋ ଜୀବନ ଓ ଜଂଜାଳ କାହାଣୀ ପ୍ରଭୃତି ପ୍ରଧାନ । ୧୯୩୨ ମସିହାରେ ହଜାରିବାଗ ଜେଲ୍‌ରେ ବନ୍ଦୀ ଥିବାବେଳେ ଋଷିପ୍ରତିମ ଆଚାର୍ଯ୍ୟ ହରିହରଙ୍କ ପ୍ରେରଣାରେ ସେ 'ପ୍ରତିଶୋଧ' ରଚନା କରିଥିଲେ । ତାଙ୍କ ରଚିତ 'ମୋ ଜୀବନ ଓ ଜଂଜାଳ କାହାଣୀ' ହେଉଛି ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ମାର୍ମିକ ଇତିହାସ । ଏହାର ଶୈଳୀ ମନୋରମ । ସମାଜ ଅନୁଷ୍ଠାନ ଏ ପୁସ୍ତକ ପ୍ରକାଶ କରିଥିଲେ । ଏଥିରେ ନିଜର ପରିବାର, ଓଡିଶାର ବିଭିନ୍ନ ନେତୃମଣ୍ଡଳୀଙ୍କ ସହିତ ସାହଚର୍ଯ୍ୟ, ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ଭାରତଛାଡ ଆନ୍ଦୋଳନ, ଗାନ୍ଧିଜୀଙ୍କ ସହିତ ସଂପର୍କ, ଜେଲ ଜୀବନ, ସ୍ୱାଧୀନତା ଲାଭ, ଓଡିଶା ବିଧାନସଭାରେ ବାଚସ୍ପତି ଭାବରେ କାର୍ଯ୍ୟ, ବନ୍ୟା ଓ ଦୁର୍ଭିକ୍ଷ ସମୟରେ ସେବା, ସ୍ୱାଧୀନତା ପରେ ନିର୍ବାଚନ ବ୍ୟବସ୍ଥାରେ ଅବକ୍ଷୟ, ରକ୍ତତୀର୍ଥ ଇରମ, ରାଧାନାଥ ପାଠାଗାର, ରାଧାନାଥ ଜୟନ୍ତୀ, କନ୍ୟାଶ୍ରମ ପ୍ରଭୃତି ପ୍ରସଙ୍ଗ ଏଥିରେ ବର୍ଣ୍ଣିତ । ଏତଦ୍‌ବ୍ୟତୀତ ଗାନ୍ଧୀ ରଚନାବଳୀର କେତେଖଣ୍ଡ ପୁସ୍ତକ ସେ ଓଡିଆରେ ଅନୁବାଦ କରିଥିଲେ । ତନ୍ମଧ୍ୟରେ 'ଅହିଂସା' ଅତି ସ୍ୱଚ୍ଛନ୍ଦ ଓ ହୃଦୟସ୍ପର୍ଶୀ । ତାଙ୍କ ରଚିତ 'ମୋ ଜୀବନ ଓ ଜଂଜାଳ' କାହାଣୀ ପାଇଁ ସେ ୧୯୮୩ ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ଏବଂ ଶାରଳା ପୁରସ୍କାର ପ୍ରଦାନର ତୃତୀୟ ବାର୍ଷିକ ସାରସ୍ୱତ ଉତ୍ସବ ତା. ୧୪.୦୬.୧୯୮୨ରେ ତାଙ୍କ ଅନବଦ୍ୟ ଜୀବନ ସଂଗ୍ରାମ, ନିଃସ୍ୱାର୍ଥ ଦେଶସେବା ଓ ନିଷ୍ପାପର ସଂସ୍କୃତି ପ୍ରେମର ସ୍ୱୀକୃତି ସ୍ୱରୂପ ତାଙ୍କୁ ଅଭିନନ୍ଦିତ କରାଯାଇଥିଲା ।

ତାଙ୍କର ପାରିବାରିକ ଜୀବନ ଥିଲା ଅତ୍ୟନ୍ତ ଦୁଃଖମୟ । ବାରମ୍ବାର ସ୍ତ୍ରୀ ଓ ସନ୍ତାନ ବିୟୋଗ ସତ୍ତ୍ୱେ ତାଙ୍କୁ ତାଙ୍କ ସଂଗ୍ରାମୀ ଜୀବନ ପଥରୁ କେବେ ବି ବିଚ୍ୟୁତ କରିପାରି ନଥିଲା । ସେ ପ୍ରତ୍ୟେକ ଦିନ ଭକ୍ତକବି ମଧୁସୂଦନ ରାଓଙ୍କର 'ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ' ପ୍ରାର୍ଥନା ସଂଗୀତ ବୋଲୁଥିଲେ ଓ ଗୀତା ପାଠ କରୁଥିଲେ । ଗୋପବନ୍ଧୁ, ବିଶ୍ୱନାଥ ଦାସ ଓ ନବକୃଷ୍ଣ ଚୌଧୁରୀ ତାଙ୍କର ପ୍ରିୟ ଥିଲେ । ତାଙ୍କ ଆଦର୍ଶବାଦର ସେ ଥିଲେ ଏକନିଷ୍ଠ ଉପାସକ । ସେ ସ୍ୱାଧୀନତା ସଂଗ୍ରାମୀ ପେନ୍‌ସନ୍ ବ୍ୟବସ୍ଥାର ବିରୁଦ୍ଧରେ ଥିଲେ । କିନ୍ତୁ ଘୋର ଆର୍ଥିକ ଅନଟନ ସମୟରେ ଅନିଚ୍ଛାକୃତ ଭାବରେ ପେନ୍‌ସନ୍ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ । ସମାଜରୁ ବର୍ଣ୍ଣ ବୈଷମ୍ୟ ଦୂର କରି ମାନବିକତାର ପ୍ରଚାର ପାଇଁ ସେ ଜାତିପ୍ରଥା ବିରୁଦ୍ଧରେ ସଂଗ୍ରାମରତ ଥିଲେ । ୧୯୮୬ ମସିହା ଜୁନ୍ ୨୮ ତାରିଖ ଦିନ ତାଙ୍କର ମହାପ୍ରୟାଣ ହୋଇଥିଲା । ସେବା, ନୀତି ଓ ଆଦର୍ଶ ଥିଲା ତାଙ୍କର ଅସ୍ଥି ମଜ୍ଜାଗତ । ଯୁବ ସମାଜକୁ ସ୍ୱାବଲମ୍ବୀ ହେବା ପାଇଁ ସେ 'ଖଟିଖାଅ, କାଟିପିନ୍ଧ' ଆହ୍ୱାନ ଦେଇଥିଲେ । ସୂତା କାଟିବା ଥିଲା ତାଙ୍କର ନିତ୍ୟ ନୈମିତ୍ତିକ କାମ । ଜୀବନର ଶେଷ ପର୍ଯ୍ୟନ୍ତ ସେ ନିଜ ହାତରେ ଅରଟରେ ସୂତା କାଟୁଥିଲେ ଓ ହାତକଟା ସୂତାରେ ତିଆରି ଖଦଡ ଲୁଗା ପରିଧାନ କରୁଥିଲେ । ପରିଣତ ବୟସରେ ସାଇକେଲ ଚଢ଼ି ମଧ୍ୟ ସେ ଯିବା ଆସିବା କରୁଥିଲେ । ଗାନ୍ଧିବାଦୀ ତାଙ୍କ ନିଜର ଆଚରଣ ଓ ଚଳଣୀରେ ସର୍ବତୋ ଭାବେ ପ୍ରକଟିତ ହୋଇଥିଲା । ତାଙ୍କ ଭଳି ସରଳ, ଅମାୟିକ ଓ ବିଶିଷ୍ଟ ଗାନ୍ଧିବାଦୀ ମଣିଷ ବାସ୍ତବରେ ବିରଳ । ଆମେ ତାଙ୍କ ଅନାବିଳ ଦେଶପ୍ରୀତି, ଅକୁଣ୍ଠ ସମାଜସେବା ଓ ଆଦର୍ଶରେ ଅନୁପ୍ରାଣିତ ହେବା ସଙ୍ଗେ ସଙ୍ଗେ ଦରିଦ୍ର, ନିଷ୍ପେସିତ ଜନତା ଓ ଦେଶ ସେବାରେ ମନୋନିବେଶ କରିପାରିଲେ ମା' ମାଟି ପାଇଁ ହେବ ବାସ୍ତବରେ ଉଲ୍ଲେଖନୀୟ ସଫଳତା ।

ଏମ୍‌ଆଇଜି–୧–୪୨/୧
ହାଉସିଂବୋର୍ଡ କଲୋନୀ, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର–୧୬

# ଆମ ଜାତୀୟ ପତାକା –ଏକ ଅନୁଶୀଳନ

**ବ୍ରଜ ପାଇକରାୟ**

ବିଶ୍ୱର ପ୍ରତ୍ୟେକ ରାଷ୍ଟ୍ରର ଜାତୀୟ ପତାକା ଓ ଜାତୀୟ ସଂଗୀତ ସଂପୃକ୍ତ ଦେଶବାସୀଙ୍କ ଗୌରବ ଓ ସ୍ୱାଭିମାନର ପ୍ରତୀକ । ଜାତୀୟତାବୋଧ, ଦେଶପ୍ରାଣତା, ଆତ୍ମସମ୍ମାନ ଏବଂ ମର୍ଯ୍ୟାଦାବୋଧର ଭାବନା ଏକ ସ୍ୱାଧୀନ ଦେଶର ନାଗରିକ ପକ୍ଷରେ କେବଳ ସମ୍ଭବପର ଏବଂ ଜାତୀୟ ପତାକା ଏକ ସ୍ୱାଧୀନ ଜାତିର ସ୍ୱତନ୍ତ୍ର ସତ୍ତା ବା ପରିଚୟ ବହନ କରିଥାଏ । ଔପନିବେଶିକ ଶାସନ ମଧ୍ୟରୁ ମୁକ୍ତିଲାଭ କରି ନୂତନ ଭାବେ ସ୍ୱାଧୀନତାର ସୁଫଳ ଭୋଗ କରୁଥିବା ଭାରତୀୟ ଜନସାଧାରଣଙ୍କ ଦୃଷ୍ଟିରେ ଆମ ଦେଶର ଜାତୀୟ ପତାକା ଓ ଜାତୀୟ ସଂଗୀତ ବିଶେଷ ଗୁରୁତ୍ୱ ବହନ କରିଥାଏ । ଅତୀତରେ ତ୍ରିରଂଗା ପତାକାର ଉଚ୍ଚ ମର୍ଯ୍ୟାଦା ରକ୍ଷା ଲାଗି ଅସଂଖ୍ୟ ମୁକ୍ତି ସଂଗ୍ରାମୀ ସହୀଦ ହୋଇଥିବା ଘଟଣା ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି ।

୧୯୪୭ ମସିହା ଜୁଲାଇ ୩ ତାରିଖରେ ଭାରତ ବିଭାଜନ ପାଇଁ ଉଦ୍ଦିଷ୍ଟ ମାଉଣ୍ଟବାଟେନ୍ ପ୍ଲାନ୍ ବ୍ରିଟିଶ ପାର୍ଲିଆମେଣ୍ଟରେ ଆଗତ ହୋଇଥିଲା ଏବଂ ଭାରତୀୟ ସମ୍ବିଧାନ ପ୍ରଣେତାମାନେ ତତ୍‌କ୍ଷଣାତ୍ ଦେଶର ଜାତୀୟ ପତାକା ପ୍ରସ୍ତୁତି ପାଇଁ ପ୍ରଚେଷ୍ଟା କରିଥିଲେ । ଭାରତୀୟ ସମ୍ବିଧାନ ପ୍ରଣୟନ ସଭାର ସଦସ୍ୟବୃନ୍ଦ ୧୯୪୭ ମସିହା ଜୁଲାଇ ୨୨ ତାରିଖ ଦିନ ତ୍ରିରଂଗା ପତାକାକୁ ଭାରତର ଜାତୀୟ ପତାକା ଭାବେ ଗ୍ରହଣ କରିଥିଲେ । ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ମଧ୍ୟରାତ୍ର ଅଧିବେଶନରେ ଗୈରିକ, ଶ୍ୱେତ ଓ ଗାଢ଼ ସବୁଜ ରଙ୍ଗ ଶୋଭିତ ଏବଂ ପତାକାର କେନ୍ଦ୍ର ସ୍ଥଳରେ ଗାଢ଼ ନୀଳରଙ୍ଗଯୁକ୍ତ ଅଶୋକ ଚକ୍ର ଚିହ୍ନ ବିଦ୍ୟମାନ ଥିବା ଜାତୀୟ ପତାକାକୁ ଭାରତୀୟ ମହିଳାମାନଙ୍କ ତରଫରୁ ଉପସ୍ଥାପନ କରାଯାଇଥିଲା । ଜାତୀୟ ପତାକା ସାଧାରଣତଃ ହସ୍ତତନ୍ତ ନିର୍ମିତ ଖଦୀକନାରେ ପ୍ରସ୍ତୁତ କରାଯିବା ବିଧିସମ୍ମତ । ଜାତୀୟ ପତାକାର ଦୈର୍ଘ୍ୟ ଏବଂ ପ୍ରସ୍ଥ ୩:୨ ଅନୁପାତ ଅନୁଯାୟୀ ନିର୍ମିତ ଏବଂ ଆକାରରେ ଆୟତାକାର କ୍ଷେତ୍ର ସଦୃଶ ହେବା ବିଧେୟ ।

ଜାତୀୟ ପତାକାରେ ରଂଗାୟିତ ହୋଇଥିବା ବିଭିନ୍ନ ରଂଗର ଗୂଢ଼ତତ୍ତ୍ୱ ସଂପର୍କରେ ଟିପ୍ପଣୀ ଦେଇ ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକ୍ରିଷ୍ଣନ କହିଥିଲେ– "The saffron represented the spirit of renunciation, the white band stands for truth and purity and the green colour signifies growth" ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଜାତୀୟ ପତାକା ସଂପର୍କରେ ନିଜସ୍ୱ ମତ ଦେଇ କହିଥିଲେ "Our tri-colour flag is not the flag of an Empire, not a flag of imperialism, but a flag of freedom not only for ourselves but a symbol of freedom to all people who may see it."

ଜାତୀୟ ମୂଲ୍ୟବୋଧକୁ ପ୍ରତିନିଧିତ୍ୱ କରୁଥିବା ତ୍ରିରଙ୍ଗା ପତାକା ଜାତୀୟ ଗୌରବ ଏବଂ ଜାତୀୟ ଶୋକ ପାଳନ ସମୟରେ ନିର୍ଦ୍ଦିଷ୍ଟ ଗୁରୁତ୍ୱପୂର୍ଣ୍ଣ ମୂଲ୍ୟ ବହନ କରିଥାଏ । ଏହା ସମଗ୍ର ଜାତିର ଅନୁଭବକୁ ପ୍ରତିଫଳିତ କରିବା ସହ ଦେଶର ସମସ୍ତ ନାଗରିକମାନଙ୍କୁ ଏକକ ପରିଚୟ ପ୍ରଦାନ କରିଥାଏ । ବିଦେଶ ମାଟିରେ ଭାରତୀୟମାନଙ୍କ ପରିଚୟର ମାଧ୍ୟମ ହେଉଛି ଭାରତର ଜାତୀୟ ପତାକା ।

ଜାତୀୟ ପତାକାର ଊର୍ଦ୍ଧ୍ୱକୁ କିମ୍ବା ଦକ୍ଷିଣ ଦିଗରେ ଅନ୍ୟ କୌଣସି ପ୍ରକାର ପତାକା ବା ଚିହ୍ନକୁ ଅବସ୍ଥାପିତ କରାଯାଏ ନାହିଁ । ଗୋଟିଏ ଧାଡ଼ିରେ ବିଭିନ୍ନ ପତାକା ରଖା ଯାଇଥିଲେ ଜାତୀୟ ପତାକାର ବାମଭାଗକୁ ଅନ୍ୟ ପତାକା ରଖାଯିବା ବିଧିସମ୍ମତ । ଯଦି ଅନ୍ୟ କୌଣସି ପତାକା ଜାତୀୟ ପତାକା ସହ ଉଡ଼ା ଯାଉଥାଏ ତେବେ ସେ କ୍ଷେତ୍ରରେ ଜାତୀୟ ପତାକା ଅନ୍ୟସବୁ ପତାକାଠାରୁ

ଉର୍ଦ୍ଧ୍ୱରେ ରହିବା ବାଞ୍ଛନୀୟ । ଶୋଭାଯାତ୍ରାରେ ଯାଉଥିବାବେଳେ ଜାତୀୟ ପତାକାଧାରୀ ବ୍ୟକ୍ତି ନିଜର ଦକ୍ଷିଣ ସ୍କନ୍ଧରେ ଜାତୀୟ ପତାକା ବହନ କରିବା ସହ ଶୋଭାଯାତ୍ରାର ଅଗ୍ରଭାଗରେ ରହିବା ଆବଶ୍ୟକ । ଦେଶର ଜାତୀୟ ଉତ୍ସବ ଯଥା ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ ଏବଂ ମହାତ୍ମା ଗାନ୍ଧୀଙ୍କ ଜୟନ୍ତୀ ଏବଂ ସହିଦ୍ ଦିବସ ପାଳନ ସମୟରେ ରାଷ୍ଟ୍ରର ସମସ୍ତ ନାଗରିକ ଜାତୀୟ ପତାକା ଉତ୍ତୋଳନ କରିବାରେ କୌଣସି ପ୍ରତିବନ୍ଧକ ନାହିଁ । ଦେଶ ତଥା ରାଜ୍ୟର ସମସ୍ତ ଗୁରୁତ୍ୱପୂର୍ଣ୍ଣ ସରକାରୀ କାର୍ଯ୍ୟାଳୟରେ ଜାତୀୟ ପତାକା ଅବସ୍ଥାପିତ କରାଯାଇଥାଏ । ଦେଶର ଜାତୀୟ ଶୋକ ପ୍ରକଟ ଲାଗି ଜାତୀୟ ପତାକାକୁ ଅର୍ଦ୍ଧନମିତ କରାଯାଇଥାଏ । ସୁତରାଂ ଦେଶବାସୀ ଏବଂ ଜାତିର ଅନୁଭବ ଜାତୀୟ ପତାକା ମାଧ୍ୟମରେ ହିଁ ପ୍ରତିଫଳିତ ହୋଇଥାଏ ।

ଆଡ୍‌ଭୋକେଟ ଓ ନୋଟାରୀ ପବ୍ଲିକ୍
ପ୍ଲଟ ନଂ – କେ–୪/୬୦୯
କଳିଙ୍ଗନଗର, ପୋ: ପାତ୍ରପଡ଼ା
ଭୁବନେଶ୍ୱର – ୧୯

# ଭାରତ ସନ୍ତାନ ଜାଗରେ

**ବିଚିତ୍ରାନନ୍ଦ ବାରିକ**

ଜାଗ ଜାଗ ଜାଗରେ
ଭାରତ ସନ୍ତାନ ଜାଗରେ
ଯାଇଛି ଯାମିନୀ ଉଇଁଛି ସୂରୁଯ
ସବୁ କାମେ ହୁଅ ଆଗରେ ।
ଗାନ୍ଧୀ, ଗୋପବନ୍ଧୁ, ଚାଚା ନେହରୁ
ସୁଭାଷ, ପଟେଲ, ଲାଲ ବାହାଦୁର
କେତେ ଜନଗଣ ତେଜିଛନ୍ତି ପ୍ରାଣ
ଏଇ ସ୍ୱାଧୀନତା ଯାଗରେ ।
ସେ ପୂର୍ବ ପୁରୁଷେ ମନେ ପକାଇ
ପ୍ରଣାମ କର ହେ ମଥା ନୁଆଁଇ
ତାଙ୍କରି ଆଦର୍ଶ ଅନୁସରି ଆସ
ଆଗେଇବା କର୍ମ ମାର୍ଗରେ ।
ହୋଇବା କୃଷକ ହେବା ସୈନିକ
ହୋଇବା ଶିଳ୍ପୀ, ହେବା ବୈଜ୍ଞାନିକ
ଏ ଦେଶ ଭୂଇଁରେ ସୁନା ଫଳାଇବା
ସୀମାରେ ହେବା ସଜାଗରେ ।
ହୋଇବା ଯନ୍ତ୍ରୀ ହେବା ଚିକିତ୍ସକ
ହୋଇବାରେ କବି ହେବା ଲେଖକ
ସୁଶାସକ ହୋଇ ଦେଶ ଚଳାଇବା
ଏ ଧରା ହେବ ଭୂ–ସ୍ୱର୍ଗରେ ।
ଆମ୍ଭେ ସିଂହ ଶିଶୁ ଏଇ ଦେଶରେ
ଗଢ଼ିବା ଏ ଦେଶ ନୂଆ ଭାବରେ
ଦେଖିଲେ ଅରାତି ଛାନିଆଁ ହୋଇବ
ଆମ ଜ୍ଞାନ ଦୀପ ଆଗରେ ।
ଆଜି ଶୁଭଦିନେ ତ୍ରିରଙ୍ଗା ତଳେ
ଶପଥ ଘେନିବା ଆସ ସକଳେ
ଦେଶ ଅଖଣ୍ଡତା ବଜାୟ ରଖିବା
ନିଜ ସ୍ୱାର୍ଥ କରି ତ୍ୟାଗରେ ।

ନିଆଳୀ, କଟକ

❖ ❖ ❖

# ଶ୍ରୀଜଗନ୍ନାଥ ମନ୍ଦିରର ପରିବେଶ ବିଜ୍ଞାନ ସମ୍ମତ

**ହେମନ୍ତ କୁମାର ନାୟକ**

ଶ୍ରୀଜଗନ୍ନାଥ ମନ୍ଦିରର ପୂଜାବିଧି ପରମ୍ପରା, ସଂସ୍କୃତି ଏବଂ ପରିବେଶ ବୈଜ୍ଞାନିକ ତତ୍ତ୍ୱ ଓ ବିଜ୍ଞାନ ସମ୍ବନ୍ଧୀୟ ପୃଷ୍ଠଭୂମି ଉପରେ ସମ୍ପୂର୍ଣ୍ଣ ଆଧାରିତ । ଦାରୁଦେବତା ଶ୍ରୀଜଗନ୍ନାଥ କେବଳ ଆଧ୍ୟାତ୍ମିକତା, ସଂସ୍କୃତି ଓ ପରମ୍ପରାର ବାର୍ତ୍ତା ପ୍ରଦାନ କରନ୍ତି ନାହିଁ । ଶ୍ରୀଜଗନ୍ନାଥଙ୍କ ପୂଜାବିଧି ସହିତ ବିଜ୍ଞାନର ମଧ୍ୟ ଯଥେଷ୍ଟ ସମ୍ପୃକ୍ତି ରହିଛି । ଗରୁଡ ସ୍ତମ୍ଭ ହେଉ କି ଅବକାଶ ଜଳ, ତୁଳସୀ ପତ୍ର ପ୍ରସାଦ ହେଉ କି ବେଲପତ୍ର ପ୍ରସାଦ, ସବୁଥିରେ ମଣିଷ ସ୍ୱାସ୍ଥ୍ୟ ବୈଜ୍ଞାନିକ ରହସ୍ୟ ଉପରେ ପରିବେଷ୍ଟିତ ।

ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ରୀତିନୀତି ସହିତ ଅନେକ ବୈଜ୍ଞାନିକ ତତ୍ତ୍ୱ ଜଡିତ ରହିଛି । ପ୍ରଭୁଙ୍କ ସମସ୍ତ ନୀତି ଓ ପର୍ବପର୍ବାଣି ମଣିଷର ମାନସିକ ସ୍ଥିତିକୁ ବିଶେଷ ଭାବେ ପ୍ରଭାବିତ କରିଥାଏ । ଭକ୍ତମାନେ ଜଗନ୍ନାଥଙ୍କ ପାଖକୁ ଆସିଥାନ୍ତି, ସେମାନଙ୍କର ସମସ୍ତ ଦୁଃଖଯନ୍ତ୍ରଣା ଲାଘବ କରି ମାନସିକ ଶାନ୍ତି ଲାଭ କରିବା ପାଇଁ । ପ୍ରଭୁଙ୍କୁ ଦର୍ଶନ କରିବା ପାଇଁ ଯିବା ବେଳେ ଯେକୌଣସି ବ୍ୟକ୍ତି କିଛି ନଖାଇ ଖାଲି ପେଟରେ ଯିବା ଉଚିତ । ବିଶ୍ୱାସ ଓ ପରମ୍ପରା ଅନୁଯାୟୀ ଏହା ନ କଲେ ମଣିଷ ବହୁ ପାପ ଅର୍ଜନ କରେ । ବୈଜ୍ଞାନିକ ଦୃଷ୍ଟିକୋଣରୁ ଏହାର ସୁଫଳ ସୁଦୂରପ୍ରସାରୀ । ଖାଲି ପେଟରେ ଦର୍ଶନ କରି ପ୍ରଭୁଙ୍କ ପ୍ରସାଦ ବେଲପତ୍ର ସେବନ କଲେ ହୃଦରୋଗ ଓ କୋଷ୍ଠକାଠିନ୍ୟରୁ ମୁକ୍ତି ମିଳେ । ସେହିପରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ତାଙ୍କ ତୁଳସୀ ପତ୍ର ସେବନ କଲେ ଥଣ୍ଡା, ଛିଙ୍କ ବନ୍ଦ ହେବା ସହିତ ଥାଇରଏଡ୍ (Thyroid) ସମସ୍ୟା ମଧ୍ୟ ଦୂର ହୋଇଥାଏ । ସମସ୍ତ ପେଟରୋଗ ଭଲ ହେବା ପାଇଁ ବେଲପତ୍ର ଓ ତୁଳସୀପତ୍ର ଏକ ଅବ୍ୟର୍ଥ ଔଷଧ । ପ୍ରଭୁଙ୍କର ଗାଧୁଆପାଣି ଅର୍ଥାତ୍ ପାଦୁକା ଓ ଅବକାଶ ଜଳକୁ ଯିଏ ପ୍ରତିଦିନ ସେବନ କରନ୍ତି, ତାଙ୍କର କୋଷ୍ଠ କାଠିନ୍ୟ ସମସ୍ୟା ଦୂର ହୋଇଯାଏ ବୋଲି ବିଶ୍ୱାସ ରହିଛି । ଶ୍ରୀମନ୍ଦିରର ଗରୁଡ ସ୍ତମ୍ଭ ପ୍ରସ୍ତୁତ ହୋଇଛି ଏକ ବୃକ୍ଷ ଚେରରେ । ଏହାକୁ ରସାୟନିକ ଦ୍ରବଣରେ ଘୋଡାଇ ରଖାଯାଇଛି । ଯେତେବେଳେ ଭକ୍ତ ଗରୁଡ ସ୍ତମ୍ଭରେ ଛାତି ଓ ମୁଣ୍ଡ ଲଗାଇ ଦିଅନ୍ତି, ସେତେବେଳେ ଖୁବ୍ ଆରାମ ଅନୁଭୂତ ହୋଇଥାଏ । ଏହାଦ୍ୱାରା ଛାତିରୋଗ ଏକଦମ୍ ଭଲ ହୋଇଯାଏ । ଗରୁଡ ସ୍ତମ୍ଭର ଗାଧୁଆ ପାଣି ଭକ୍ତର ସମସ୍ତ ପ୍ରକାର ଜ୍ୱରକୁ ନିଶ୍ଚିତ ରୂପେ ଭଲ କରିଦିଏ । ଏହା ମଧ୍ୟ ବଦହଜମି ତଥା ଡିସ୍‌ପେପ୍‌ସିଆ ରୋଗର ନିରାକରଣ କରିଥାଏ ।

ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଏବଂ ମା’ ସୁଭଦ୍ରାଙ୍କୁ ବିଷ୍ଣୁ, ଶିବ ଏବଂ ବ୍ରହ୍ମା ଓ ଶକ୍ତି ଭାବରେ ଗଣନା କରାଯାଏ । ମା’ ସୁଭଦ୍ରାଙ୍କୁ ମଧ୍ୟ କୁହାଯାଏ ଯୋଗମାୟା । ଭୋଗମଣ୍ଡପ ଓ ନାଟମଣ୍ଡପର କଳା ଓ କାରୁକାର୍ଯ୍ୟ ଭକ୍ତର ମସ୍ତିଷ୍କରେ ମନସ୍ତାତ୍ତ୍ୱିକ ଏବଂ ଧାର୍ମିକ ଭାବନା ଆଣିଦେଇଥାଏ, ଯାହାଦ୍ୱାରା ମଣିଷ ମୁଣ୍ଡରେ ଥିବା ମାନସିକ ଚିନ୍ତା ବାହାରି ଯାଇ ଧାର୍ମିକ ଚିନ୍ତାଧାରା ସୃଷ୍ଟି ହୋଇଥାଏ । ଶ୍ରୀଜଗନ୍ନାଥଙ୍କର ଆୟୁଧ ହେଉଛି ଶଙ୍ଖ ଏବଂ ଚକ୍ର । ଶଙ୍ଖ ହେଉଛି ଶବ୍ଦର ପ୍ରତୀକ ଏବଂ ଚକ୍ର ହେଉଛି ଚକର ପ୍ରତୀକ । ଉଭୟ ଶବ୍ଦ ଏବଂ ଚକ୍ର ହେଉଛି ଦୁଇଟି ଶିଳ୍ପଭିତ୍ତିକ ଚରିତ୍ର । ତେଣୁ ଶ୍ରୀଜଗନ୍ନାଥଙ୍କୁ ଶିଳ୍ପ ଦେବତା ବୋଲି କୁହାଯାଇ ପାରିବ । ଶ୍ରୀବଳଭଦ୍ର ହଳ ଏବଂ ମୂଷଳ ଧାରଣ କରିଛନ୍ତି, ଯାହା କୃଷିର ପ୍ରତୀକ । ତେଣୁ ବଳଭଦ୍ରଙ୍କୁ କୁହାଯାଏ କୃଷି ଓ ଶିଳ୍ପ ଦେବତା । ମା’ ସୁଭଦ୍ରାଙ୍କୁ ବ୍ରହ୍ମା ବିବେଚନା କରାଯାଏ ଏବଂ ସେ ହେଉଛନ୍ତି ଜ୍ଞାନର ଦେବୀ । ଶ୍ରୀସୁଦର୍ଶନ ହେଉଛନ୍ତି ସ୍ୱଷ୍ଟ ଦୃଷ୍ଟିର ଦେବତା । ଭକ୍ତଗଣ ପ୍ରଭୁ ସୁଦର୍ଶନଙ୍କର ଦର୍ଶନ କରିବା ପରେ ମୋକ୍ଷ ପ୍ରାପ୍ତ ହୁଅନ୍ତି । ମନ୍ଦିର ଉପରେ ରହିଥିବା ନୀଳଚକ୍ର ପ୍ରସ୍ତୁତ

ହୋଇଛନ୍ତି ଅଷ୍ଟଧାତୁରେ ଏବଂ ଭୂମିରୁ ଏଥିରେ ସଂଯୁକ୍ତ କରାଯାଇଛି ଗୋଟେ ବଡ କପର ପ୍ଲେଟ୍ । ବୈଜ୍ଞାନିକ ତତ୍ତ୍ୱ ଅନୁଯାୟୀ ଏହା ବଜ୍ରାଘାତରୁ ମନ୍ଦିରକୁ ରକ୍ଷା କରିଥାଏ ।

କୋଟି କୋଟି ଓଡ଼ିଆଙ୍କର ପ୍ରାଣକେନ୍ଦ୍ର ପ୍ରଭୁ ଶ୍ରୀଜଗନ୍ନାଥ । ମହାପ୍ରଭୁଙ୍କୁ ବାଦ୍ ଦେଲେ ଓଡ଼ିଆ ଜାତିର ସ୍ଥିତି, ସଂସ୍କୃତି ସବୁ ଶୂନ୍ୟ ହୋଇଯିବ । ଦେଶର ଚାରିଧାମ-ବଦ୍ରିନାଥ, ଦ୍ୱାରିକାନାଥ ଏବଂ ରାମନାଥଙ୍କ ମଧ୍ୟରୁ ଶ୍ରୀକ୍ଷେତ୍ର ଧାମ ଅନ୍ୟତମ ତଥା ଗୁରୁତ୍ୱପୂର୍ଣ୍ଣ । ସବୁ ତୀର୍ଥ ବୁଲି ସାରିଲା ପରେ ଶେଷରେ ଜଗନ୍ନାଥ ଧାମ ଦର୍ଶନ ହୋଇଥାଏ । ପବିତ୍ର ମହାପ୍ରସାଦ, ନିର୍ମାଲ୍ୟ, ଧଣ୍ଡା, ପତାକା, ଛଡା, ଚନ୍ଦନ, ଆଳତୀ କର୍ପୂର ସବୁ ପ୍ରଭୁଙ୍କର ଆଶୀର୍ବାଦର ଚିହ୍ନ ସ୍ୱରୂପ ଭକ୍ତମାନଙ୍କର ଅତି ପ୍ରିୟ । ସମସ୍ତ ଦେବଦେବୀଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ ହିଁ ଦାରୁ(ନିମ୍ବକାଷ୍ଠ)ରେ ନିର୍ମିତ । ଶିଳ୍ପୀ ଶାସ୍ତ୍ର ଅନୁଯାୟୀ ନିମ୍ବକାଷ୍ଠର ପରମାୟୁ ମାତ୍ର ୧୨ ବର୍ଷ । ତେଣୁ ୧୨ ବର୍ଷ ବେଳକୁ ନୂତନ କାଷ୍ଠର ବିଜେ ପ୍ରତିମାଙ୍କ ନିର୍ମାଣର ଆବଶ୍ୟକତା ହୋଇଥାଏ । ତେବେ ସୌର ଗଣନା ଅନୁଯାୟୀ ଯେଉଁ ବର୍ଷ ଯୋଡା ଆଷାଢ (ଅଧିମାସ, ମଳମାସ) ପଡିଥାଏ, ସେହିବର୍ଷ ନବକଳେବର ଅନୁଷ୍ଠିତ ହୁଏ । ସାଧାରଣତଃ ଆଠ ବର୍ଷରୁ ୧୯ ବର୍ଷ ମଧ୍ୟରେ (୮, ୧୨ ଓ ୧୯) ବର୍ଷରେ ଏହା ପଡିଥାଏ । ଶ୍ରୀମନ୍ଦିରର ଉତ୍ତର ଦ୍ୱାର ପଟରେ ଥିବା କୋଇଲି ବୈକୁଣ୍ଠ ସଂଲଗ୍ନ ନୀଳାଚଳ ଉପବନ ପ୍ରତ୍ୟେକ ଦର୍ଶକ ଦର୍ଶନ କରିବା ଉଚିତ, ଯାହାକି ଶ୍ରୀମନ୍ଦିର ପରିବେଶକୁ ବିଜ୍ଞାନ ସମ୍ମତ କରିବା ସହିତ ଶ୍ରୀଜୀଉମାନଙ୍କୁ ପୁଷ୍ପ ପ୍ରଦାନରେ ବିଶେଷ ସହାୟକ ହୋଇଥାଏ ।

ଓଡ଼ିଶା ସୂଚନା ସେବା ଅଧିକାରୀ
ଗ୍ରାମ/ପୋ.ଅ-ଖନ୍ତାପଡା
ଜିଲ୍ଲା-ବାଲେଶ୍ୱର(ଓଡ଼ିଶା)
ପିନ୍-୭୫୬୦୪୩

❖ ❖ ❖

# ବଳରାମ ଦାସଙ୍କ ଶ୍ରୀମହାଲକ୍ଷ୍ମୀ ପୁରାଣର ଧାରା

ଡକ୍ଟର ବିରାଜ ମୋହନ ଦାସ

ସାରଳା ଦାସ ଓଡ଼ିଆ ସାହିତ୍ୟରେ ଯେଉଁ ଧାରାର ପ୍ରବର୍ତ୍ତନ କରିଥିଲେ, ତାହା ତାଙ୍କ ପରବର୍ତ୍ତୀ କାଳର ଉଲ୍ଲେଖ ଦାବି କରୁଥିବା ଓଡ଼ିଆ ସାହିତ୍ୟ ସାଧକମାନଙ୍କ ଦ୍ୱାରା ଅନୁସୃତ ହୋଇଥିବାର ଲକ୍ଷ୍ୟ କରାଯାଇଥାଏ । ଓଡ଼ିଆ ସାହିତ୍ୟ ଜଗତରେ 'ପଞ୍ଚସଖା' ନାମରେ ପରିଚିତ ବଳରାମ ଦାସ, ଜଗନ୍ନାଥ ଦାସ, ଯଶୋବନ୍ତ ଦାସ, ଅଚ୍ୟୁତାନନ୍ଦ ଦାସ ଓ ଶିଶୁ ଅନନ୍ତ ଦାସ ସଂସ୍କୃତ ଭାଷାରେ ରଚିତ ପୁରାଣ, ଉପପୁରାଣ ଏବଂ ପୁରାଣରେ ଥିବା ଆଖ୍ୟାନଗୁଡ଼ିକୁ ଆଧାର କରି ସେମାନଙ୍କ ସୃଷ୍ଟି ସମ୍ଭାର ସମୃଦ୍ଧ କରିଛନ୍ତି ସତ ମାତ୍ର ସେମାନେ ସଂସ୍କୃତ କୃତିଗୁଡ଼ିକର ଅନୁବାଦ ନକରି ସାରଳାଙ୍କ ଭଳି ତା'ର ମୂଳ କଥାକୁ ଓଡ଼ିଶାର ଇତିହାସ ଓ ଭୂଗୋଳ ଭିତ୍ତିରେ ସର୍ବୋପରି ଓଡ଼ିଶା ଜନଜୀବନର ଓ ଚଳଣିର ଢାଞ୍ଚାରେ ପରିବେଷଣ କରିଛନ୍ତି । ସେମାନେ ସେମାନଙ୍କର ସାଧନା ଲବ୍ଧ ଜ୍ଞାନକୁ, ଉପଲବ୍ଧିକୁ, ନିଜ ମାଟି, ପାଣି, ପବନରେ ଲାଳନ କରି ଲୋକହିତ ଉପଯୋଗୀ କରିବାକୁ ସକ୍ଷମ ହୋଇଥିବାରୁ ସେମାନଙ୍କୁ ଯଥାର୍ଥରେ କୁହାଯାଇଛି 'ସାଧକ' ଓ 'ସନ୍ଥ' ।

ବୟୋଜ୍ୟେଷ୍ଠ ସାଧକ ବଳରାମ ଦାସ ନିଜର ଆଧ୍ୟାତ୍ମ ଜ୍ଞାନ ଓ ଉପଲବ୍ଧିକୁ ଭକ୍ତିରେ ସମନ୍ୱିତ କରି କାବ୍ୟିକତାର ଅନୁପମ ଶୈଳୀ ସହାୟତାରେ ରଚନା କରିଛନ୍ତି, ରାମ କଥା ଆଧାରିତ ରାମାୟଣ, ଯାହା 'ଜଗମୋହନ ରାମାୟଣ' ନାମରେ ଖ୍ୟାତ । ଏହା ଜଗନ୍ନାଥ ଦାସଙ୍କ 'ଭାଗବତ' ପରି ଓଡ଼ିଶୀ ସମାଜରେ ଆଦୃତ । ତେବେ ଏହି ସାଧକଙ୍କର ଆଉ ଗୋଟିଏ କୃତି, 'ଶ୍ରୀମହାଲକ୍ଷ୍ମୀ ପୁରାଣ' ବା 'ଲକ୍ଷ୍ମୀପୁରାଣ', ଏ ଯାବତ୍ ଓଡ଼ିଶାର ପୁର ପଲ୍ଲୀରେ ବହୁଳ ଭାବରେ ପଠିତ, ଆଦୃତ ଏବଂ ଗୃହୀତ ହୋଇ ଆସୁଛି । ତତ୍କାଳୀନ ସମାଜରେ ନାରୀ ଜାତି ସମ୍ଭବତଃ ହୋଇଛି ଅବହେଳିତ, ହେୟ, ଗୁରୁତ୍ୱହୀନ । ସେମାନଙ୍କୁ ପ୍ରାଧାନ୍ୟ ଦେବା ଲକ୍ଷ୍ୟରେ, ପୂଜ୍ୟା ଆସନରେ ଆସୀନ କରିବା ନିମିତ୍ତ, ସର୍ବୋପରି ପୁରୁଷଙ୍କ ସହ ସମତଳାସୀନ କରିବା ଉଦ୍ଦେଶ୍ୟରେ ବୋଧହୁଏ ବଳରାମ କରିଛନ୍ତି ଏହାର ସଂରଚନା । ପୁରୀର ଶ୍ରୀଜଗନ୍ନାଥ ମନ୍ଦିର 'ବଡ ଦେଉଳ' ରୂପେ ସୁଖ୍ୟାତ । ଏହାର ପରିସରରେ ମୁଖ୍ୟ ଦେବଦେବୀ ଭାବରେ ପୂଜା ପାଉଛନ୍ତି ବଡଭାଇ ବଳରାମ, ସାନଭାଇ ଜଗନ୍ନାଥ, ଭଉଣୀ ସୁଭଦ୍ରା ଓ ଜଗନ୍ନାଥଙ୍କ ପତ୍ନୀ ଲକ୍ଷ୍ମୀ । ଏମାନଙ୍କ ବ୍ୟତୀତ ଆହୁରି ଅନେକ ଦେବାଦେବୀ ଓ ପାର୍ଶ୍ୱଦେବତା । 'ଲକ୍ଷ୍ମୀ ପୁରାଣ'ର କାହାଣୀ ଅନୁଯାୟୀ ଏକଦା ବଡଭାଇ ବଳରାମ ଲକ୍ଷ୍ମୀଙ୍କ ଆଚରଣରେ ଅସନ୍ତୁଷ୍ଟ ହୋଇଛନ୍ତି । ତାଙ୍କ ପ୍ରରୋଚନା ଓ ନିର୍ଦ୍ଦେଶକ୍ରମେ ଜଗନ୍ନାଥ ସ୍ୱପତ୍ନୀ ଲକ୍ଷ୍ମୀଙ୍କୁ ବଡଦେଉଳ ପରିସରରୁ ବିତାଡିତ କରିଛନ୍ତି । ମାତ୍ର ପରିଣତିରେ ଲକ୍ଷ୍ମୀଙ୍କର ସେହି ଆଚରଣ ତ୍ରୁଟି ରହିତ ବୋଲି ସାବ୍ୟସ୍ତ ହେବା ସଙ୍ଗେ ସଙ୍ଗେ ତାଙ୍କ ଦ୍ୱାରା ନିରୂପିତ ଏ ସଂକ୍ରାନ୍ତୀୟ ସମସ୍ତ ସର୍ତ୍ତକୁ ଜଗନ୍ନାଥ, ବଳରାମଙ୍କ ଅନୁମୋଦନକ୍ରମେ ଗ୍ରହଣ କରିଛନ୍ତି ଏବଂ ସାଦରେ ଲକ୍ଷ୍ମୀଙ୍କୁ ବଡଦେଉଳ ପରିସରକୁ ବାହୁଡାଇ ନେଇଛନ୍ତି । କେବଳ ନାରୀ ଜାତିର ସମ୍ମାନ ପ୍ରତିଷ୍ଠା ନୁହେଁ ସମାଜରୁ ଜାତିଭେଦ ପ୍ରଥାର ଉଚ୍ଛେଦ, ଉଚ୍ଚନୀଚ ଭେଦଭାବର ପ୍ରାଚୀରକୁ ଭାଙ୍ଗିଦେବାର ଉଦ୍ୟମ ମଧ୍ୟ ଏଥିରେ କରାଯାଇଛି । ସମାଜର କଲ୍ୟାଣ ଏବଂ ସୁସ୍ଥ ତଥା ସୁଖମୟ ଗାର୍ହସ୍ଥ୍ୟ ଜୀବନଯାପନ ନିମିତ୍ତ ପବିତ୍ରତା, ଶୁଚିତା ଓ ସୌନ୍ଦର୍ଯ୍ୟବୋଧକୁ ଗୁରୁତ୍ୱ ପ୍ରଦାନ କରାଯାଇ ଭକ୍ତି ଭିତ୍ତିରେ ଏକ ଆଚାର ସଂହିତା ପ୍ରଦାନ ଏହି କୃତିର ଆଉ ଏକ ଉଲ୍ଲେଖନୀୟ ବୈଶିଷ୍ଟ୍ୟ ।

ମହାଲକ୍ଷ୍ମୀଙ୍କର ଦୁଇଟି ବ୍ରତ ଓଡ଼ିଶୀ ସମାଜର ଘରେ ଘରେ ପାଳିତ ହୋଇଥାଏ । ଗୋଟିଏ ହେଉଛି ଶୁକ୍ଳପକ୍ଷର ଦଶମୀ ତିଥି ଗୁରୁବାର ଦିନ ପଡିଲେ ପାଳନ କରାଯାଉଥିବା 'ସୁଦଶା

ବ୍ରତ' ଓ ଆଉ ଗୋଟିଏ ହେଉଛି ମାର୍ଗଶିର ମାସ ଗୁରୁବାରଗୁଡ଼ିକରେ ଅନୁଷ୍ଠିତ ହେଉଥିବା 'ମାଣବସା ଓଷା' । ଏହି ବ୍ରତ ଅବସରରେ ମହାଲକ୍ଷ୍ମୀ ନଗର ଭ୍ରମଣରେ ଯାଇ ଘର ଘର ବୁଲିଥାନ୍ତି । ଏକଦା ତାଙ୍କର ସୁଦଶାବ୍ରତ ପାଳିତ ହେଉଥିବା ଅବସରରେ ସେ ପତି ଜଗନ୍ନାଥଙ୍କ ଅନୁମତିକ୍ରମେ ନଗର ଭ୍ରମଣରେ ବାହାରିଛନ୍ତି । ଜଣେ ବୃଦ୍ଧା ବ୍ରାହ୍ମଣୀ ବେଶରେ ମହାଲକ୍ଷ୍ମୀ ସାଧୁ ସାଧବ ଘରେ ଉପସ୍ଥିତ ହୋଇଛନ୍ତି । ସେଠାରେ ସେ ତାଙ୍କର ଆରାଧନା ନିମିତ୍ତ ପୂର୍ବ ପ୍ରସ୍ତୁତି ଦେଖି ନପାରିବା ସଙ୍ଗେ ସଙ୍ଗେ ପରିବାରର ସଦସ୍ୟ/ସଦସ୍ୟାଙ୍କ ଆଚାର ଓ ଚଳଣିରେ ଶୁଦ୍ଧତା ଦେଖିବାକୁ ପାଇନାହାନ୍ତି । ସାଧବାଣୀଙ୍କୁ ସୁଦଶାବ୍ରତର ଉପାସନା ବିଧି ଜଣାଇବା ଅବସରରେ ମହାଲକ୍ଷ୍ମୀ ଶୁଚିତା, ପବିତ୍ରତା ଓ ସୌନ୍ଦର୍ଯ୍ୟବୋଧ ଉପରେ ପର୍ଯ୍ୟବସିତ ଗାର୍ହସ୍ଥ୍ୟ ଧର୍ମର, ସାମାଜିକ ଚଳଣିର ସର୍ବୋପରି ସୁସ୍ଥ ଜୀବନଧାରଣର ବ୍ୟବସ୍ଥା ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି । କେବଳ ଚଣ୍ଡାଳୁଣୀ ଶ୍ରୀୟା ଛଡ଼ା ଆଉ କାହାରି ଠାରେ ବା କାହାରି ଘରେ ମହାଲକ୍ଷ୍ମୀ ମନୋମତ ଶୁଦ୍ଧ ଆଚାର ଦେଖିବାକୁ ପାଇନାହାନ୍ତି ।

ବଳରାମ ଦାସ ଶୁଚିତା, ପବିତ୍ରତା ଓ ଭକ୍ତିଭାବ ଆଦି ଜଣେ ଚଣ୍ଡାଳୁଣୀଠାରେ ପ୍ରଦର୍ଶିତ କରି ଜାତିଭେଦ ପ୍ରଥାର ଅହମିକାକୁ ଭାଙ୍ଗିବାର ଉଦ୍ୟମ କରିଛନ୍ତି । 'ତା'ର ମହିମା ଦେବଙ୍କୁ ଅଗୋଚର', 'ବିଷ୍ଣୁ ଭକତିରେ ସେ ଯେ ଅତି ତତ୍ପର' ଓ 'ଦିବ୍ୟ ପଦ୍ମେକ କାଟିଲା' ଆଦି ବିଶେଷତାକୁ ତା'ଠାରେ ଆରୋପ କରି ତା'ର ଶୁଦ୍ଧ ଆଚରଣ ଓ ନିର୍ମଳ ଭକ୍ତିକୁ ସାବ୍ୟସ୍ତ କରିଛନ୍ତି । ମହାଲକ୍ଷ୍ମୀ ଶ୍ରୀୟା ଦ୍ୱାରା ଅଙ୍କିତ ଦିବ୍ୟ ପଦ୍ମଫୁଲ ଦେଖି ଏବଂ ତା'ର ଶୁଦ୍ଧ ଆଚରଣରେ ସନ୍ତୁଷ୍ଟ ହୋଇ ତା' ଘରକୁ ବିଜେ କରିଛନ୍ତି ଓ ତା'କୁ ବର ପ୍ରଦାନ କରିଛନ୍ତି । ଆଧ୍ୟାତ୍ମ ଚେତନାର ଭିତ୍ତି 'ଭକ୍ତି' ବୋଲି ଏଠାରେ ପ୍ରତିପାଦିତ ହୋଇଛି । ଦୈବୀ–ସାନ୍ନିଧ ଲାଭ ପାଇଁ ଶିକ୍ଷା–ଦୀକ୍ଷା, ପାଣ୍ଡିତ୍ୟ–ଜ୍ଞାନ, କୁଳ–କୌଳିନ୍ୟଠାରୁ ସମ୍ପୂର୍ଣ୍ଣ ଆତ୍ମ ସମର୍ପଣ ଓ ନିଷ୍କପଟ ଭକ୍ତିପୂତ ଚିତ୍ତ ହିଁ ଲୋଡ଼ା ବୋଲି ପ୍ରମାଣିତ । ଈଶ୍ୱର ବିଶ୍ୱାସ, ଈଶ୍ୱର ପ୍ରେମ, ଈଶ୍ୱରାନୁରକ୍ତି ଓ ଶରଣାଗତି ହେଉଛି ଭକ୍ତି । 'ଶ୍ରୀମଦ୍ ଭଗବଦ୍ ଗୀତା'ରେ 'ଭକ୍ତି'ର ତର୍ଜମା କରିବାକୁ ଯାଇ କୁହାଯାଇଛି, 'ବ୍ୟାଧର କ'ଣ ଭଲ ଅଭ୍ୟାସ ଥିଲା ?', 'ଧ୍ରୁବର ବୟସ କେତେ ହୋଇଥିଲା ?', ଗଜେନ୍ଦ୍ରର ଶିକ୍ଷା କ'ଣ ଥିଲା, ଉଗ୍ରସେନର କି ବଳ ବିକ୍ରମ ଥିଲା, 'କୁବ୍‌ଜାର ଅବା କି ସୌନ୍ଦର୍ଯ୍ୟ ଥିଲା ?', 'ପୁଣି କେତେ ଧନ ସମ୍ପତ୍ତି ଥିଲା ସୁଦାମାର ?' କେବଳ ଭକ୍ତିକୁ ଆଶ୍ରା କରି ସେମାନେ ଈଶ୍ୱର କୃପା ଲାଭ କରି ପାରିଛନ୍ତି ।' 'ଶ୍ରୀମଦ୍ ଭଗବଦ୍ ଗୀତା'ର ସେହି ତର୍ଜମା ଏଠାରେ ମଧ୍ୟ ପ୍ରଯୁଜ୍ୟ । ତେବେ ଶ୍ରୀୟା ଘରେ ମହାଲକ୍ଷ୍ମୀଙ୍କର ପ୍ରବେଶ ଓ ତାକୁ ବରପ୍ରଦାନର ଦୃଶ୍ୟ ବଡ଼ଭାଇ ବଳରାମ ଦିବ୍ୟଦୃଷ୍ଟି ମାଧ୍ୟମରେ ଦେଖି ନିଜର ଗଭୀର ଅସନ୍ତୋଷ ସାନଭାଇ ଜଗନ୍ନାଥଙ୍କଠାରେ ପ୍ରକାଶ କରିଛନ୍ତି । ଲକ୍ଷ୍ମୀ ଚଣ୍ଡାଳୁଣୀ ଘରକୁ ଯାଇଥିବାରୁ ତାଙ୍କୁ ଶ୍ରୀମନ୍ଦିରର ପ୍ରବେଶାଧିକାର ନଦେଇ ତଡ଼ିଦେବାକୁ ପ୍ରବର୍ତ୍ତାଇଛନ୍ତି । ତାଙ୍କ ଭକ୍ତିରେ ନାରୀମାନଙ୍କ ପ୍ରତି ଥିବା ହେୟ ଭାବ ପ୍ରକଟିତ ହୋଇଛି । ଲକ୍ଷ୍ମୀଙ୍କର ଏଇ ପ୍ରଥମ ଥରର ଦୋଷକୁ କ୍ଷମା କରିବା ନିମିତ୍ତ ଜଗନ୍ନାଥ କରିଥିବା ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିବା ଅବସରରେ ବଳରାମ କହିଛନ୍ତି:

'ବଳରାମ ବୋଲୁଛନ୍ତି ଶୁଣ ଭାବଗ୍ରାହୀ
ତୋର ଲକ୍ଷ୍ମୀ ଥିଲେ ମୁହିଁ ରହିବଇଁ ନାହିଁ ।
ଭାରିଜା ଅଟଇ ସିନା ପାଦର ପାଣ୍ଡୋଇ
ଭାଇ ଥିଲେ କୋଟି ଭାର୍ଯ୍ୟା ମିଳି ଯେ ପାରଇ ।
ଭାର୍ଯ୍ୟାଠାରେ ଲୋଭ ଯେବେ ଅଛିରେ କହ୍ନାଇ
ଚଣ୍ଡାଳ ସାହିରେ ତୁ ନଅର ତୋଳ ଯାଇ ।
ମୋର ବଡ ଦେଉଳକୁ ଆଉ ନଆସିବୁ
ମାଇପକୁ ଘେନି ଦାଣ୍ଡ ବାହାରେ ରହିବୁ ।'

ବଡ଼ଭାଇଙ୍କଠାରୁ ଏପରି ଲାଞ୍ଛନା ପାଇ ଜଗନ୍ନାଥ ଲକ୍ଷ୍ମୀଙ୍କୁ ପରିତ୍ୟାଗ କରିବାର ନିଷ୍ପତ୍ତି ନେଇଛନ୍ତି ଓ ଲକ୍ଷ୍ମୀ ବଡ଼ଦେଉଳକୁ ବାହୁଡ଼ିବା ବେଳକୁ ତାଙ୍କୁ ଏହି ନିଷ୍ପତ୍ତି ଜଣାଇ ତଡ଼ି ଦେଇଛନ୍ତି । ଏଠାରେ ରଚୟିତା ବଳରାମ ଦାସ ସେତେବେଳର ସମାଜରେ ନାରୀମାନଙ୍କ ପ୍ରତି ପୁରୁଷମାନଙ୍କର ଥିବା ମନୋଭାବକୁ ପ୍ରକାଶ କରିଛନ୍ତି ।

ଲକ୍ଷ୍ମୀଙ୍କ କୂଟକପଟ ଓ ଅଭିଶାପ ଯୋଗୁଁ ବଳରାମ ଓ ଜଗନ୍ନାଥଙ୍କୁ ଅନ୍ନ ଜଳ ମିଳି ନାହିଁ । ପରିଣତିରେ ଲକ୍ଷ୍ମୀ ନିଜକୁ ଜଣେ ଚଣ୍ଡାଳୁଣୀ ବୋଲି ଜଣାଇଥିଲେ ବି କ୍ଷୁଧାରେ ଅତିଷ୍ଠ ବଳରାମ ଅସ୍ପୃଶ୍ୟତା ଭେଦକୁ ମନରୁ ଦୂରେଇ ଦେଇ ସେଠାରେ ଭୋଜନ କରିବେ ବୋଲି ଜଗନ୍ନାଥଙ୍କ ମାଧ୍ୟମରେ ଜଣାଇଛନ୍ତି ଓ ଦୁଇଭାଇ ଯାକ ସେଠାରେ ଭୋଜନ କରି ପରିତୃପ୍ତ ହୋଇଛନ୍ତି । ଦୁହେଁ ଭୋଜନ କରିଥିବା ଘରଟି ଲକ୍ଷ୍ମୀଙ୍କର ବୋଲି ଜାଣିବା ପରେ ଜଗନ୍ନାଥ ଏକଥା ବଡ଼ଭାଇଙ୍କୁ ଜଣାଇଛନ୍ତି । ବଳରାମଙ୍କ ପରାମର୍ଶକ୍ରମେ ଜଗନ୍ନାଥ ବଡ଼ଭାଇଙ୍କ ତରଫରୁ ଦୋଷ ସ୍ୱୀକାର କରି ବଡ଼ଦେଉଳକୁ ବାହୁଡ଼ିବା ପାଇଁ ଲକ୍ଷ୍ମୀଙ୍କୁ ଅନୁରୋଧ କରିବାକୁ ତାଙ୍କ ନିକଟକୁ ଯାଇଛନ୍ତି । ଲକ୍ଷ୍ମୀ ସ୍ୱାମୀଙ୍କର ଯଥାବିଧି ସତ୍କାର କରିବା ପରେ– 'ଚଣ୍ଡାଳୁଣୀ ବୋଲି ମୋତେ ଦେଲ ଘଉଡ଼ାଇ/

ଚଣ୍ଡାଳୁଣୀ ଘରେ ଏବେ ଭୁଞ୍ଜିଲ ଗୋସାଇଁ/ ଚଣ୍ଡାଳ ବିଟାଳ ହେଲ ଦୁଇଗୋଟି ଭାଇ’ ବୋଲି କହି ଆକ୍ଷେପ କରିଛନ୍ତି । ପୁଣି ବଡ ଦେଉଳକୁ ବାହୁଡିବା ନିମିତ୍ତ ‘ଚଣ୍ଡାଳୁ ବ୍ରାହ୍ମଣ ଯାଏଁ ଖିଆ ଖୋଇ ହେବେ/ ସମସ୍ତେ ଖାଇଣ ହସ୍ତ ଜଳେ ନଧୋଇବେ । ହାଡିର ହସ୍ତୁ ବ୍ରାହ୍ମଣ ଛଡାଇ ଖାଇବେ/ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ’ ଭଳି ସର୍ତ୍ତ ରଖିଛନ୍ତି ଯାହାକୁ ଦୁଇଭାଇ ଗ୍ରହଣ କରିଛନ୍ତି । ଏଥିରୁ ଆମ ସମାଜରେ ସେତେବେଳେ ଦେଖା ଦେଇଥିବା ଜାତିଭେଦ ପ୍ରଥାର ବିଲୋପ ପାଇଁ ଏବଂ ହେୟ ରୂପେ ପରିଗଣିତା ହେଉଥିବା ନାରୀମାନଙ୍କୁ ଯଥାଯଥ ମର୍ଯ୍ୟାଦା ଦେବା ପାଇଁ ବଳରାମ ଦାସ ଭକ୍ତି ମାଧ୍ୟମରେ ଯେଉଁ ସଫଳ ପ୍ରୟାସ କରିଛନ୍ତି ତାହା ସାବ୍ୟସ୍ତ ।

ବିବାହ ବେଦୀରେ କନ୍ୟାପିତା ବରଙ୍କୁ କନ୍ୟାର ଦଶଦୋଷ କ୍ଷମା କରିବା ପାଇଁ ଅନୁରୋଧ କରିବାର ବିଧି, ବିଭାଘର ବେଳେ ବରକନ୍ୟା କଉଡି ଖେଳିବାର ପ୍ରଥା, ଦେଢଶୂରଙ୍କ ସମ୍ମୁଖକୁ ଭାଇ ବୋହୂ ନଯିବା ଓ ଭୋଜନ ସମୟରେ ଗୁରୁଜନମାନଙ୍କୁ ଆଗେ ପରଷିବାର ଚଳଣି ସମାଜରେ ପ୍ରଚଳିତ । ଏହିସବୁ ପ୍ରଚଳିତ ବିଧିବିଧାନ, ଚଳଣି ଓ ପରମ୍ପରାକୁ ବିଭିନ୍ନ ଘଟଣାବଳୀ ମାଧ୍ୟମରେ ଚମତ୍କାର ଭାବରେ ପ୍ରତିଫଳିତ କରାଯାଇଛି ‘ଶ୍ରୀ ମହାଲକ୍ଷ୍ମୀ ପୁରାଣରେ’ । ପାରିବାରିକ କଳହ ବେଳେ ଯେଉଁ ଉକ୍ତି-ପ୍ରତ୍ୟୁକ୍ତି, ଆକ୍ଷେପ-ପ୍ରତି ଆକ୍ଷେପ, ବଡଭାଇ-ସାନଭାଇ, ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ଆମ ସମାଜରେ ପରିଲକ୍ଷିତ ହୋଇଥାଏ, ସେସବୁ ଆରାଧ୍ୟ ଦେବଦେବୀଙ୍କଠାରେ ଆରୋପ କରାଯାଇଛି । ଯେମିତି, ବଳରାମଙ୍କ ପରାମର୍ଶକ୍ରମେ ଜଗନ୍ନାଥ ଲକ୍ଷ୍ମୀଙ୍କୁ ତଡିଦେବାକୁ ଚାହିଁବାରୁ ଲକ୍ଷ୍ମୀ କହିଛନ୍ତି, ସାଗର ମନ୍ଥନରୁ ଲକ୍ଷ୍ମୀ ବାହାରିବା ପରେ ଜଗନ୍ନାଥଙ୍କ ସହ ତାଙ୍କର ବିବାହ ଅବସରରେ ଲକ୍ଷ୍ମୀଙ୍କ ପିତା ବରୁଣ ଝିଅର ଦଶ ଦୋଷ କ୍ଷମା କରିବାକୁ ଅନୁରୋଧ କରିଥିବା ବେଳେ ଜଗନ୍ନାଥ ତାଙ୍କର ଗୋଟିଏ ମାତ୍ର ଦୋଷ କ୍ଷମା କରୁନାହାନ୍ତି କାହିଁକି ? ପୁଣି ବିବାହର ପରଦିନ କଉଡି ଖେଳ ବେଳେ ଜଗନ୍ନାଥ ଲକ୍ଷ୍ମୀଙ୍କ ହାତରୁ କଉଡି ଛଡାଇ ନପାରିବାରୁ ଗୋଟିଏ ବର ତାଙ୍କୁ ଯାଚନା କରିଥିଲେ । ଲକ୍ଷ୍ମୀ ସେତିକିବେଳେ କହିଥିଲେ ଆଠ ଦିନରେ ଥରେ ଗୁରୁବାର ଦିନ ସେ ପୁରପଲ୍ଲୀର ଲୋକମାନଙ୍କୁ ଭେଟିବାକୁ ଚାହାନ୍ତି । ତେଣୁ ସେହି ଦୋଷ ଯେମିତି ମାର୍ଜନା କରାଯାଏ । ଏଥିରେ ଜଗନ୍ନାଥ ସ୍ୱୀକୃତି ଦେଇଥିବାରୁ ସତ୍ୟଭଙ୍ଗ ହେଉଛି । ଏତିକିବେଳେ କୁହାଯାଇଛି–

‘ଜଗନ୍ନାଥ କହୁଛନ୍ତି କୋପଭର ହୋଇ  
ବାପ ତୋ ଲୁଣିଆ ଯେ ଗରଜି ମରୁଥାଇ ।  
ଝିଅ ଟେରୀ ତୋ ଦୁର୍ଗୁଣ କହିଲେ ନସରେ  
ବାପର ଗର୍ଜନ ଶବ୍ଦେ କିଏ ରହିପାରେ ।  
ଚାରିପାଖେ ମେଘନାଦ ପାଚେରୀ ତୋଳାଇ  
ଦେଉଳରେ ରହିଅଛୁ ଦୁଇଭାଇ ।’

ଯେଉଁ ଜାତିଭେଦ ପ୍ରଥାକୁ ଆଧାର କରି ତାଙ୍କୁ ପରିତ୍ୟାଗ କରାଯିବାର ନିଷ୍ପତ୍ତି ନିଆଯାଇଛି ଦୁଇ ଭାଇ କେମିତି ସେ ଦୋଷରୁ ମୁକ୍ତ ନୁହନ୍ତି, ତାହା ଲକ୍ଷ୍ମୀ ପ୍ରତ୍ୟୁତ୍ତରରେ ସାବ୍ୟସ୍ତ କରିଛନ୍ତି । ଯେମିତିକି ଗଉଡ ଘରେ ଦୁଇଭାଇ ଜନ୍ମ ହୋଇଥିବା କଥା, ନିମା ନାମକ ଗୋଳକ ଜାତିର ବ୍ୟକ୍ତିବିଶେଷଙ୍କ ଘରେ ଅନ୍ନଭୋଜନ କରିଥିବା କଥା, ବିଦୁର ଘରେ ଭୋଜନ କରିଥିବା କଥା, ଜାରା ଶବରର ଅଇଁଠା ଫଳମୂଳ ଖାଇବା କଥା ଆଦି ପ୍ରସଙ୍ଗ ଉତ୍ଥାପନ କରିଛନ୍ତି । ଫଳରେ ଜାତିଭେଦ ପ୍ରଥାର ଗୁରୁତ୍ୱ ହ୍ରାସ ପାଇବା ସଙ୍ଗେ ସଙ୍ଗେ ନାଟକୀୟତା ସୃଷ୍ଟି ଦ୍ୱାରା କୃତିଟି ସୁଖପାଠ୍ୟ ଓ ସର୍ବସାଧାରଣଙ୍କ ଗ୍ରହଣଯୋଗ୍ୟ ହୋଇପାରିଛି ।

ସାଂପ୍ରତିକ କାଳରେ ‘ଜାତିଭେଦ ପ୍ରଥା ବିଲୋପ’ ଓ ‘ନାରୀ ସଶକ୍ତି କରଣ’ ଆଦି ପ୍ରସଙ୍ଗ ସାହିତ୍ୟ ସମାଲୋଚକ ଏବଂ ସମାଜ ବିଜ୍ଞାନୀମାନଙ୍କର ଆଲୋଚ୍ୟ ବିଷୟବସ୍ତୁ ଭାବରେ ଗୃହୀତ ହୋଇଥିବା ଦୃଷ୍ଟିରୁ ଷୋଡଶ ଶତାବ୍ଦୀର ମଧ୍ୟଭାଗରେ ରଚିତ ‘ଶ୍ରୀମହାଲକ୍ଷ୍ମୀ ପୁରାଣ’କୁ ତର୍ଜମା ତଥା ପୁନଃମୂଲ୍ୟାୟନ କରିବାକୁ ଗୁରୁତ୍ୱ ଦିଆଯାଉଛି । ଓଡ଼ିଶାର ପୁରପଲ୍ଲୀରେ ଗୃହୀତ ତଥା ବହୁଳ ଭାବରେ ପଠିତ ‘ଶ୍ରୀମହାଲକ୍ଷ୍ମୀ ପୁରାଣ’ ଯେ ଆମର ସାଂସ୍କୃତିକ, ସାମାଜିକ ଏବଂ ଆଧ୍ୟାତ୍ମିକ ପରମ୍ପରାରେ ଗୁରୁତ୍ୱ ରଖୁଥିବା ଷୋଡଶ ଶତାବ୍ଦୀର ମଧ୍ୟ ଭାଗରେ ରଚିତ ଏକ ପୁରାତନ କୃତି, ଏହା ସ୍ୱୀକାର କରିବାକୁ ହେବ ।

ତେବେ ବଳରାମ ଦାସଙ୍କ ଦ୍ୱାରା ‘ଶ୍ରୀମହାଲକ୍ଷ୍ମୀ ପୁରାଣ’ରେ ଅନୁସୃତ ଜାତିଭେଦ ପ୍ରଥାର ବିଲୋପ ଓ ଅସ୍ପୃଶ୍ୟତା ନିବାରଣ ନିମିତ୍ତ ଉଦ୍ୟମ, ସର୍ବୋପରି ନାରୀଙ୍କୁ ସମ୍ମାନ ପ୍ରଦର୍ଶନ ଧାରାର ସଫଳ ଅୟମାରମ୍ଭ ଆଦିକବି ସାରଳା ଦାସଙ୍କ ଦ୍ୱାରା ‘ଚଣ୍ଡୀପୁରାଣ’ରେ କରାଯାଇଛି । ‘ମାର୍କଣ୍ଡେୟ ପୁରାଣ’ ଅନୁଯାୟୀ ବଶିଷ୍ଠଙ୍କ ପତ୍ନୀ ଅରୁନ୍ଧତୀ ହେଉଛନ୍ତି ମେଧାତିଥି ଋଷିଙ୍କ କନ୍ୟା ଏବଂ ଯେ ଯଜ୍ଞାନଳ ସମ୍ଭୂତା । ବୟଃ ପ୍ରାପ୍ତା ହେବା ପରେ ସେ ତପସ୍ୟାରତ ବଶିଷ୍ଠଙ୍କୁ ଦେଖି ତାଙ୍କ ପ୍ରତି ଆସକ୍ତ ହୋଇଥିଲେ । ବଶିଷ୍ଠ ମଧ୍ୟ ଅରୁନ୍ଧତୀଙ୍କୁ ପତ୍ନୀ ରୂପରେ ପାଇବା ପାଇଁ ତପସ୍ୟା କରୁଥିଲେ । ପରିଣତିରେ ଉଭୟେ ବିବାହ ବନ୍ଧନରେ ଆବଦ୍ଧ ହୋଇଛନ୍ତି । କିନ୍ତୁ ସାରଳା ଦାସଙ୍କ ‘ଚଣ୍ଡୀପୁରାଣ’ରେ ଅରୁନ୍ଧତୀ ହୋଇଛନ୍ତି ବହୁ ଧାନର ଅଧିକାରୀ ଅମ୍ବିକା ଚାଣ୍ଡାଳର କନ୍ୟା । ନଘୋଷ ରାଜାଙ୍କ ରାଜ୍ୟରେ ବର୍ଷ ବର୍ଷ ଧରି ଅପାଳକ ହେବାରୁ

ଏପରିକି ରାଜାଙ୍କ ଭଣ୍ଡାର ମଧ୍ୟ ଶୂନ୍ୟ ହୋଇଯିବାରୁ ସେହି ରାଜ୍ୟକୁ ରକ୍ଷା କରିବା ନିମିତ୍ତ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ନାରଦ ଶସ୍ୟ ସଂଧାନରେ ବାହାରିଛନ୍ତି । ସେ ଅମ୍ବିକାଙ୍କ ପାଖରେ ପ୍ରଚୁର ଧାନ ଥିବାର ଠାବ କରି ତାଙ୍କୁ ସାକ୍ଷାତ କରିଛନ୍ତି । ଅମ୍ବିକା ଧାନ ଦେବା ପାଇଁ ରାଜି ହୋଇଥିଲେ ମଧ୍ୟ ସର୍ତ୍ତ ରଖିଛନ୍ତି ଯେ ଯିଏ ତାଙ୍କ କନ୍ୟା ଅରୁନ୍ଧତୀଙ୍କର ପାଣିଗ୍ରହଣ କରିବେ ତାଙ୍କୁ ସେ ଯୌତୁକ ସ୍ୱରୂପ ଧାନ ଦେବେ । ନାରଦଙ୍କଠାରୁ ଏକଥା ଶୁଣିବା ପରେ ନଘୋଷ ଅମ୍ବିକାଙ୍କ ପାଖକୁ ଯାଇଥିଲେ ବିନା ସର୍ତ୍ତରେ ଧାନ ଆଣିବାକୁ । ମାତ୍ର ଅମ୍ବିକା ନିଜ ସର୍ତ୍ତରେ ଅଟଳ ରହିବାରୁ ନଘୋଷ ଫେରି ଆସିଛନ୍ତି । ପରିଶେଷରେ ବ୍ରହ୍ମାଙ୍କ ନିର୍ଦ୍ଦେଶକ୍ରମେ ବଶିଷ୍ଠ ଯାଇ ଅରୁନ୍ଧତୀଙ୍କ ପାଣିଗ୍ରହଣ କରିବାରୁ ଯୌତୁକ ସ୍ୱରୂପ ମିଳିଥିବା ଧାନରେ ନଘୋଷ ରାଜ୍ୟର ଅଧିବାସୀଙ୍କୁ ଆହାର ଯୋଗାଇ ଦିଆଯାଇଥିଲା । ଦେଶକୁ ରକ୍ଷା କରିବା ନିମିତ୍ତ ବ୍ରାହ୍ମଣ ଓ ଚଣ୍ଡାଳର ଜାତିଗତ ଭେଦକୁ ତ୍ୟାଗ କରିବାକୁ ପଡିଲା । କୁହାଗଲା, 'ବହୁତ ଧ୍ୱନି ଉପୁଜିଲା ମହାତ୍ମା ଗୁଣ କଲା/ ଚଣ୍ଡାଳ କୁଳ ସେ ଦୋଷ ନ ଲାଗିଲା ।'

ସାରଳା ଦାସ ଚାଣ୍ଡାଳ କନ୍ୟା ଅରୁନ୍ଧତୀଙ୍କ ସହିତ ବ୍ରାହ୍ମଣ ବଶିଷ୍ଠଙ୍କର କେବଳ ବିବାହ ସମ୍ପନ୍ନ କରାଇ ନାହାନ୍ତି ଅଧିକନ୍ତୁ ଅରୁନ୍ଧତୀଙ୍କଠାରେ ଦେବୀ ସୁଲଭ ସଦ୍‌ଗୁଣମାନ ଆରୋପିତ କରିଛନ୍ତି । କୁହାଯାଇଛି–

'ସେ ଅରୁନ୍ଧତୀ ଯାହା ରାନ୍ଧଇ ସେହୁ ହୁଅଇ ଅମୃତ ପାଗ
ଦେବ ଋଷି ରାଜଋଷି ତାହା ସମସ୍ତେ କଲେ ଭୋଗ ।
ବଶିଷ୍ଟେ ଯାଗଯଜ୍ଞଂ କରନ୍ତି ସେ ଅରୁନ୍ଧତୀ କି ଘେନି
ବଶିଷ୍ଠର ସଂଗତେ ସେ ହୋଇଲେ ସ୍ୱର୍ଗଗାମୀ ।
ତେଷଠି ଅପର୍ଣ୍ଣା ତୁଲେ ଯେ ଚଉଷଠି ଅପର୍ଣ୍ଣା
ସେ ବ୍ରହ୍ମ ଦେବସ୍ତିରୀ ପ୍ରଳୟ ଅନ୍ତସେହ୍ନା ।'

ଆହୁରି ମଧ୍ୟ କୁହାଯାଇଛି–

'ସେ ଅମ୍ବିକା ଚଣ୍ଡାଳର ଅନ୍ନଖାଇ ଯେତେକ ବ୍ରତିଲେ ସଂସାରେ
ପୃଥିବୀରେ ଶସ୍ୟ ଉପୁଜିଲେ ଅପାରେ ।
ଦେଖି ଆନନ୍ଦ ସେ ନଘୋଷ ନୃପତି
ସ୍ୱାମୀ ସେ ଚଣ୍ଡାଳ କୁଳେ ରହିଲା ବଡାଇଂ କୀରତି ।'

ବଳରାମ ଦାସଙ୍କ 'ଶ୍ରୀମହାଲକ୍ଷ୍ମୀ ପୁରାଣ'ରେ ଶ୍ରୀୟା ଚଣ୍ଡାଳୁଣୀଠାରେ ଆରୋପିତ ଶୁଚିତା, ପରିଷ୍କାର–ପରିଚ୍ଛନ୍ନତା ଓ ସୌନ୍ଦର୍ଯ୍ୟବୋଧ ଆଦି ସହ ଏହାକୁ ତୁଳନା କରାଯାଇପାରେ ।

ସ୍ୱରଚିତ ପୁରାଣର ଆଖ୍ୟାନଗୁଡିକରେ ଦେବଦେବୀ, ମୁନିଋଷିମାନଙ୍କୁ ସାଧାରଣ ମଣିଷ ସହିତ ସମତଳାସୀନ କରି ସମାଜ ସଂସ୍କାରର ବାର୍ତ୍ତା ଦେବା ନିମିତ୍ତ କାଳଜୟୀ ସ୍ରଷ୍ଟା ସାରଳା ଦାସ ଯେଉଁ ଧାରା 'ଚଣ୍ଡୀପୁରାଣ'ରେ ପ୍ରବର୍ତ୍ତନ କରିଥିଲେ, ତା'ର ଅନୁବର୍ତ୍ତୀ ହୋଇ ବଳରାମ ଦାସ ଅଧିକ ଲୋକାଭିମୁଖୀ ତଥା ଗ୍ରହଣଶୀଳ ସାରସ୍ୱତ କୃତି 'ଶ୍ରୀ ମହାଲକ୍ଷ୍ମୀ ପୁରାଣ' ରଚନା କରିଛନ୍ତି ବୋଲି କୁହାଯାଇପାରେ ।

ଉତ୍କଳ ବିଶ୍ୱବିଦ୍ୟାଳୟ ପରିସର
ବାଣୀ ବିହାର, ଭୁବନେଶ୍ୱର– ୭୫୧୦୦୪

**ସହାୟକ ଗ୍ରନ୍ଥସୂଚୀ:**

୧) ବଳରାମ ଦାସ, ଶ୍ରୀ ମହାଲକ୍ଷ୍ମୀ ପୁରାଣ ।

୨) ସାରଳା ଦାସ, ଚଣ୍ଡୀପୁରାଣ– ସମ୍ପାଦନା, ପ୍ରଫେସର କୃଷ୍ଣ ଚରଣ ସାହୁ, ବୁକ୍ସ ଏଣ୍ଡ୍ ବୁକ୍ସ, କଟକ ।

୩) ଚିତ୍ତରଞ୍ଜନ ଦାସ, ସନ୍ଥ(ଭକ୍ତି) ସାହିତ୍ୟ, ଓଡ଼ିଶା ସାହିତ୍ୟ ଏକାଡେମୀ, ୧୯୮୨ ।

୪) The Bhagabad Gita, Trans & Ed. by S.Radhakrishnan, Blackie & Son (India) Ltd, New Delhi, 1976.

୫) The Markendaya Purana, Trans. & Ed. by F.Eden Pargiter, Indological Book House, Varanasi, 1969.

❖ ❖ ❖

# ରଥେତୁ ବାମନଂ ଦୃଷ୍ଟ୍ୱା

**ଭଗବାନ ମହାପାତ୍ର**

ଓଡ଼ିଆ ଜାତିର ପ୍ରାଣର ଦେବତା ପ୍ରଭୁ ଶ୍ରୀଜଗନ୍ନାଥ । ସେ ସନାତନ ସଂସ୍କୃତିର ପ୍ରତୀକ । ଦାସିଆ ବାଉରୀଠାରୁ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପର୍ଯ୍ୟନ୍ତ, ଶ୍ରୀୟା ଚାଣ୍ଡାଳୁଣୀଠାରୁ ପ୍ରଭୁ ଶ୍ରୀଚୈତନ୍ୟଙ୍କ ପର୍ଯ୍ୟନ୍ତ ସବୁ ତାଙ୍କର ପ୍ରିୟ ସନ୍ତାନ । ସବୁ ଧର୍ମର ଆଚାର୍ଯ୍ୟମାନେ ଓ ସନ୍ଥମାନେ ଶ୍ରୀଜଗନ୍ନାଥଙ୍କ ଉପାସନାରେ ଅନୁଭବ କରିଛନ୍ତି ନିଜ ଉପାସ୍ୟ ଦେବତାଙ୍କର ସତ୍ତା । ଜଗନ୍ନାଥ ସଂସ୍କୃତି ସାଗରରେ ବିଶ୍ୱର ସବୁ ଧର୍ମଧାରା ଯେପରି ହୋଇଯାଇଛି ବିଲୀନ ଓ ବିଲୁପ୍ତ ।

ବେଦରେ ପରଂବ୍ରହ୍ମ ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବଶକ୍ତିମାନ ଓ ସର୍ବଗୁଣରେ ପ୍ରତିପାଦିତ । ସେ ଅବ୍ୟକ୍ତ ପୁରୁଷୋତ୍ତମ । ଗୀତାରେ କ୍ଷର ପୁରୁଷଠାରୁ ଭିନ୍ନ ଓ ଅକ୍ଷର ପୁରୁଷଠାରୁ ଶ୍ରେଷ୍ଠ । ପୁରାଣରେ ସେ ଯଜ୍ଞ ପୁରୁଷ ଲୀଳାପୁରୁଷ ଓ ମର୍ଯ୍ୟାଦା ପୁରୁଷ ଭାବରେ ଖ୍ୟାତ । ସେ ଅନାଦି କାଳରୁ ନୀଳାଚଳରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସ୍ୱରୂପରେ ନିତ୍ୟ ବିଦ୍ୟମାନ । ବେଦ, ପୁରାଣ, ଇତିହାସ ତାଙ୍କ ଲୀଳାର ଅନ୍ତ ନିର୍ଣ୍ଣୟ କରିପାରି ନାହିଁ ।

ଲୀଳାମୟଙ୍କର ବର୍ଷସାରା ଶ୍ରୀମନ୍ଦିରରେ ବିଭିନ୍ନ ପର୍ବପର୍ବାଣିରେ ଉତ୍ସବ ମୁଖର ହୋଇଥାଏ । ବାରମାସରେ ତେର ଯାତ୍ରା । ବିଶ୍ୱର ଅନେକ ସ୍ଥାନରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିର ପ୍ରତିଷ୍ଠା କରାଯାଇଛି ଓ ପୂଜା ଅନୁଷ୍ଠିତ ହେଉଥିଲେ ମଧ୍ୟ ଶ୍ରୀମନ୍ଦିରର ନୀତି ପରମ୍ପରା ଅନ୍ୟ ମନ୍ଦିରଠାରୁ ନିଶ୍ଚିତ ଭାବରେ ଭିନ୍ନ ଓ ଏହା ଶ୍ରୀମନ୍ଦିରର ସ୍ୱତ୍ୱଲିପି ଓ ଶାସ୍ତ୍ରୀୟ ପରମ୍ପରା ଆଧାରରେ ପାଳନ କରାଯାଏ । ସମସ୍ତ ଉତ୍ସବମାନଙ୍କ ମଧ୍ୟରେ ମହାପ୍ରଭୁଙ୍କର ଶ୍ରୀଗୁଣ୍ଡିଚା ଯାତ୍ରା ସର୍ବଶ୍ରେଷ୍ଠ ଉତ୍ସବ । ସ୍ୱୟଂ ମହାପ୍ରଭୁ ଗର୍ଭଗୃହ ତ୍ୟାଗ କରି ଭାଇ ଶ୍ରୀବଳଭଦ୍ର, ଅଲିଅଳୀ ଭଉଣୀ ଶ୍ରୀସୁଭଦ୍ରା ଓ ଚକ୍ରରାଜ ସୁଦର୍ଶନଙ୍କ ସହ ରଥରେ ଆରୋହଣ ପୂର୍ବକ ଶ୍ରୀଗୁଣ୍ଡିଚା ମନ୍ଦିରକୁ ନବ ଦିନ ପାଇଁ ଯାତ୍ରା କରିଥାନ୍ତି । ଏହି ଯାତ୍ରା ବହୁ ପ୍ରାଚୀନ ଓ ଶାସ୍ତ୍ରୀୟ ପରମ୍ପରାକୁ ଆଧାର କରି ପାଳିତ ହୋଇଆସୁଅଛି ।

ଏହି ଯାତ୍ରା ପାଇଁ ରଥ ନିର୍ମାଣ ଉଦ୍ଦେଶ୍ୟରେ ସଂଗ୍ରହ କରାଯାଉଥିବା କାଷ୍ଠ ଶାସ୍ତ୍ରାନୁମୋଦିତ ମାସ, ପକ୍ଷ, ତିଥି ଅନୁସାରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଆଜ୍ଞା ମାଳ ପ୍ରାପ୍ତି ଦ୍ୱାରା ନିର୍ଦ୍ଦିଷ୍ଟ ପୂଜା, ହୋମ, ବ୍ରାହ୍ମଣ ବରଣ ଓ ରଥଶିଳ୍ପୀ ବରଣ ମାଧ୍ୟମରେ ଶାସ୍ତ୍ରୀୟ ବିଧି ଅନୁସାରେ ଆରମ୍ଭ କରାଯାଇଥାଏ । ନିର୍ଦ୍ଦିଷ୍ଟ ଦିନରେ ରଥ ନିର୍ମାଣ କାର୍ଯ୍ୟ ଶେଷ ହେବା ପରେ ରଥଖଳାରୁ ସିଂହଦ୍ୱାର ନିକଟକୁ ତିନି ରଥକୁ ନିଆଯାଇଥାଏ । ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଶ୍ରୀମନ୍ଦିରର ପୁରୋହିତ ଓ ଶ୍ରୋତ୍ରୀୟ ବ୍ରାହ୍ମଣମାନଙ୍କ ଦ୍ୱାରା ରଥ ଓ ରଥରେ ସ୍ଥାପିତ କରାଯାଇଥିବା ପାର୍ଶ୍ୱଦେବତାମାନଙ୍କୁ ପ୍ରତିଷ୍ଠା କରାଯାଏ । ଏହାଦ୍ୱାରା ରଥ ସମ୍ପୂର୍ଣ୍ଣ ପବିତ୍ର ଓ ଦେବମୟରେ ପରିଣତ ହୋଇଯାଏ । ରଥ ପ୍ରତିଷ୍ଠା ପରେ ନିର୍ଦ୍ଦିଷ୍ଟ ସେବାୟତମାନଙ୍କ ଦ୍ୱାରା ଶ୍ରୀଜୀଉମାନଙ୍କର ପହଣ୍ଡି ବିଜେ କରାଯାଏ । ରଥାରୂଢ଼ ହେଲା ପରେ ରଥ ଉପରକୁ କେଉଁମାନେ ଯାଇପାରିବେ, କେଉଁମାନେ ଶ୍ରୀଜୀଉମାନଙ୍କୁ ସ୍ପର୍ଶ କରିପାରିବେ ସେ ବିଷୟରେ ସ୍କନ୍ଦପୁରାଣ, ନୀଳାଦ୍ରି ମହୋଦୟ, ବାମଦେବ ସଂହିତା, ବିଶ୍ୱାମିତ୍ର ସଂହିତାରେ ବିଶଦ ଭାବରେ ଉଲ୍ଲେଖ କରାଯାଇଅଛି । ଅନଧିକୃତ ବ୍ୟକ୍ତିମାନେ ସ୍ପର୍ଶ କଲେ ସେହି ପାପରୁ ମୁକ୍ତି ହେବା ପାଇଁ ପ୍ରାୟଶ୍ଚିତ ରୂପକ ବ୍ରତ ଯଥା– ଅଭିଷେକ, ଶାନ୍ତିହୋମ ଶାନ୍ତିସ୍ୱସ୍ତୟନ, ଶ୍ରୀଜୀଉମାନଙ୍କୁ ମହାସ୍ନାନ କରାଇବାର ବିଧି ଅଛି । ବିଗତ କେତେ ବର୍ଷ ହେଲା (୨୦୧୧ ଓ ୨୦୧୨) ଭକ୍ତମାନେ ଉତ୍କଣ୍ଠାର ସହିତ ପାପ, ପୁଣ୍ୟ, ଧର୍ମ, ଅଧର୍ମକୁ ଚିନ୍ତା ନକରି ରଥ ଉପରେ ଚଢ଼ି ଶ୍ରୀଜୀଉମାନଙ୍କୁ ସ୍ପର୍ଶ, ଆଲିଙ୍ଗନ କରି ମନେ ମନେ ପରମ ପୁଣ୍ୟ ଓ ଶାନ୍ତି ପାଇଲେ ବୋଲି ଅନୁଭବ

କରିଥାନ୍ତି। କିନ୍ତୁ ପ୍ରକୃତରେ ପୁରାଣ ଓ ଧର୍ମଶାସ୍ତ୍ରାନୁସାରେ ଏହା ମହାପାପ। ଅନଧିକୃତ ବ୍ୟକ୍ତିମାନଙ୍କର ସ୍ପର୍ଶରେ ପୂଜ୍ୟ ବିଗ୍ରହମାନଙ୍କର ଦୈବୀଶକ୍ତିର ହ୍ରାସ ହୋଇଥାଏ। ଏହାଦ୍ୱାରା ସମାଜରେ ବିଭିନ୍ନ ପ୍ରକାର ଅଶାନ୍ତି, ବିଦ୍ରୋହ ଓ ବିପ୍ଳବ ସୃଷ୍ଟି ହୋଇଥାଏ। ଧର୍ମଶାସ୍ତ୍ର ଅନୁସାରେ ସେବାପୂଜା, ନୀତିକାନ୍ତିରେ ଯେଉଁମାନେ ଅଧିକୃତ, ସେହିମାନେହିଁ ମନ୍ଦିରର ଗର୍ଭଗୃହରେ ଓ ରଥ ଉପରେ ଆରୋହଣ ପୂର୍ବକ ସେବା କରିବା ପାଇଁ ଅଧିକୃତ ଅଟନ୍ତି।

ଆଷାଢ ମାସର ଶୁକ୍ଳପକ୍ଷରେ ବିଷ୍ଣୁଙ୍କ ପ୍ରିତିପଦ ଶୁଭଦିନରେ ପୂର୍ବପରି ଯଥା ବିଧି ଅନୁଯାୟୀ ଏହି ତିନି ଦେବଙ୍କର ରଥକୁ ପ୍ରତିଷ୍ଠା କରି ଯେପରି ରଥ ଉପରେ ମନୁଷ୍ୟ, ପକ୍ଷୀ, ମାର୍ଜାର, ନେଉଳ କିମ୍ବା ଅନ୍ୟ କୌଣସି ଅଶୁଭଙ୍କର ପ୍ରାଣୀ ଆରୋହଣ ନକରେ ତାହା ପ୍ରତି ସାବଧାନ ରହିବ । ପୁନଶ୍ଚ ଯେଉଁ ବ୍ୟକ୍ତିଙ୍କର ସେବାପୂଜା ନୀତିକାନ୍ତିର ଆବଶ୍ୟକତା ନାହିଁ ସେହି ବ୍ୟକ୍ତି ରଥାରୂଢ ହୋଇ ଭଗବାନଙ୍କୁ ସ୍ପର୍ଶ କରିବା ଅନୁଚିତ ଅଟେ। ମାତ୍ର କାର୍ଯ୍ୟକାରଣ ନଥାଇ ଶ୍ରୀଜୀଉଙ୍କୁ ସ୍ପର୍ଶ ବିଷୟରେ କୌଣସି ଶାସ୍ତ୍ରରେ ଉଲ୍ଲେଖ ନାହିଁ। ଏଠାରେ ରଥାରୂଢ ମହାପ୍ରଭୁଙ୍କୁ ଦର୍ଶନ ବିଷୟରେ ଯାହା ପ୍ରମାଣ ଅଛି ତାହା ନିମ୍ନରେ ଉପସ୍ଥାପିତ ହେଲା –

ରଥସ୍ଥିତଂ ବ୍ରଜନ୍ତଂ ତଂ ମହାବେଦୀ ମହୋତ୍ସବେ
ଯେ ପଶ୍ୟନ୍ତି ମୁଦା ଭକ୍ତ୍ୟା ବାସସ୍ତେଷାଂ ହରେଃ ପଦେ।
(ଅଧ୍ୟାୟ ୩୩/୫୫ ସ୍କନ୍ଦ ପୁରାଣ)

ମହାବେଦୀ ମହୋତ୍ସବ ସମୟରେ ଯେଉଁମାନେ ସାନନ୍ଦ ହୃଦୟରେ ଭକ୍ତି ଭାବରେ ଭଗବାନଙ୍କର ରଥଯାତ୍ରା ଦର୍ଶନ କରନ୍ତି ନିଃସନ୍ଦେହରେ ବୈକୁଣ୍ଠବାସ ହୁଏ। ମହାବେଦୀକୁ ଗମନ କାଳରେ ରଥାରୂଢ ପୁରୁଷୋତ୍ତମ, ବଳଦେବ ଓ ସୁଭଦ୍ରାଙ୍କୁ ଦର୍ଶନ କରି ମାନବ ଯେ ଶତକୋଟି ଜନ୍ମାର୍ଜିତ ପାପରାଶିକୁ ବିନଷ୍ଟ କରିଥାଏ, ଏଥିରେ ବିନ୍ଦୁମାତ୍ର ବିଚାର କରିବାର ନାହିଁ।

ଭାରତରେ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ପ୍ରତ୍ୟେକ ମନ୍ଦିରରେ ଆରାଧ୍ୟ ଦେବତାଙ୍କୁ ଯଥେଷ୍ଟ ଦୂରରୁ ରହି ଦର୍ଶନ କରିବାର ବ୍ୟବସ୍ଥା ଅଛି। କିନ୍ତୁ ସ୍ପର୍ଶ କରିବାର ବିଧାନ କୌଣସିଠାରେ ନାହିଁ ଯେହେତୁ ପ୍ରତିଷ୍ଠିତ ଦେବାଦେବୀଙ୍କୁ ଅନଧିକୃତ ବ୍ୟକ୍ତିମାନେ ସ୍ପର୍ଶ କରିବା ଶାସ୍ତ୍ରାନୁମୋଦିତ ନୁହେଁ ଓ ଏହା ମହାପାପ। ଅତଏବ ଭକ୍ତମାନେ ଏହାକୁ ଜାଣି ରଥାରୋହଣ କରିବା, ପାର୍ଶ୍ୱଦେବତାଙ୍କ ମୁଣ୍ଡରେ ପାଦ ଦେଇ ଆରୋହଣ କରିବା ଓ ବିଗ୍ରହମାନଙ୍କୁ ସ୍ପର୍ଶ କରିବାର ପ୍ରୟାସରୁ ନିବୃତ ରହିବା ଉଚିତ। ଏହାଦ୍ୱାରା ନିଜର, ସମାଜର ମଙ୍ଗଳ ହେବା ସଙ୍ଗେ ସଙ୍ଗେ ଆରାଧ୍ୟ ଦେବତାମାନଙ୍କୁ ପ୍ରାୟଶ୍ଚିତଜନିତ ମହାପାପରୁ ରକ୍ଷା କରିପାରିବେ। ଶ୍ରୀଜଗନ୍ନାଥଙ୍କୁ ରଥ ଉପରେ ଭକ୍ତମାନଙ୍କୁ ଅବରୋଧମୁକ୍ତ ଦର୍ଶନର ବ୍ୟବସ୍ଥା ପ୍ରଶାସନ ଓ ସେବାୟତମାନଙ୍କ ଦ୍ୱାରା ସଂପାଦନ ହେଲେ ଶ୍ରୀକ୍ଷେତ୍ରରେ ଭକ୍ତମାନଙ୍କ ସହ ସାରା ବିଶ୍ୱରେ ଭକ୍ତମାନେ ମିଡିଆ ମାଧ୍ୟମରେ ଦର୍ଶନ କରିବାର ସୁଯୋଗ ପାଇବା ସଙ୍ଗେ ସଙ୍ଗେ ଆତ୍ମସନ୍ତୋଷ ଲାଭ କରିବେ ।

ଶ୍ରୀଗୁଣ୍ଡିଚା ବିହାର
ସର୍ବୋଦୟ ନଗର, ପୁରୀ

❖ ❖ ❖

# ଓଡ଼ିଆ ଭାଷା ସାହିତ୍ୟର ଏକ ଦୀପ୍ତିମନ୍ତ ଜ୍ୟୋତିଷ୍କ – ସ୍ୱର୍ଗତଃ ଶ୍ୟାମସୁନ୍ଦର ରାଜଗୁରୁ

ବିପିନ ବିହାରୀ ରଥ

୧୮୫୦ ମସିହାରୁ ୧୮୭୭ ମସିହା ମଧ୍ୟରେ ଇଷ୍ଟ ଇଣ୍ଡିଆ କମ୍ପାନୀର ପ୍ରଭୁତ୍ୱ ସମୟରେ ବଙ୍ଗଳା ପ୍ରେସିଡେନ୍ସୀ ପରିଚାଳନାଧୀନ ଥିବା ଓଡ଼ିଆ ଭାଷାଭାଷୀ ବହୁଳ ଅଂଚଳ ଯଥା ମେଦିନୀପୁର ଓ ବାଙ୍କୁଡ଼ାରୁ ପ୍ରଥମେ ଓଡ଼ିଆ ଭାଷାକୁ ସଂପୂର୍ଣ୍ଣ ରୂପେ ମୂଳପୋଛ କରିଦେବା ପରେ ତାହାରି ପରିଚାଳନାଧୀନରେ ଥିବା ଓଡ଼ିଶା ବିଭାଗର ଅନ୍ୟ ଅଂଚଳ ବିଶେଷକରି ବାଲେଶ୍ୱର, ପୁରୀ ଏବଂ କଟକ ଜିଲ୍ଲାରୁ ପର୍ଯ୍ୟାୟକ୍ରମେ ଓଡ଼ିଆ ଭାଷାକୁ ଲୋପ କରିଦେବାକୁ ପ୍ରବଳ ଉଦ୍ୟମ କରାଯାଇଥିଲା । ସେଥିରେ ୧୮୬୮ରୁ ୧୮୬୯ ମସିହା ମଧ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ବଙ୍ଗଳାର ଜଣେ ପ୍ରଖ୍ୟାତ ବିଦ୍ୟାର୍ଥୀ ଶ୍ରୀ ରାଜେନ୍ଦ୍ର ଲାଲ ମିତ୍ର । ତାଙ୍କୁ ପ୍ରତ୍ୟକ୍ଷ ସମର୍ଥନ ଜଣାଇ ଥିଲେ ସାହିତ୍ୟିକ ଶ୍ରୀ ଉମା ଚରଣ ହାଲ୍‌ଦାର, ଶିକ୍ଷାବିତ୍ ଶ୍ରୀଯୁକ୍ତ କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ଏବଂ ଅନ୍ୟ କେତେକ ପ୍ରତିଷ୍ଠିତ ତଥା ଈର୍ଷାନ୍ୱିତ ବଙ୍ଗାଳୀ ବ୍ୟକ୍ତି । ଶ୍ରୀ କାନ୍ତିଲାଲ ଭଟ୍ଟାଚାର୍ଯ୍ୟଙ୍କର ଘୋଷଣା ଥିଲା ଯେ, 'ଓଡ଼ିଆ ଏକ ଭାଷା ନୟ'। ଓଡ଼ିଆ ଜାତି ଏବଂ ଭାଷା ବରଂ ବଙ୍ଗଳା ଜାତି ଏବଂ ବଙ୍ଗଳା ଭାଷାଠାରୁ ଭିନ୍ନ ନୁହେଁ । ତା'ର ଏକ ଅଂଶ ବିଶେଷ ମାତ୍ର । ଏହାକୁ ଘୋର ପ୍ରତିବାଦ କରିଥିଲେ ଅନ୍ୟମାନଙ୍କ ମଧ୍ୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ବସବାସ କରୁଥିବା କେତେକ ଲବ୍ଧ ପ୍ରତିଷ୍ଠିତ ବଙ୍ଗାଳୀ ଏବଂ ଓଡ଼ିଆ କବି, ସାହିତ୍ୟିକ, ଶିକ୍ଷାବିତ୍ ଏବଂ ବୁଦ୍ଧିଜୀବୀ ଇତ୍ୟାଦି । ସେମାନଙ୍କ ମଧ୍ୟରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ସର୍ବଶ୍ରୀ ଭୂଦେବ ମୁଖୋପାଧ୍ୟାୟ (୧୮୨୭–୧୮୯୪) ଜଣେ ପ୍ରଖ୍ୟାତ ବଙ୍ଗାଳୀ ଶିକ୍ଷାବିତ୍ ଓ ସମାଜସେବୀ, କର୍ମବୀର ଶ୍ରୀ ଗୌରୀ ଶଙ୍କର ରାଏ (୧୮୩୮–୧୯୦୭), ବ୍ୟାସକବି ଶ୍ରୀ ଫକୀରମୋହନ ସେନାପତି (୧୮୪୩–୧୯୧୮), ରାଏବାହାଦୁର କବିବର ରାଧାନାଥ ରାୟ (୧୮୪୮–୧୯୦୮), କବି ମଧୁସୂଦନ ରାଓ (୧୮୫୩–୧୯୧୨), ଶ୍ରୀ ଗୌରୀ ଶଙ୍କରଙ୍କ ଅନୁଜ ଶ୍ରୀ ରାମଶଙ୍କର ରାୟ ଇତ୍ୟାଦି । ଏ ସମସ୍ତେ ପୁରୁଣା ତାଳପତ୍ର ପୋଥିରୁ ବିଭିନ୍ନ ସମୟର ଲେଖାକୁ ଉଦ୍ଧାର କରି ସାକ୍ଷ୍ୟ ପ୍ରମାଣ ସହ ନିଜର ଲେଖା ମାଧ୍ୟମରେ ନିଜର ମତାମତ ଉପସ୍ଥାପନ କରିଥିଲେ । ସେଇ ସମୟରେ ବାଲେଶ୍ୱରର ତତ୍‌କାଳୀନ ଜିଲ୍ଲାପାଳ ସାର ଜନ୍ ବୀମ୍‌ସ ଅନେକ ଗବେଷଣା ପୂର୍ବକ ସଂନ୍ଦର୍ଭମାନ ଉଦ୍ଧାର କରି ଓଡ଼ିଆ ବ୍ୟାକରଣ ଏବଂ ଉଚ୍ଚାରଣ ଉଦ୍‌ଭାବନାର ମୂଳତତ୍ତ୍ୱ ପ୍ରକାଶ କରି ବଙ୍ଗାଳୀଙ୍କ କ୍ରୁର ଉଦ୍ୟମକୁ ପ୍ରତିହତ କରିଥିଲେ । ଇତି ମଧ୍ୟରେ ବ୍ରିଟିଶ୍ ସରକାର ୧୮୫୮ ମସିହାରେ ଏକ ସ୍ୱତନ୍ତ୍ର ଆଇନ୍ ପ୍ରଣୟନ କରି ଇଷ୍ଟଇଣ୍ଡିଆ କମ୍ପାନୀକୁ ବନ୍ଦ (ଲିକ୍ୟୁଇଡେଟ୍) କରିଦେଇ ଭାରତର ଶାସନଭାର ନିଜ ହାତକୁ ନେଇଯାଇଥିଲେ । ତା'ପରେ ୧୮୭୫ ମସିହାରେ ବାଲେଶ୍ୱରର ରାଜା ଶ୍ରୀ ଶ୍ୟାମାନନ୍ଦ ଦେ ଏକ ମାନପତ୍ର ଜରିଆରେ ବ୍ରିଟିଶ୍ ସରକାରଙ୍କୁ ଲେଖି ଅନୁରୋଧ କରିଥିଲେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକତ୍ରିତ କରି ଗୋଟିଏ ପ୍ରଦେଶାଧୀନରେ ରଖିବା ପାଇଁ ।

୧୮୬୬ ମସିହାରେ ବିଶେଷକରି ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳରେ ପ୍ରଳୟଙ୍କରୀ ନଅଙ୍କ ଦୁର୍ଭିକ୍ଷ ସାଙ୍ଗକୁ ବ୍ୟାପକ ସଂକ୍ରାମକ ରୋଗ ବ୍ୟାପି ଯାଇଥିଲା । ସେତେବେଳର ପରିସ୍ଥିତିକୁ ମୁକାବିଲା କରିବାକୁ ସରକାରୀ ବ୍ୟବସ୍ଥାର ଘୋର ଅଭାବ ସାଙ୍ଗକୁ ଆନ୍ତରିକ ସରକାରୀ ଅନିଚ୍ଛାଶକ୍ତି ଯୋଗୁଁ ପୋକ ମାଛି ପରି ଅସଂଖ୍ୟ ଓଡ଼ିଆଙ୍କ ମୃତ୍ୟୁ ଘଟିଥିଲା । ଯାହା ସରକାରୀ ହିସାବ ଅନୁସାରେ ଦଶଲକ୍ଷରୁ ଉର୍ଦ୍ଧ୍ୱ ଥିଲା । ଏଭଳି ଦୁର୍ଭାଗ୍ୟଜନକ ପରିସ୍ଥିତି ସକାଶେ ଉପରୋକ୍ତ କାରଣ ଦାୟୀ ବୋଲି କେତେକ ଗୋରା ସାହେବ ଉଚ୍ଚପଦସ୍ଥ ଅଧିକାରୀ ମଧ୍ୟ ସ୍ୱୀକାର କରିଥିଲେ । ସେତେବେଳକୁ ଓଡ଼ିଆ ଭାଷାଭାଷୀ ଅଂଚଳ ତିନି ଭାଗରେ ବିଭକ୍ତ

ହୋଇ ବଂଗଳା ପ୍ରେସିଡେନ୍‌ସୀ, ସେଣ୍ଟ୍ରାଲ ପ୍ରଦେଶ ଏବଂ ମାନ୍ଦ୍ରାଜ ପ୍ରେସିଡେନ୍‌ସୀ ପରିଚାଳନା ଅଧୀନରେ ରଖାଯାଇଥିଲା । ଏହି ତିନୋଟି ଅଂଚଳରେ ଓଡ଼ିଆ ଭାଷା ସାହିତ୍ୟ ଏବଂ ସଂସ୍କୃତିକୁ ସଂପୂର୍ଣ୍ଣ ଭାବେ ଲୋପ କରିଦେବା ଉଦ୍ଦେଶ୍ୟରେ ପ୍ରଥମ ପଦକ୍ଷେପ ଭାବେ ଓଡ଼ିଆଙ୍କ ପାଇଁ ଉଦ୍ଦିଷ୍ଟ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷକ ବଦଳରେ ବଙ୍ଗାଳୀ, ହିନ୍ଦୀ ଓ ତେଲୁଗୁ ଶିକ୍ଷକଙ୍କୁ ଯଥାକ୍ରମେ ନିଯୁକ୍ତି କରାଇ ଓଡ଼ିଆ ଛାତ୍ରଛାତ୍ରୀଙ୍କୁ ବଙ୍ଗଳା ହିନ୍ଦୀ ବା ତେଲୁଗୁ ପଢ଼ି ଲେଖିବାକୁ ବାଧ କରାଯାଉଥିଲା । ଏପରି ଏକ ଓଡ଼ିଆ ଜାତିର ବିପର୍ଯ୍ୟୟ ସମୟରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଜନ୍ମ ଗ୍ରହଣ କରିଥିଲେ ଗଂଜାମ ଜିଲ୍ଲା ପାରଳାଖେମୁଣ୍ଡିର ସୁପରିଚିତ ରାଜଗୁରୁ ବଂଶରେ । ଅତ୍ୟନ୍ତ ଦୁଃଖର ବିଷୟ, ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ନିଃସନ୍ତାନ ଥିବା କାରଣରୁ ସେ ନିଜ ସଂପର୍କୀୟ ନୀଳମଣୀଙ୍କୁ ଦତ୍ତ ପୁତ୍ରଭାବେ ଗ୍ରହଣ କରିଥିଲେ । କିନ୍ତୁ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ୧୯୦୯ ମସିହା ଜୁଲାଇ ମାସ ୧୭ ତାରିଖରେ ଦେହାନ୍ତ ହେବାପରେ ନୀଳମଣି ଏବଂ ତାଙ୍କ ପରିବାର ଘୋର ଅର୍ଥାଭାବରୁ ପାରଳାଖେମୁଣ୍ଡି ଇଲ୍ଲାକା ଛାଡ଼ି ଅନ୍ୟତ୍ର ଚାଲି ଯାଇଥିଲେ । ସେହି କାରଣରୁ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଜନ୍ମ ତାରିଖ କେହି କହିପାରୁ ନାହାଁନ୍ତି । ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ପିଲାଦିନରୁ ଅତ୍ୟନ୍ତ ଚଳଚଞ୍ଚଳ, ବିଚକ୍ଷଣ ଏବଂ ଅତି ମେଧାବୀ ଥିଲେ । ବାଲ୍ୟାବସ୍ଥାରେ ସେ ଓଡ଼ିଆ, ସଂସ୍କୃତ ଏବଂ କର୍ମକାଣ୍ଡ ଅଧ୍ୟୟନ କରିଥିଲେ । ପରେ ଇଂରାଜୀ ଶିକ୍ଷା ଲାଭ କରି ଜଣେ ବିଦ୍ୱାନ ବ୍ୟକ୍ତିର ପରିଚୟ ଦେଇଥିଲେ । ଛାତ୍ରାବସ୍ଥାରେ ସେ ଓଡ଼ିଆ ଭାଷାକୁ ଗଂଜାମ ଜିଲ୍ଲା କୋର୍ଟ କଚେରୀରେ ଇଂରାଜୀ ଏବଂ ତେଲୁଗୁ ଭାଷା ସାଙ୍ଗକୁ ଅନ୍ୟତମ ଭାଷା ରୂପେ ସ୍ୱୀକୃତି କରାଇବା ପାଇଁ ଯେଉଁ ଆନ୍ଦୋଳନ ଚାଲୁ ରହିଥିଲା, ସେଥିରେ ସେ ସକ୍ରିୟଭାବେ ଅଂଶଗ୍ରହଣ କରି କୃତକାର୍ଯ୍ୟ ହୋଇ ୧୮୯୦ ମସିହାରେ ଗଂଜାମ ଜିଲ୍ଲାରେ ଓଡ଼ିଆ ଅନ୍ୟତମ କଚେରୀ ଭାଷା ରୂପେ ସ୍ୱୀକୃତି ପାଇଥିଲା । ୧୮୯୨ ମସିହାରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଗଂଜାମ ଜିଲ୍ଲାର ପ୍ରଥମ ସ୍ନାତକ ଭାବେ ରାଜମହେନ୍ଦ୍ରୀ ସରକାରୀ ମହାବିଦ୍ୟାଳୟରୁ କୃତିତ୍ୱର ସହ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ବ୍ରିଟିଶ ସରକାରଙ୍କ ଅଧୀନରେ ଚାକିରି କରିବାର ସେ ଘୋର ବିରୋଧୀ ଥିଲେ । ତେଣୁ ସେହି ବର୍ଷ ମାର୍ଚ୍ଚ ମାସ ୫ ତାରିଖରେ ପାରଳାଖେମୁଣ୍ଡିର ରାଜା ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ କନିଷ୍ଠ ଭ୍ରାତା ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଘରୋଇ ଶିକ୍ଷକ ଭାବେ ନିଯୁକ୍ତି ପାଇ ନିଜକୁ ଗୌରବାନ୍ୱିତ ମନେ କରିଥିଲେ । ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅଧ୍ୟାପନା ଯୋଗୁଁ ପରବର୍ତ୍ତୀ ସମୟରେ ଶ୍ରୀ ପଦ୍ମନାଭ ନାରାୟଣ ଦେବ ନାନା ଭାବରେ ସାହିତ୍ୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲେ । ସେହି ୧୮୯୨ ମସିହା ଏପ୍ରିଲ ମାସ ୨୬ ତାରିଖରେ ତଥା ବୈଶାଖ କୃଷ୍ଣପକ୍ଷ ଅମାବାସ୍ୟା ତିଥିରେ ରାଜା ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଔରସରୁ ଜନ୍ମଗ୍ରହଣ କରିଥିଲେ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପାଇଁ ଅନ୍ୟତମ ଗୌରବର ବିଷୟ ଥିଲା ରାଜା ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଘରୋଇ ଶିକ୍ଷକ ଭାବେ ନିଯୁକ୍ତ କରିଥିଲେ ମିଷ୍ଟର ଏଡ଼ମଣ୍ଡ କ୍ୟାଣ୍ଡଲର ସାହେବ ଏବଂ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କୁ । ଇତ୍ୟବସରରେ ଶ୍ରୀ ରାଜଗୁରୁ ଦେଶ ହିତକର କାର୍ଯ୍ୟ ସାଧନାର୍ଥେ ପାରଳାଖେମୁଣ୍ଡି ସହରରେ ଉତ୍କଳ ହିତୈଷିଣୀ ସଭା ସଂସ୍ଥାପନା କରି ଦକ୍ଷତାର ସହ ଆଜୀବନ ବ୍ୟାପି ସେହି ସଂସ୍ଥାର ସଭାପତି ଦାୟିତ୍ୱ ବହନ କରିଥିଲେ । ଶ୍ରୀ ରାଜଗୁରୁ ନିଜର ବଳିଷ୍ଠ ନେତୃତ୍ୱ, ଅଧ୍ୟବସାୟ, ନିଷ୍ଠାପରତା, ସଚ୍ଚୋଟତା, ଦକ୍ଷତା ଏବଂ ବହୁ ଲୋକହିତକର କାର୍ଯ୍ୟ କରିବା ଦ୍ୱାରା ପାରଳାଖେମୁଣ୍ଡି ପୌର ସଂସ୍ଥାର ଅନବରତ ପନ୍ଦର ବର୍ଷକାଳ ଅଧ୍ୟକ୍ଷ ଦାୟିତ୍ୱ ବହନ କରିଥିଲେ । ତତ୍‌କାଳୀନ ଗଂଜାମ ଜିଲ୍ଲାର ଅଂଶ ବିଶେଷ ଶ୍ରୀକାକୁଲମ ତାଲୁକାବୋଡ଼ (ବର୍ତ୍ତମାନ ଶୀକାକୁଲମ ଜିଲ୍ଲା ଆନ୍ଧ୍ରପ୍ରଦେଶ) ଏବଂ ଗଂଜାମ ଜିଲ୍ଲା ବୋର୍ଡ଼ର ନିର୍ବାଚିତ ସଭ୍ୟ ରୂପେ ବହୁବର୍ଷ ଧରି ଦକ୍ଷତାର ସହ ଅନେକ ଜନହିତକର କାର୍ଯ୍ୟ କରି ବିଶେଷ ସୁନାମ ଅର୍ଜନ କରିଥିଲେ । ସେଭଳି ପାରଳାଖେମୁଣ୍ଡିରେ ପ୍ରତିଷ୍ଠିତ ପଦ୍ମନାଭ ରଂଗାଳୟ ଏବଂ ଗଜପତି ମୁଦ୍ରଣାଳୟ ଶ୍ରୀ ରାଜଗୁରୁଙ୍କ ତତ୍ତ୍ୱାବଧାନରେ ରହି ଉନ୍ନତି ସାଧନ କରି ଅନେକ ଲୋକଙ୍କ ସେବାରେ ଲାଗିଥିଲା । ଶ୍ରୀ ରାଜଗୁରୁ ଜଣେ ଉଚ୍ଚକୋଟୀର ସାମ୍ବାଦିକ ଭାବେ 'ଗଂଜାମ ନ୍ୟୁଜ' ନାମରେ ଏକ ଇଂରାଜୀ ସାପ୍ତାହିକ ପତ୍ରିକାର ସୁଦକ୍ଷ ସଂପାଦକ ଥିଲେ । ଏତଦ୍‌ବ୍ୟତୀତ ଓଡ଼ିଆଙ୍କ 'ଫିଷ୍ଟସ୍ ଆଣ୍ଡ ଫାଷ୍ଟସ୍' (ଓଡ଼ିଆଙ୍କ ବ୍ରତ ଓ ଉପବାସ) ନାମରେ ଏକ ଇଂରାଜୀ ପୁସ୍ତକ ସଂକଳନ କରି ଯଥେଷ୍ଟ ସୁନାମ ଅର୍ଜନ କରିଥିଲେ । ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଓଡ଼ିଆ, ସଂସ୍କୃତ, ଇଂରାଜୀ, ହିନ୍ଦୀ, ବଙ୍ଗଳା, ତେଲୁଗୁ ଓ କନ୍ନଡ଼ ଭାଷାରେ ବିଶେଷ ପାଣ୍ଡିତ୍ୟ ଥିଲା, 'କର୍ଣ୍ଣାଟୀ ରାଗ-ରାଗୀଣୀ'ରେ ସେ କେତେକ ସଂଗୀତ ରଚନା କରି ଓଡ଼ିଆ ଭାଷାରେ ଦାକ୍ଷିଣାତ୍ୟ ସଂଗୀତର ସୂତ୍ରପାତ କରିଥିଲେ । ଓଡ଼ିଆ ସାହିତ୍ୟର ସୁରକ୍ଷା ଏବଂ ପ୍ରସାରଣ ଦିଗରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅବଦାନ ଅତୁଳନୀୟ । ଓଡ଼ିଆ ଛନ୍ଦ, ଶୈଳୀ, ଓଡ଼ିଆ ବିଭକ୍ତି, ଅବ୍ୟୟ,

ସର୍ବନାମ, ଉତ୍କଳ ଭାଷାତତ୍ତ୍ୱ ଓ ଶବ୍ଦ ପ୍ରୟୋଗ ସଂବନ୍ଧରେ ସେ ଯେଉଁ ଆଲୋକପାତ କରି ଯାଇଛନ୍ତି, ତାହା ତାଙ୍କରି ଅଗାଧ ପାଣ୍ଡିତ୍ୟର ପରିଚୟ ଦିଏ । ତାଙ୍କରି ରଚିତ 'ଧ୍ରୁବନାଟକର ସମାଲୋଚନା' ଏବଂ 'ଉତ୍ତର ପ୍ରତ୍ୟୁତ୍ତର' ପାଠ କଲେ ସାହିତ୍ୟିକ ରାଜଗୁରୁଙ୍କର ଅତୁଳନୀୟ ପାଣ୍ଡିତ୍ୟ ତଥା ଓଡ଼ିଆ ସାହିତ୍ୟ ପ୍ରତି ଯେଉଁ ପ୍ରକାର ଅସୀମ ଆଗ୍ରହ ଥିଲା ଆପଣାର ଜନ୍ମଭୂମି ଗଂଜାମର ଅନାବିଳ ଓଡ଼ିଆ ଭାଷା ପ୍ରତି ମଧ୍ୟ ସେହିପରି ମମତା ଥିବା ଜଣାଯାଏ । ଏହା ତାଙ୍କରି ମନ୍ତବ୍ୟରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଏବଂ ସାହିତ୍ୟିକ ରାଜଗୁରୁଙ୍କର ଆଧୁନିକ ଓଡ଼ିଆ ଭାଷାର ଶୈଳୀ ଓ ଶବ୍ଦ ପ୍ରୟୋଗ ସଂବନ୍ଧରେ କି ଧାରଣା ଥିଲା ତାହା ମଧ୍ୟ ପ୍ରମାଣିତ ହୁଏ । ତାଙ୍କରି ମତାମତରୁ ଜଣାଯାଏ ଯେ ଓଡ଼ିଆ ଭଳି ଉନ୍ନତଶୀଳ ଭାଷା କଦାପି ରକ୍ଷଣଶୀଳ ହୋଇନପାରେ । ତାହା ପରିବର୍ତ୍ତନଶୀଳ ହେବା ସ୍ୱାଭାବିକ । କେତେକ ଈର୍ଷାନ୍ୱିତ ବଙ୍ଗାଳୀ ବିଦ୍ୱାନ ଓଡ଼ିଆ ଭାଷା ସାହିତ୍ୟ ଏବଂ ସଂସ୍କୃତର ମୂଳତତ୍ତ୍ୱ ଉପରେ ଯେଉଁ ବିରୋଧ ମତପୋଷଣ କରିଥିଲେ, ତାକୁ ଦୃଢ଼ ସମାଲୋଚନା କରି ଛନ୍ଦ କବି ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଆ ବିଂଶତିକ୍ଷର ଛନ୍ଦ ପ୍ରକୃତ ଗୀତା ଛନ୍ଦର ଅନୁରୂପ ଉପରେ ଆଲୋକପାତ କରିବାକୁ ଯାଇ ଅଭିମତ ପ୍ରକାଶ କରିଥିଲେ ଯେ ପ୍ରାଚୀନ ବଂଗଳା ଭାଷା ଉପରେ ପ୍ରାଚୀନ ଓଡ଼ିଆ ଭାଷାର ପ୍ରାଧାନ୍ୟ ଥିବାର ପ୍ରମାଣ ମିଳେ । କିନ୍ତୁ ପ୍ରାଚୀନ ବଂଗଳା ଭାଷାର କୌଣସି ବିଷୟ ଓଡ଼ିଆମାନେ ଅନୁକରଣ କରିଥିବା ପରି ଜଣାଯାଏ ନାହିଁ । ସାହିତ୍ୟିକ ଶ୍ରୀ ରାଜଗୁରୁ ଉତ୍କଳୀୟ କେତେକ ଅତି ପ୍ରାଚୀନ ତଥା ପ୍ରଖ୍ୟାତ କବି ଯଥା ଶୂଦ୍ରମୁନୀ ସାରଳା ଦାସ, ବଳରାମ ଦାସ, ଦୀନକୃଷ୍ଣ ଦାସ, ଦ୍ୱାରକା ଦାସ, ଧନଞ୍ଜୟ ଭଂଜ, ହଳଧର ଦାସ, ଗୋପାଳକବି, କୃଷ୍ଣ ସିଂହ, ଦାଶରଥୀ ଦାସ, କୃପାସିନ୍ଧୁ ଦାସ, କବି ହରିକୃଷ୍ଣ, ରାମଦାସ, ନିଶଙ୍କ ରାୟ ରାଣୀ, କାହ୍ନୁ ଦାସ ଇତ୍ୟାଦିଙ୍କ ସଂକ୍ଷିପ୍ତ ଜୀବନୀ ଉପରେ ଅମୂଲ୍ୟ ଆଲୋକପାତ କରିଯାଇଛନ୍ତି । ତା'ସହିତ ଉତ୍କଳୀୟ ଭାଷାର ଆଲୋଚନା ଏବଂ ସମାଲୋଚନା ସଂବନ୍ଧରେ ଅନେକଗୁଡ଼ିଏ ପ୍ରବନ୍ଧ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି, ଯାହାକି ସମୟ ସମୟରେ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଉଥିଲା । ଉତ୍କଳର କବି ଗୁରୁ କବିବର ରାଧାନାଥ ରାଏ ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରି ନିଜ ଭାଷଣ କ୍ରମେ କହିଥିଲେ, ଓଡ଼ିଶାରେ ଅନ୍ୟାନ୍ୟ ବ୍ୟକ୍ତିଙ୍କ ମଧ୍ୟରେ ସୁପଣ୍ଡିତ ବାବୁ ଶ୍ୟାମସୁନ୍ଦର ରାଜଗୁରୁ ବି.ଏ., ମହାଶୟ ଉତ୍କଳ ସାହିତ୍ୟର ଇତିହାସ ପ୍ରଣୟନ ବିଷୟରେ ପ୍ରସଂଶନୀୟ ଅଧ୍ୟବସାୟ ପ୍ରଦର୍ଶନ କରି ଆମ୍ଭମାନଙ୍କର ଧନ୍ୟବାଦାର୍ହ ହୋଇଛନ୍ତି ।

ଇତିମଧ୍ୟରେ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ସାଙ୍ଗକୁ ତ୍ରିଖଣ୍ଡିତ ଓଡ଼ିଆ ଭାଷାଭାଷୀ ଅଂଚଳ ତଥା ଓଡ଼ିଆଙ୍କ ପ୍ରତି ଯେଉଁଭଳି ସଂଗଠିତଭାବେ ଅବହେଳା, ଅନ୍ୟାୟ, ଅତ୍ୟାଚାର ବଢ଼ିବାରେ ଲାଗିଥିଲା ସେହି କାରଣରୁ ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳରେ ତୀବ୍ର ପ୍ରତିକ୍ରିୟା ତଥା ଆନ୍ଦୋଳନ ମୁଣ୍ଡ ଟେକିଥିଲା । ବିଶେଷକରି ଗଂଜାମ ଏବଂ ସମ୍ବଲପୁର ଅଞ୍ଚଳରେ ଘୋର ଦାବୀ ହୋଇଥିଲା ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକତ୍ରୀକରଣ କରି ଏକ ପ୍ରଦେଶ ଅଧୀନରେ ରଖି ଓଡ଼ିଆ ଭାଷା ସାହିତ୍ୟ ଏବଂ ସଂସ୍କୃତିକୁ ସୁରକ୍ଷା ପ୍ରଦାନ କରିବା ସାଙ୍ଗକୁ ଅଭିବୃଦ୍ଧି କରାଇବା ଏବଂ ସେହି ଅଂଚଳର ସର୍ବାଙ୍ଗୀନ ଉନ୍ନତି ସାଧନ ସକାଶେ । ସେତିକିବେଳେ ସେହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଉତ୍କଳଗୌରବ ଶ୍ରୀ ମଧୁସୂଦନ ଦାସ (୧୮୪୮–୧୯୩୪) । ଏହି ଉଦ୍ଦେଶ୍ୟରେ ବ୍ରିଟେନ୍‌ର ବୁଦ୍ଧିଜୀବୀ ତଥା ଲୋକପ୍ରିୟ ରାଜନେତାଙ୍କ ଦୃଷ୍ଟି ଆକର୍ଷଣ କରି ସମର୍ଥନ ଯୋଗାଡ଼ କରିବା ସକାଶେ ଉତ୍କଳଗୌରବ ମଧୁସୂଦନ ୧୮୯୭ ସାଲରେ ଲଣ୍ଡନ ଗସ୍ତ କରିଥିଲେ । ସେଠାରୁ ଫେରି ୧୯୦୦ ମସିହାର ପ୍ରାରମ୍ଭରେ ସେ ଭାରତର ବଡ଼ଲାଟ ଲର୍ଡ଼ କର୍ଜନଙ୍କ ନିକଟକୁ ଏକ ମାନପତ୍ର ଜରିଆରେ ଓଡ଼ିଆଙ୍କ ଦୀର୍ଘଦିନର ଦାବୀକୁ ଉପସ୍ଥାପିତ କରିଥିଲେ ଏବଂ ସେଥିସକାଶେ ୧୯୦୦ ମସିହା ଡିସେମ୍ବର ମାସ ୧୫ ତାରିଖରେ ଲର୍ଡ଼ କର୍ଜନଙ୍କୁ ସିମ୍ଲାଠାରେ ସାକ୍ଷାତ କରି ଆଲୋଚନା କରିଥିଲେ ।

ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଉପଦେଶକ୍ରମେ ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ନେତୃତ୍ୱରେ ୧୯୦୨ ମସିହାରେ ରମ୍ଭାଠାରେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକତ୍ରୀକରଣ କରି ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଦାବି ଉପସ୍ଥାପନ କରିବା ସକାଶେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ୧୯୦୨ ମସିହା ଡିସେମ୍ବର ମାସ ୧୫ ତାରିଖରେ ବାଲେଶ୍ୱରର ଜମିଦାର ଶ୍ରୀ ବୈକୁଣ୍ଠନାଥ ଦେ ଭାରତର ବଡଲାଟ୍ ଲର୍ଡ଼ କର୍ଜନଙ୍କୁ ଏକ ମାନପତ୍ର ଜରିଆରେ ଦର୍ଶାଇ ଥିଲେ ଯେ ଓଡ଼ିଶା ଭାଷାଭାଷୀ ଅଂଚଳକୁ ଖଣ୍ଡ ବିଖଣ୍ଡିତ କରିବା ଦ୍ୱାରା ଓଡ଼ିଆମାନେ କିଭଳି ଭାବେ ଦୁଃଖଯନ୍ତ୍ରଣା ଭୋଗୁଛନ୍ତି ଏବଂ ଓଡ଼ିଆଭାଷା, ସାହିତ୍ୟ, ସଂସ୍କୃତି ଇତ୍ୟାଦିର ଉନ୍ନତିକଳ୍ପେ ଓଡ଼ିଆ ଭାଷାଭାଷୀ ଅଂଚଳର ଏକତ୍ରୀକରଣ ଏକାନ୍ତ ଆବଶ୍ୟକ । ଏହା ପରେ ପରେ ୧୯୦୩ ମସିହା ଏପ୍ରିଲ ମାସରେ ଗଂଜାମ ବ୍ରହ୍ମପୁରଠାରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପୌରହିତ୍ୟରେ ଏକ ଗଂଜାମ ଜାତୀୟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ତା'ର

ଉଦ୍ଦେଶ୍ୟ ଥିଲା, ପ୍ରାଚୀନ ଓଡ଼ିଆ ତାଳପତ୍ର ପୋଥି ଏବଂ ପ୍ରାଚୀନ ଓଡ଼ିଆ ଗ୍ରନ୍ଥ ସଂଗ୍ରହ ଓ ମୁଦ୍ରଣ, ଓଡ଼ିଆ ସାରସ୍ୱତ ସ୍ରଷ୍ଟାଙ୍କର ସ୍ମୃତି ରକ୍ଷା ସାଙ୍ଗକୁ ଓଡ଼ିଆ ଭାଷାଭାଷୀ ଅଂଚଳରେ ଥିବା ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷକ ନିଯୁକ୍ତି ଏବଂ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଚଳନ ଇତ୍ୟାଦି । ଉପରୋକ୍ତ ଉଭୟ ସମ୍ମିଳନୀ ୧୯୦୩ ଡିସେମ୍ବର ୩୦ ତାରିଖରେ କଟକଠାରେ ଭାଷା ଭିତ୍ତିରେ ଓଡ଼ିଶା ପ୍ରଦେଶ ଗଠନ ଦାବିକୁ ନେଇ ପ୍ରଥମ ଉତ୍କଳ ସମ୍ମିଳନୀ ନିମନ୍ତେ ପଥପ୍ରଦର୍ଶକ ହୋଇଥିଲା । ସେହି ଉତ୍କଳ ସମ୍ମିଳନୀ ପରବର୍ତ୍ତୀ ସମୟରେ ବଳିଷ୍ଠ ପଦକ୍ଷେପ ନେଇଥିଲା ଓଡ଼ିଆ ଭାଷାଭାଷୀ ଅଂଚଳକୁ ନେଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବାରେ । ଦୁର୍ଭାଗ୍ୟବଶତଃ ୧୯୦୫ ମସିହାରେ ପାରଳାଖେମୁଣ୍ଡି ରାଜା ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଅକାଳ ବିୟୋଗ ଘଟିଲା । ସେତେବେଳକୁ ଯୁବରାଜ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ମାତ୍ର ୧୩ ବର୍ଷ । ସେହି କାରଣରୁ ପାରଳାଖେମୁଣ୍ଡି ଜମିଦାରୀ ପରିଚାଳନା ଦାୟିତ୍ୱ ବ୍ରିଟିଶ ସରକାରଙ୍କ କୋର୍ଟ ଅଫ ୱାର୍ଡ଼ସ ହସ୍ତରେ ନ୍ୟସ୍ତ ହେଲା କୋର୍ଟ ଅଫ୍ ୱାର୍ଡ଼ସ, ଯୁବରାଜ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ଶିକ୍ଷାପ୍ରାପ୍ତି ସକାଶେ ନିୟୁଇଣ୍ଟନ ଠାରେ ଅବସ୍ଥିତ ମାନ୍ଦ୍ରାଜ କୋର୍ଟ ଅଫ୍ ୱାର୍ଡ଼ସ ଶିକ୍ଷାନୁଷ୍ଠାନକୁ ସ୍ଥାନାନ୍ତରିତ କରିଥିଲେ । ତା ସାଙ୍ଗକୁ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପରମ ମିତ୍ର ତଥା ଅଶେଷ ଉତ୍ସାହଦାତା ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଅକାଳ ବିୟୋଗ ଘଟିବାରୁ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ପାରଳାଖେମୁଣ୍ଡି ରାଜକୀୟ ସଂପର୍କ ଛିନ୍ନ ହୋଇଗଲା । ଶ୍ରୀ ରାଜଗୁରୁ ବିଶେଷ ମନୋବ୍ୟାଧି ସଂକୁଳ, ରୁଗ୍ଣ ଓ ହତୋତ୍ସାହ ହୋଇପଡ଼ିଲେ । ପରିଶେଷରେ ୧୭।୭।୧୯୦୯ ମସିହାରେ ମାତ୍ର ୪୩ ବର୍ଷ ବୟସରେ ସେ ଇହଲୀଳା ସଂବରଣ କଲେ । ସ୍ୱର୍ଗତଃ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଲିଖିତ, ସଂକଳିତ ଓ ସମୟ ସମୟରେ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ଇତ୍ୟାଦି ପାରଳାଖେମୁଣ୍ଡି ନିବାସୀ ଶ୍ରୀ ସିମାଦ୍ରୀ ଗନ୍ତାୟତ ଏବଂ ଶ୍ରୀ ନିତ୍ୟାନନ୍ଦ ପଟ୍ଟନାୟକ ବି.ଏ. ସଂଗୃହିତ କରି ୩୦।୧।୧୯୧୭ରେ ପୁସ୍ତକ ଆକାରରେ 'ପ୍ରବନ୍ଧାବଳୀ' ନାମରେ ପ୍ରକାଶ କରିଥିଲେ, ଯାହାକି ଉତ୍କଳ ସାହିତ୍ୟ ଓ ଉତ୍କଳ ଭାଷାର ସୌଧ ଗଠନାର୍ଥେ ସ୍ୱର୍ଗତଃ ଶ୍ୟାମସୁନ୍ଦର ରାଜଗୁରୁ ଯେ ଭିତ୍ତି ସ୍ଥାପନା କରିଯାଇଛନ୍ତି, ତାହା ପୂର୍ଣ୍ଣମାତ୍ରାରେ ସେଥିରୁ ଅନୁମେୟ । ଓଡ଼ିଆ ଭାଷାର ଇତିହାସ, ଓଡ଼ିଆ ସାହିତ୍ୟ ଇତିହାସ ଏବଂ ଓଡ଼ିଆ ଛନ୍ଦର ଇତିହାସ ବିଚାରରେ 'ପ୍ରବନ୍ଧାବଳୀ' ଏକ ଗୌରବୋଜ୍ଜ୍ୱଳ ଅବଦାନ । ବାସ୍ତବରେ ଓଡ଼ିଆ ସାହିତ୍ୟ ଗଗନର ସେ ଥିଲେ ଏକ ଦୀପ୍ତିମନ୍ତ ଜ୍ୟୋତିଷ୍କ ।

କନିକା ରୋଡ଼
କଟକ–୭୫୩୦୦୮

ଆଜୀବନ ସଭାପତି– ଆନ୍ତର୍ଜାତିକ ଅଶୋଭନୀୟତା ନିରୋଧ ଆନ୍ଦୋଳନ ।

ସଭାପତି– ଇଣ୍ଡିଆନ୍ ଇନଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ ଆଡ଼ମିନଷ୍ଟ୍ରେସନ୍, ସ୍ଥାନୀୟ ଶାଖା, କଟକ ।

ପୂର୍ବତନ ସଭାପତି– ନିଖିଳ ଓଡ଼ିଶା ଆଇନଜୀବୀ ସଂଘ, ଓଡ଼ିଶା ଉଚ୍ଚନ୍ୟାୟାଳୟ ଆଇନଜୀବୀ ସଂଘ, ଓଡ଼ିଶା ସଂସ୍କୃତ

ମହାସଂଘ, ଉତ୍କଳଗୌରବ ମଧୁସୂଦନ ଦାସ ସ୍ମୃତି ସଂସଦ ଇତ୍ୟାଦି ।

❖ ❖ ❖

# ଶିକ୍ଷା ଓ ମହିଳା ସଶକ୍ତିକରଣ

ମନସ୍ୱିନୀ ପାତ୍ର

ଜାତିର ଜନକ ମହାତ୍ମା ଗାନ୍ଧୀ ଥରେ କହିଥିଲେ, 'ଶିକ୍ଷା ଆମକୁ ସ୍ୱାଧୀନ କରାଏ, ବିଭିନ୍ନ ପ୍ରକାର ବନ୍ଧନରୁ ମୁକ୍ତିକରେ । ଆମକୁ ଏକ ଉଜ୍ଜ୍ୱଳ ଭବିଷ୍ୟତର ପଥ ଉନ୍ମୁକ୍ତ କରେ । ଦେଶର ଜାତୀୟ ସମ୍ପଦକୁ ସୁଦୃଢ଼ କରେ । ଚରିତ୍ର ଗଠନରେ ସାହାଯ୍ୟ କରେ । ଆମ ପୁଅ ଝିଅଙ୍କର ଜ୍ଞାନର ପରିସର ସମୃଦ୍ଧ କରିବା ସହିତ ଚଳଚଞ୍ଚଳ କରି ଗଢ଼ିତୋଳେ । ଦେଶର ସୁଖ ସମୃଦ୍ଧି ପାଇଁ ଶିକ୍ଷାର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ଯେତେବେଳେ ବିଶ୍ୱର ନାରୀ ସମାଜରେ ମହିଳା ସଶକ୍ତିକରଣ ଆନ୍ଦୋଳନରେ ନାରୀମାନେ ଭାଗନେବାରେ ଲାଗିଛନ୍ତି । ଶିକ୍ଷା ସେମାନଙ୍କୁ ଯେ ଏମିତି ଏକ ଆବଶ୍ୟକ ଓ ସହାୟପୂର୍ଣ୍ଣ ସମର୍ଥନ ଯୋଗାଇପାରିବ ଏଥିରେ କୌଣସି ସନ୍ଦେହ ନାହିଁ । ଦେଶର କୋଣ ଅନୁକୋଣରେ ଶିକ୍ଷା ଲାଭ କରିବା ପରି ମହତ୍ୱପୂର୍ଣ୍ଣ ଓ ମାନବିକ (ମୌଳିକ) ଅଧିକାରରୁ ସେମାନେ ବଞ୍ଚିତ ହେବା ଦେଶ ପକ୍ଷେ ଏକ ଶୁଭ ସୂଚନା ନୁହଁ । ତେଣୁ ବର୍ତ୍ତମାନ ପ୍ରଚଳିତ ସର୍ବଶିକ୍ଷା ଅଭିଯାନରେ ବାଳିକାମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଶିକ୍ଷିତ କରିବା ଏକ ପ୍ରଗତିଶୀଳ ରାଷ୍ଟ୍ରର ଆଭିମୁଖ୍ୟ ହେବା ଉଚିତ୍ । ଆପଣମାନେ ସମସ୍ତେ ଜାଣିଥିବେ ୧୯୮୬ରେ ଆମ ଦେଶରେ ଜାତୀୟ ଶିକ୍ଷା ପ୍ରଣାଳୀ (ନୀତି) National Policy of Education ରେ ସ୍ପଷ୍ଟଭାବେ ଉଲ୍ଲେଖ କରି ଦିଆଗଲା ଯେ 'Education will be used as an agent of basic charge in the status of woman. In order to neutralise the accumulated destortion of the past. There will be a well conceived edge in favour of woman'.

କେତେକ ସ୍ୱତନ୍ତ୍ର କାର୍ଯ୍ୟକ୍ରମର ବ୍ୟବସ୍ଥା ମାଧ୍ୟମରେ ବାଳିକାମାନଙ୍କୁ ଶିକ୍ଷିତ କରାଇ ମହିଳା ସଶକ୍ତିକରଣ କରିବା ଏକ ଉତ୍ତମ ପଦକ୍ଷେପ କୁହାଯାଇପାରେ । ନାରୀ ସାକ୍ଷରତା ୧୯୯୧ ମସିହା ବେଳକୁ ମୋଟ ଶତକଡା ୩୯.୨ ଥିଲା । ଏହା ୨୦୦୧ସୁଦ୍ଧା ଦଶବର୍ଷ ଭିତରେ ଶତକଡା ୫୩.୨୭ ପହଞ୍ଚିବାରେ ଲାଗିଲା । ପୁରୁଷମାନଙ୍କ କ୍ଷେତ୍ରରେ ଏହା ଶତକଡା ୧୧.୧୩ ଥିଲାବେଳେ ନିଶ୍ଚିତ ଭାବେ ନାରୀମାନଙ୍କୁ ତାଙ୍କର ସାକ୍ଷରତାରେ ଶତକଡା ୧୪.୩୯ରେ ପରିଣତ କଲା । ଶିକ୍ଷାରେ ଲିଙ୍ଗ ଭେଦଭାବ (ତାରତମ୍ୟ) ୧୯୯୧ରେ ଶତକଡା ୨୪.୮୪ ଥିବାବେଳେ ୨୦୦୧ରେ ତାହା ଶତକଡା ୨୧.୫୯ରେ ପହଞ୍ଚି ପାରିଛି । ବାଳିକାମାନେ ସ୍କୁଲରେ ନାମ ଲେଖାଇବା ୧୯୫୧ରେ ଶତକଡା ୧୬.୧ ଭାଗ ଥିଲା, ତାହା ୨୦୦୩–୨୦୦୪ରେ ଶତକଡା ୪୩.୯୦ରେ ପହଞ୍ଚିଯାଇଛି । ୧୯୬୦–୬୧ମସିହା ବେଳକୁ ବାଳିକାମାନେ ଶତକଡା ୭୦.୯ ସ୍କୁଲ ପାଠପଢ଼ା ଛାଡ଼ି ପରେ ରହିଯାଇଥିଲେ କିନ୍ତୁ ୨୦୦୨–୨୦୦୩ ବେଳକୁ ଏହା ଶତକଡା ୩୩.୭୨କୁ ଖସି ଆସିଲା । ବହୁ ଯତ୍ନ ସହକାରେ ଶିକ୍ଷା ବ୍ୟବସ୍ଥାକୁ ଉନ୍ନତି କରାଯିବା ପାଇଁ ଚେଷ୍ଟା କରାଗଲା । ବହୁ ସଂଖ୍ୟାରେ ବାଳିକାମାନେ ସ୍କୁଲମାନଙ୍କରେ ନାମ ଲେଖାଇବାର ବ୍ୟବସ୍ଥା ସରକାରଙ୍କ ଦ୍ୱାରା କରାଗଲା । ପ୍ରାଥମିକ ବିଦ୍ୟାଳୟ ସ୍ତରରେ ଏହା ୧୯୬୧ ବେଳକୁ ମୋଟେ ଶତକଡା ୨୮.୧ ନାମ ଲେଖାଇଲେ, ତାହା ୨୦୦୨–୨୦୦୩ ମସିହା ବେଳକୁ ଶତକଡା ୪୬.୯୩ରେ ପହଞ୍ଚିବାରେ ଲାଗିଲା । ସେହିପରି ଶିକ୍ଷକ ଶିକ୍ଷୟିତ୍ରୀଙ୍କ ନିଯୁକ୍ତି କ୍ଷେତ୍ରରେ ଏହା ୨୦୦୨–୨୦୦୩ ମସିହା ବେଳକୁ ପ୍ରତି ଶହେ ଜଣ ଶିକ୍ଷକ ନିଯୁକ୍ତି ବେଳେ ୬୪ଜଣ ଶିକ୍ଷୟିତ୍ରୀଙ୍କୁ ସୁଯୋଗ ଦିଆଗଲା । ତିନିବର୍ଷ ପରେ ଅର୍ଥାତ୍ ୧୯୮୯ରେ ମହିଳା ସଶକ୍ତିକରଣକୁ ଆଖି ଆଗରେ ରଖି ଶିକ୍ଷା ଓ ସଶକ୍ତିକରଣ ଉପରେ ଏକ ଉପଯୁକ୍ତ ସମନ୍ୱୟ ରକ୍ଷା କରିବା ପାଇଁ ଉକ୍ତ ଯୋଜନାକୁ କାର୍ଯ୍ୟକାରୀ କରାଗଲା । ଶିକ୍ଷା କ୍ଷେତ୍ରରେ ସ୍ୱତନ୍ତ୍ର ଭାବେ ବିଦ୍ୟାଳୟମାନଙ୍କରେ ବାଳିକାମାନଙ୍କ ନାମ ଲେଖାର

ଅଗ୍ରାଧିକାର ଦିଆଗଲା । ମହିଳାମାନଙ୍କୁ ସ୍ୱତନ୍ତ୍ର ଛାତ୍ରୀନିବାସ ଓ ସ୍କୁଲରେ ବୃତ୍ତିର ବ୍ୟବସ୍ଥା କରାଗଲା । ସମାଜରେ ମଧ୍ୟମ ସ୍ରୋତକୁ ଆଣିବା ପାଇଁ ସେମାନଙ୍କୁ ନେତୃତ୍ୱର ସୁଯୋଗ ଦେବାପାଇଁ ନାରୀ ସଶକ୍ତିକରଣ ଉପରେ ଧ୍ୟାନ ଦିଆଗଲା । ଶିକ୍ଷାରେ ବାଳିକାମାନଙ୍କ ନାମ ଲେଖାଇବା ଏବଂ ଅନ୍ୟାନ୍ୟ ସବୁ ଉପରେ ଗୁରୁତ୍ୱ ଦେବାରେ ଆରମ୍ଭ କରାଗଲା । ଶିକ୍ଷା ସଙ୍ଗେ ନାନା ପ୍ରକାର ସାମାଜିକ କାର୍ଯ୍ୟକ୍ରମରେ ଧ୍ୟାନ ଦିଆଗଲା । ଗ୍ରାମାଞ୍ଚଳମାନଙ୍କରେ ବାଳିକାମାନଙ୍କୁ ଅତି କମ୍ ବୟସରେ ବାଲ୍ୟ ବିବାହ ପରି କୁସଂସ୍କାର ପ୍ରଥାକୁ ବନ୍ଦ କରି ସେମାନଙ୍କ ବିବାହ ବୟସର ସୀମା ବଢାଇ ଦିଆଗଲା । ନାରୀମାନେ ସଚେତନ ହେବାକୁ ଲାଗିଲେ । ଆନ୍ଦୋଳନ ମାଧ୍ୟମରେ ବାଲ୍ୟ ବିବାହ ପ୍ରଥାରେ ସଂସ୍କାର ଅଣାଗଲା । ଉତ୍ତରପ୍ରଦେଶ, ଗୁଜରାଟ ପରି ରାଜ୍ୟମାନଙ୍କରେ ମହିଳା ଅଦାଲତମାନଙ୍କର ପ୍ରଚଳନ କରାଗଲା । ଏଥିରେ ମହିଳାମାନଙ୍କୁ ସ୍ୱତନ୍ତ୍ର ତାଲିମ ଦେଇ ବାଲ୍ୟ ବିବାହ ପରି ଅନ୍ୟାନ୍ୟ ସାମାଜିକ କୁସଂସ୍କାର ବିରୁଦ୍ଧରେ ଆଇନ କାନୁନ୍ ତାଲିମ ଯୋଗାଇ ଦିଆଗଲା । ଏହିସବୁ ଦ୍ୱାରା ମହିଳା ସଶକ୍ତିକରଣ ଆହୁରି ଅଧିକ ହେବାରେ ଲାଗିଲା । ଅନେକ ସାମାଜିକ ଚାଲିଚଳନରେ ସଚେତନ ସୃଷ୍ଟି କରାଗଲା । ବାଳିକାମାନଙ୍କୁ ବହୁ ସଂଖ୍ୟାରେ ବିଦ୍ୟାଳୟରେ ନାମ ଲେଖାଇ ନାରୀମାନଙ୍କୁ ଉପଯୁକ୍ତ ଶିକ୍ଷା ଯୋଗାଇ ଦେବା ଏବଂ ସମାଜରେ ସେମାନଙ୍କୁ ଉପଯୁକ୍ତ ସ୍ଥାନ ଦେବା ନିମନ୍ତେ ସମସ୍ତ ପଦକ୍ଷେପ ନିଆଗଲା । ୨୦୦୨–୨୦୦୭ ଦଶମ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକ୍ରମରେ ସର୍ବଶିକ୍ଷା ଅଭିଯାନ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଛି । (NPEGEL) ଯୋଜନା National Programme for Education of Girls at the Elementary Level) ୨୦୦୧–୨୦୦୨ ବେଳକୁ ସର୍ବଶିକ୍ଷା ଅଭିଯାନରେ ଏହା ଏକ ମୁଖ୍ୟ ଅଙ୍ଗ ହୋଇ ଶିକ୍ଷା ପ୍ରଣାଳୀରେ ସାମିଲ ହେବାକୁ ଲାଗିଲା । ଯୋଜନାର ମୁଖ୍ୟ ଉଦ୍ଦେଶ୍ୟ ହେଲା, ଯେଉଁ ବାଳିକାମାନେ ବର୍ତ୍ତମାନ ପର୍ଯ୍ୟନ୍ତ ବିଦ୍ୟାଳୟରେ ନାମ ଲେଖାଇ ନାହାନ୍ତି, ସ୍କୁଲରେ ନାମ ଲେଖାଇ ପାରୁନଥିବା ବାଳିକାମାନେ ଯେଉଁମାନେ ପାଠପଢା ଛାଡି ଘରେ ରହିଯାଇଛନ୍ତି, ବିଭିନ୍ନ ସ୍ଥାନରେ ଶ୍ରମିକ ଭାବେ କାମ କରୁଥିବା, ସମାଜରେ ଅବହେଳିତ ବର୍ଗ, ଯେଉଁମାନେ ଦାରିଦ୍ର୍ୟ ସୀମା ରେଖା ତଳେ ରହି ପାଠ ପଢାରୁ ବଞ୍ଚିତ, ସେହି ଝିଅମାନଙ୍କୁ ଶିକ୍ଷାର ସୁବିଧା ବଢାଇ ଦେଇପାରିଲେ ସେମାନଙ୍କ ମୌଳିକ ମାନବିକ ଅଧିକାରକୁ ରକ୍ଷା କରିବା ସହିତ ନାରୀ ସଶକ୍ତି କରଣରେ ସାମିଲ ହୋଇ ସମାଜରେ ଆଗେଇ ପାରିବେ ଓ ଆମ ଦେଶ ଭାରତ ଏକ ବିକାଶଶୀଳ ରାଷ୍ଟ୍ରରେ ପରିଣତ ହେବ ।

ଏନ୍– ୩/୩୨୩, ଆଇ.ଆର.ସି ଭିଲେଜ
ନୟାପଲ୍ଲୀ– ୭୫୧୦୧୫

❖ ❖ ❖

# ଐତିହ୍ୟ ସମ୍ପନ୍ନ ନଦୀ ଗନ୍ଧବତୀ

ସୁଶାନ୍ତ କୁମାର ସ୍ୱାଇଁ

ଏକାମ୍ରକ୍ଷେତ୍ର ଭୁବନେଶ୍ୱରର ସର୍ବପ୍ରାଚୀନ ନଦୀ ଗନ୍ଧବତୀ ସମ୍ଭବତଃ ନିଜର ନାମ ପରିବର୍ତ୍ତନ ପୂର୍ବକ 'ଗଙ୍ଗୁଆ' ଭାବରେ ଆଜି ହୋଇଛି ପରିଚିତ । ଗଙ୍ଗୁଆ ସମୟସ୍ରୋତରେ ଉତ୍ଥାନ-ପତନ ସହ ନିଜର ଗତିପଥ ଅନେକାଂଶରେ ପରିବର୍ତ୍ତନ କରିଥିଲେ ମଧ୍ୟ ଏହାର ଜଳଧାରା ଆଧୁନିକ ଭୁବନେଶ୍ୱରର ଏବେବି ଗଳାର ମୁକ୍ତାହାର ପରି ଶୋଭା ପାଉଛି । ଭୁବନେଶ୍ୱରର ଉତ୍ତର, ପୂର୍ବ ଓ ଦକ୍ଷିଣ ଦିଗକୁ ଘେରି ବହି ଯାଉଥିବା ଜଳସ୍ରୋତ ଭୁବନେଶ୍ୱର ଓ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ଗଙ୍ଗୁଆ ନଦୀଭାବେ ଅଭିହିତ । କେଶରୀ ବଂଶ, ଗଙ୍ଗ ବଂଶ ଓ ସୂର୍ଯ୍ୟବଂଶୀ ରାଜତ୍ୱ ସମୟରେ ରଚିତ ହୋଇଥିବା ଶୈବପୁରାଣ ମଧ୍ୟରେ ଏକାମ୍ର ପୁରାଣ, ଏକାମ୍ର ଚନ୍ଦ୍ରିକା, ସ୍ୱର୍ଣ୍ଣାଦ୍ରି ମହୋଦୟ, କପିଳ ସଂହିତା ଆଦିରେ ମହାନଦୀ, ପ୍ରାଚୀ ଗନ୍ଧବତୀ ନାମ ଉଲ୍ଲେଖ ଥିବାବେଳେ ଦୟା, ଭାର୍ଗବୀ ନଦୀର ନାମ ଉଲ୍ଲେଖ ନାହିଁ । ଦୟାନଦୀର ପ୍ରଧାନ ଉପନଦୀ ହେଉଛି ଗଙ୍ଗୁଆ ବା ଗନ୍ଧବତୀ । ଏହା ଅଲିଭା ସ୍ମୃତିର ଆଲୋଡନ ଭାବେ ଏବେବି ପ୍ରବାହିତ । ପୂର୍ବପରି ଆଜି ମଧ୍ୟ ଗନ୍ଧବତୀର ଜଳବେଣୀ ନଗରୀର ନିତମ୍ବରେ କାଞ୍ଚିପରି ବହି ଚାଲିଛି । ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା କବିବର ରାଧାନାଥ ରାୟ ତାଙ୍କ ଚିଲିକା କାବ୍ୟରେ ଭୁବନେଶ୍ୱରୀଙ୍କ କେଳି ଉପବନ ଏକାମ୍ରକାନନ ଦେଇ କିପରି ବହି ଚାଲିଛି ଗନ୍ଧବତୀ ସେ ବିଷୟରେ କହିଛନ୍ତି ।

ଭୁବନେଶ୍ୱରୀଙ୍କ କେଳି ଉପବନ
କିଶଳୟ-ତାମ୍ର-ଏକାମ୍ରକାନନ
ଦ୍ରୁମରାଜି ଛାୟା- ଅନ୍ଧାରେ ଯାହାର
ମୃଦ କଳନାଦେ ବହେ ସ୍ୱଚ୍ଛଧାର ।' ୫(୭)

ଗଙ୍ଗସମ୍ରାଟ ଅନଙ୍ଗଭୀମ ଦେବଙ୍କ କନ୍ୟା ତଥା ପ୍ରଥମ ନରସିଂହ ଦେବଙ୍କ ଭଗ୍ନୀ ପରମାବୈଷ୍ଣବୀ ଚନ୍ଦ୍ରାଦେବୀ ବା ଚନ୍ଦ୍ରିକାଦେବୀ ଖ୍ରୀ ୧୨୭୮ରେ ଅନନ୍ତବାସୁଦେବ ମନ୍ଦିର ନିର୍ମାଣ କରି ଏଥିରେ ଏକ ଶିଳାଲେଖ ଖୋଦିତ ପୂର୍ବକ ଗନ୍ଧବତୀ ବଦଳରେ 'ଗନ୍ଧସିନ୍ଧୁ' ବୋଲି ଉଲ୍ଲେଖ କରିଛନ୍ତି । ଉକ୍ତ ଶିଳାଲେଖର ୧୦ମ ଧାଡିର ମର୍ମହେଲା- ଗିରିଜାପତି ଶିବଙ୍କ ଦ୍ୱାରା ବାସସ୍ଥାନ ଏହି ପବିତ୍ର କ୍ଷେତ୍ର ନିକଟରେ ଗଙ୍ଗବଂଶ ଧର ଇନ୍ଦ୍ରପଦଜୟୀ ଚୋଡଗଙ୍ଗଦେବ (ଖ୍ରୀ: ୧୧୧୨-୧୧୪୬)ଙ୍କ ଦ୍ୱାରା ଖୋଦିତ ଦେବସବିତା ପୂତ ସଲିଳା 'ଗନ୍ଧସିନ୍ଧୁ' ନଦୀ ପ୍ରବାହିତ, ଲୋକାଚାର ମତରେ ଏହି ନଦୀ ଅତି ପ୍ରାଚୀନକାଳରେ ଦେବଦେବୀଙ୍କ ସ୍ନାନ ପାଇଁ ବ୍ୟବହୃତ ହେଉଥିଲା । ଏଥିରେ ଦେବଦେବୀମାନେ ଗୋପନରେ କେଳି କରୁଥିଲେ । ଦେବତାମାନେ ଏହି ନଦୀରେ ସ୍ନାନ କରୁଥିବାରୁ ଏହି ଜଳ ଥିଲା ସୁବାସିତ । ଏହି ଜଳର ସୁବାସ ଚାରିଆଡେ ଚହଟିବାରୁ ସାଧାରଣ ଲୋକମାନେ ଏଥିରେ ସ୍ନାନ କରିବାକୁ ଆସିଲେ । ଏହାଜାଣି ଦେବଦେବୀମାନେ ଏହି ନଦୀରେ ଆଉ ସ୍ନାନ କଲେ ନାହିଁ । ଲୋକମାନେ ଏହି ଜଳର ସୁବାସରେ ମୁଗ୍ଧ ହୋଇ ଏହାର ନାମ ଦେଲେ ଗନ୍ଧବତୀ । କିନ୍ତୁ ଗନ୍ଧବତୀ ଭାବରେ ନଦୀଟିର ନାମ ଦେବା ପରେ ଏହାର ସୁବାସ କୁଆଡେ ଚାଲିଗଲା । ତଥାପି ସେଇ ଦିନରୁ ଏହା 'ଗନ୍ଧବତୀ' ନାମ ଧାରଣ କରିଛି ।

'କଲୌ ଗନ୍ଧବତୀ ନାମ୍ନୀ କୃତେ ଭାଗୀରଥୀତି ଚ
ତ୍ରେତୟା ଜହ୍ନୁ ତନୟା ଦ୍ୱାପରେ ହରିପାଦକା'

(ସ୍ୱର୍ଣ୍ଣାଦ୍ରି ମହୋଦୟ)

ପବିତ୍ର ନଦୀ ଗଙ୍ଗା ସତ୍ୟରେ ଭାଗୀରଥୀ, ତ୍ରେତୟାରେ ଜାହ୍ନବୀ, ଦ୍ୱାପରରେ ବିଷ୍ଣୁପଦୀ ନାମରେ ପ୍ରବାହିତ ହୋଇ ମର୍ତ୍ତ୍ୟବାସୀଙ୍କର ଅଶେଷ କଲ୍ୟାଣ ସାଧନ କରିବା ସଦୃଶ କଳିଯୁଗରେ ଏକାମ୍ର କାନନରେ ଥିବା ଶତସହସ୍ର ଲିଙ୍ଗ ପରିବେଷ୍ଟିତ

ସ୍ୱର୍ଣ୍ଣାଚଳର ପାଦଦେଶରେ ଗନ୍ଧବତୀ ନାମରେ ପ୍ରବାହିତ ପୂର୍ବକ ଆଜି ପର୍ଯ୍ୟନ୍ତ ଏ ସ୍ଥାନର ଐତିହ୍ୟ ଓ ସଂସ୍କୃତିର ମୁଖସାକ୍ଷୀଭାବେ ସହାୟକ ହୋଇ ଆସିଛି । ଚନ୍ଦକା ଓ ପଟିଆ ଅଞ୍ଚଳର ସବୁଦିନିଆ ପାଣିଝର ହେଲା ଗଙ୍ଗୁଆ ନଦୀର ମୁଖ୍ୟ ଉତ୍ସ । କୁଜିମହଲ, କଣ୍ଟାବାଡ ଓ ବୁଆଳିଗଡ ପାହାଡିଆ ଅଞ୍ଚଳରୁ ଦୁଇଟି ଚିରସ୍ରୋତ ଧାର ପାର୍ବତ୍ୟ ଟାଙ୍ଗର ମଧଦେଇ ସମତଳ ପ୍ରଦେଶକୁ ବହି ଆସିଛି । ଗୋଟିଏ ଯୋର ଖଣ୍ଡଗିରି–ଚନ୍ଦକା ମଧଦେଇ ପ୍ରବାହିତ ହୋଇଛି । ଯାହାକୁ ବଡଯୋର ବା କାଠଶଙ୍ଖ ନଦୀ ଭାବରେ ନାମାଙ୍କିତ କରାଯାଏ । ଅନ୍ୟଟି ଚନ୍ଦକା ଛକର ବାରଙ୍ଗ ରାସ୍ତା ମଧରେ ଯାଇଛି ଏବଂ ଏହା ଭୂଆସୁଣୀ ମନ୍ଦିରର ଦକ୍ଷିଣପାର୍ଶ୍ୱ ଦେଇ ବୋହି ଯାଇଛି । ଯାହାକୁ ତଳଯୋର କୁହାଯାଏ । ବଡଯୋର ଓ ତଳଯୋର ଉଭୟ ଦାରୁଠେଙ୍ଗ ଓ ଶିଖରଚଣ୍ଡୀ ପାହାଡ ମଧରେ ଥିବା ଏକ ସମତଳ ଅଞ୍ଚଳରେ ମିଶିଛି । ଶିଖରଚଣ୍ଡୀ ପାଖରେ ଏହାକୁ ବଡନଈ କୁହାଯାଉଥିବା ବେଳେ ରଘୁରାଜପୁର ଗ୍ରାମ ପାଖରେ ପନ୍ଦରଫୁଙ୍ଖାର ନଈ ବା ବୁଡୁନଈ କୁହାଯାଏ । କଳାରାହାଙ୍ଗ ନିକଟସ୍ଥ ଗ୍ରାମବାସୀମାନେ ବଡନଈ କହୁଥିବା ବେଳେ ଜରିପାଟଣା ଓ ଇଂଜଣା ପାଖରେ ବୁଡିନଈ କୁହାଯାଉଛି । ଭୋଟପଡା ବୁଡିନଈ ଏବଂ ଗାଡକଣା ପାଖରେ ଗନ୍ଧବତୀ ବା ଗଙ୍ଗୁଆ । ହଂସପାଳଠାରେ ଟଙ୍କପାଣି, ବ୍ରହ୍ମେଶ୍ୱର, ସାମନ୍ତାପୁର, କପିଳେଶ୍ୱର, ସୁନ୍ଦରପଦା, ଗଙ୍ଗୁଆ କୁହା ଶ୍ରୀରାମନଗର ପ୍ରଭୃତି ସ୍ଥାନରେ ଗଙ୍ଗୁଆ ରୂପେ ଅଭିହିତ କରିଥାନ୍ତି । ଭୁବନେଶ୍ୱରର ପଳାଶୁଣୀ ପାଖରେ ପୁରୁଣା ଜଗନ୍ନାଥ ରୋଡ ଉପରେ ଏକ ଜୀର୍ଣ୍ଣ କୁନ୍ଦାପଥର ପୋଲ ଏବେବି ଦୃଷ୍ଟିଗୋଚର ହୁଏ । ଏହା ଗଙ୍ଗୁଆ ଧାର ଉପରେ ସୋମବଂଶୀ ବରାହକେଶରୀଙ୍କ ଅମଳରେ ନିର୍ମିତ । ଏଠାରୁ ପ୍ରାୟ ତିନି କିଲୋମିଟର ବ୍ୟାପ୍ତ ଅର୍ଥାତ୍ ପାଣ୍ଡରା ଶ୍ରୀଜଗନ୍ନାଥ ମନ୍ଦିରଠାରୁ ପ୍ରାୟତଃ ଏକ କିଲୋମିଟର ଦୂର ପର୍ଯ୍ୟନ୍ତ ଗଙ୍ଗୁଆର ନାମ କିମ୍ବୀରିଆ ନଦୀ କୁହାଯାଉଛି । ଲକ୍ଷ୍ମୀସାଗର–ଝାଡପଡା ଦେଇ କୋରଡକଣ୍ଟା ଗ୍ରାମକୁ ଗଲାବେଳକୁ ଏହି ନଦୀ ଦୃଷ୍ଟିଗୋଚରକୁ ଆସିଥାଏ । ଗଙ୍ଗୁଆ ନଦୀର ସଂକୀର୍ଣ୍ଣତା ଏଠାରେ ଅଧିକ ଜଣାପଡେ । ମୋଟ ଉପରେ କହିବାକୁ ଗଲେ ପଟିଆର ପାହାଡିଆ ସ୍ଥାନମାନଙ୍କରୁ ଆସୁଥିବା କେତେକଝର ଏକତ୍ରିତ ପୂର୍ବକ ପଟିଆ ଦହଲ ସୃଷ୍ଟି । ବେଦମତୀ, ମନ୍ଦାକିନୀ, ଗନ୍ଧବତୀ, ଛତୀ ପ୍ରଭୃତି ଜଳସ୍ରୋତଗୁଡିକ ଗଙ୍ଗୁଆରେ ମିଶିଛି । ପଟିଆ ଦହରୁ ଗୋଟିଏ ଜଳସ୍ରୋତ ପୂର୍ବଦିଗକୁ ବହିଯାଇ ଗାଡକଣାଠାରୁ ଗଙ୍ଗୁଆ ନାମରେ ଭୁବନେଶ୍ୱର ଅଞ୍ଚଳରେ ପ୍ରବେଶ କରିଛି । ପଟିଆକିଲା ପର୍ଯ୍ୟନ୍ତ ପରିବ୍ୟାପ୍ତ ବିନ୍ଧ୍ୟ ପର୍ବତର ପାଦଦେଶ । ତେଣୁ ପାହାଡି ନିକଟସ୍ଥ ସୁମଣ୍ଡିଆ ଟାଙ୍ଗରା ଅଞ୍ଚଳରୁ ଏକ ଜଳସ୍ରୋତ ରାମଗଡଠାରେ ଅନ୍ୟ ଏକ ଜଳସ୍ରୋତ ସହିତ ମିଶି ଗନ୍ଧବତୀ ନାମରେ ବହିଯାଇ କପାଳଲୋଚନ ପୀଠରେ ଭୁବନେଶ୍ୱର ସୀମାରେ ପହଞ୍ଚି କୁଆଖାଇରୁ ବାହାରିଥିବା ବୁଢାନଦୀ ଧାରରେ ମିଶି ଯାଇଥିବା ଦେଖାଯାଏ ।

୧୯୯୧/୯୨ ମସିହା ବନ୍ୟା ସମୟରେ ଗଙ୍ଗୁଆ ନଦୀରେ ପ୍ରବଳ ପାଣି ହେବାରୁ ଭୁବନେଶ୍ୱର ଉପକଣ୍ଠ ଜଳମଗ୍ନ ହୋଇ ବହୁ କ୍ଷୟକ୍ଷତି ସମ୍ଭାବନାକୁ ଏଡେଇବା ପାଇଁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ନିର୍ଦ୍ଦେଶରେ ଦୋମୁହାଁ ଠାରେ ଏକ ନୂତନ ବୁଢାନଈ ସୃଷ୍ଟି କରି ନିକଟସ୍ଥ ସାଇପନ ସହ ସଂଯୋଗ କରି କୁଆଖାଇକୁ ପାଣିଛାଡି ଦିଆଗଲା । ଆଜକୁ ମାତ୍ର ୧୫ବର୍ଷ ହେବ ବୁଢାନଈର ଜନ୍ମ । ଯଦି ବୁଢାନଈ ସେହି ସମୟରେ ସୃଷ୍ଟି ତାହାହେଲେ ବଡନଈ/ ବୁଡିନଈ/ ବୁଡିନଈ/ ବୁଡୁନଈ ଏବଂ ଗଙ୍ଗୁଆକୁ ଏକ ନଦୀ କୁହାଯାଇଥାନ୍ତା । ଶେଷରେ ଗଙ୍ଗୁଆ ଇତିହାସ ପ୍ରସିଦ୍ଧ ଶିଶୁପାଳ ଗଡକୁ ଦୁର୍ଭେଦ୍ୟ ଗଡଖାଇ ରୂପେ ଆବେଷ୍ଟନ କରି ସାଗର ଗାମିନୀ ହେବା ଅଭିପ୍ସାରେ ଅଗ୍ରଗାମୀ ହୋଇ କାକୁଡିଆ ଠାରେ ପୁଣ୍ୟତୋୟା ଦଧିଭଦ୍ରା ବା ଦୟାନଦୀରେ ଆତ୍ମ ବିସର୍ଜନ ପୂର୍ବକ ଚିଲିକା ସଙ୍ଗମଲାଭ କରିଛି । ଶିଶୁପାଳଗଡର ପଶ୍ଚିମପାର୍ଶ୍ୱ ଏବଂ ଦକ୍ଷିଣ ପଶ୍ଚିମ ପାର୍ଶ୍ୱ ଗଙ୍ଗୁଆନଦୀ ଗଡଖାଇ ରୂପେ ସାହାଯ୍ୟ କଲାବେଳେ ଉତ୍ତରପାର୍ଶ୍ୱ ବାଉରୀଯୋର ପୂର୍ବପାର୍ଶ୍ୱ ଓ ଦକ୍ଷିଣପାର୍ଶ୍ୱ ଡିମାଣିଶ୍ୱର ନାମବହନ ପୂର୍ବକ ବିଶାଳ ପୁଷ୍କରିଣୀ ଗଡଖାଇ ଭାବେ କାର୍ଯ୍ୟ ତୁଲାଉଥିଲା । ଉତ୍ତରପାର୍ଶ୍ୱ ବାଉରୀଯୋର ପଶ୍ଚିମାମୁଖୀ ହୋଇ ଗଙ୍ଗୁଆ ସହ ମିଶିଛି । ଏହି ବାଉରୀଯୋର ଯେଉଁଠାରେ ଗଙ୍ଗୁଆନଦୀ ସହ ମିଶିଛି ସେଠାରୁ ମାତ୍ର ପଚାଶ ମିଟର ଦୂରରେ ଶିଶୁପାଳଗଡର ରାଣୀଙ୍କ ସ୍ନାନଗାର ଅତୀତ ସ୍ମୃତିକୁ ଉଜ୍ଜୀବିତ ପୂର୍ବକ ଦଣ୍ଡାୟମାନ । ଅତୀତରେ ଶିଶୁପାଳଗଡର ପାଟରାଣୀ ବର୍ଷତମାମ୍ ନହେଲେ ମଧ ପବିତ୍ର ଦିନମାନଙ୍କରେ ପୁଣ୍ୟତୋୟା ଗନ୍ଧବତୀ ବା ଗଙ୍ଗୁଆ ନଦୀରେ ସ୍ନାନ କରୁଥିଲେ ।

ଖଣ୍ଡଗିରି ଅଞ୍ଚଳରେ ମାଙ୍କଡଝର ସ୍ରୋତ ବରମୁଣ୍ଡା ଓ ଗଣ୍ଡଗୁଣ୍ଡା ମୌଜା ଅନ୍ତର୍ଗତ ଚାଷ ଜମିରେ ପ୍ରବାହିତ ହୋଇ ଦକ୍ଷିଣ ଦିଗରେ ପୂର୍ବୋକ୍ତ ଗଙ୍ଗୁଆ ସହ ମିଶିଛି । ଖଣ୍ଡଗିରିର ପଶ୍ଚିମ ପାର୍ଶ୍ୱରେ ତଥା ଘାଟିକିଆ ଗ୍ରାମ ପାଖରେ ପ୍ରବାହିତ ପାହାଡିଆଝର ପାଞ୍ଚନମ୍ବର ଜାତୀୟ ରାଜପଥ ଦେଇ ଗଙ୍ଗୁଆରେ ମିଶିଛି । ପାଞ୍ଚଗାଁରେ ରଙ୍ଗିଆଭଙ୍ଗିଆ ଯୋଡ ଗଙ୍ଗୁଆ ସହିତ ମିଶିଛି ।

ଯାଗମରା ଓ ପୋଖରୀପୁଟରୁ ଏକ ଯୋର ଦକ୍ଷିଣକୁ ବୋହିଯାଇ ଗଙ୍ଗୁଆ ସହିତ ମିଳିତ ହୋଇଛି । ଖଣ୍ଡଗିରି ନିକଟରୁ ଆଉ ଗୋଟିଏ ଝର ଏକାମ୍ରକାନନ, ଜୟଦେବବିହାର, ବାଣୀବିହାର ମଧ୍ୟଦେଇ ଉତ୍ତରରେ ଗଙ୍ଗୁଆନଦୀ ସହ ସଂଯୋଜିତ ହୋଇଛି । ଅସୁରକିଆରୀ ଏବଂ ଟ୍ରେନ୍‌ଲାଇନ କଡ ପାଣିଝର କେଦାରଗୌରୀ ପୀଠର ଦକ୍ଷିଣପାର୍ଶ୍ୱ ଦେଇ ଦୁଇଶହ ତିନିନମ୍ବର ଜାତୀୟ ରାଜପଥ ଓ ଦୟା–ପୂର୍ବ କେନାଲ ତଳଦେଇ ବ୍ରହ୍ମେଶ୍ୱର ପାଟଣା ଅଞ୍ଚଳରେ ଗଙ୍ଗୁଆ ନଦୀ ସହ ମିଶ୍ରିତ ହୋଇଛି । ସେହିପରି ଖଣ୍ଡଗିରିଠାରୁ ଆଉ ଏକ ଜଳଧାର ବରମୁଣ୍ଡା ନିକୋପାର୍କ, ଶହୀଦନଗର ଓ ସତ୍ୟନଗର ମଧ୍ୟବର୍ତ୍ତୀ ଅଞ୍ଚଳରେ ପ୍ରବାହିତ ପୂର୍ବକ ୨୦୩ ନମ୍ବର ଜାତୀୟ ରାଜପଥ (କଟକ ରୋଡ୍) ଦେଇ ଚିନ୍ତାମଣିଶ୍ୱରର ପୂର୍ବଦିଗରେ ଗଙ୍ଗୁଆନଦୀ ସହ ମିଶି ଗଙ୍ଗୁଆ ଗର୍ଭକୁ ପାଣି ଯୋଗାଉଛି ।

ଏହି ଏକାମ୍ରବନ ପ୍ରଦେଶ, ଲବଣ ସମୁଦ୍ର ନିକଟରେ ଅବସ୍ଥିତ ବୋଲି ସ୍ୱର୍ଣ୍ଣାଦ୍ରିମହୋଦୟରେ ବର୍ଣ୍ଣିତ । ନଦୀ, ଗିରି, ବୃକ୍ଷଲତା ପରିବେଷ୍ଟିତ ହୋଇ ଅତ୍ୟନ୍ତ ପବିତ୍ର ଓ ରମଣୀୟ କ୍ଷେତ୍ର ହୋଇପାରିଥିଲା । ଏହି କ୍ଷେତ୍ରକୁ ପବିତ୍ର ଗନ୍ଧବତୀନଦୀ ପ୍ଲାବନ କରୁଥିଲା । ଏଣୁ ପୁଣ୍ୟା ଗନ୍ଧବତୀ ନଦୀରେ ସ୍ନାନପୂର୍ବକ ଏହି ନଦୀର ଉଭୟ ପାର୍ଶ୍ୱରେ ବିଦ୍ୟମାନ ଶିବଲିଙ୍ଗଗୁଡ଼ିକୁ ଦର୍ଶନ କରିବାର ବିଧି ପଚଳିତ ଥିଲା ।

ଗଙ୍ଗୁଆନଦୀର ଏକ ବିଶେଷତ୍ୱ ହେଉଛି ଏଥିରେ ଅନେକ ପ୍ରାଚୀନ ଓ ଆଧୁନିକ ଯୁଗ ନିର୍ମିତ ପୋଲଗୁଡ଼ିକ ଦୃଷ୍ଟିଗୋଚର ହୋଇଥାଏ । ପରିଦୃଷ୍ଟମାନ ପୋଲ ମଧ୍ୟରୁ କଳାରାହାଙ୍ଗ ନିକଟସ୍ଥ ଅଠରନଳା ପୋଲ ଏବଂ ହଂସପାଳ ନିକଟସ୍ଥ ଚଉଦନଳା ପୋଲ ପୁରୀର ଅଠରନଳା ପୋଲ ସହିତ ଅନେକ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ମାଦଳା ପାଞ୍ଜିରୁ ଜଣାଯାଏ ଗଙ୍ଗୁଆ ନଦୀର ଅଠରନଳା ବରାହ କେଶରୀ ବସାଇ ଥିଲେ ।

**ଉପାଦାନର ଉତ୍ସ ଓ ବ୍ୟକ୍ତିବିଶେଷ:**


୧) ଡକ୍ଟର ସାହୁ ଲାବଣ୍ୟଚନ୍ଦ୍ର: ଶ୍ରୀ ବ୍ରହ୍ମେଶ୍ୱର କଳ୍ପତରୁ: ନଦୀ ଗନ୍ଧବତୀ

୨) ତ୍ରିପାଠୀ ପ୍ରଫୁଲ୍ଲଚନ୍ଦ୍ର ! ତୋଷାଳୀ, ଏକାମ୍ରକ୍ଷେତ୍ର, ପ୍ରଥମ ସ୍ତବକ, ପ୍ରଥମ ପ୍ରକାଶନ, ପୃଷ୍ଠା ୧୫୩ରୁ ୧୫୫ ।

୩) ସାହୁ ପଙ୍କଜ, ଗନ୍ଧବତୀ ନଦୀତଟରେ ବିରାଜିତ ଦେବଦେବୀ, ସମାରୋହ: ୨୦୦୩, ପୃଷ୍ଠା– ୧୬ରୁ ୧୭

୪) ରଘୁପୁର ଗ୍ରାମବାସୀ ଇଂଜଣା ଗ୍ରାମବାସୀ, ଭୋଟପଡା ଗ୍ରାମବାସୀ ।

୫) ଭୁବନେଶ୍ୱର ଅଭିଲେଖ: ଚନ୍ଦ୍ରାଦେବୀ ଶିଳାଲେଖ, ଶକାବ୍ଦ ୧୨୦୦ ବା ୧୨୭୮ଖ୍ରୀ ପୃଷ୍ଠା– ୫୨– ପ୍ରକାଶନ କେଦାରନାଥ ଗବେଷଣା ପ୍ରତିଷ୍ଠାନ– ଭୁବନେଶ୍ୱର ।

୬) ମହାପାତ୍ର ସିଦ୍ଧେଶ୍ୱର– ପୁରୀବୋଲି– ଦ୍ୱିତୀୟ ସଂସ୍କରଣ– ୨୦୦୬– ଓଡ଼ିଶା ସାହିତ୍ୟ ଏକାଡେମୀ

୭) Heritage Trail & City map Bhubaneswar, old town Heritage walks 1 & 2

୮) ଏକାମ୍ରଙ୍କ ନାମ ଦକ୍ଷିଣତୋଅଧ୍ୟୁଧି ସନ୍ନିଧୌ ସ୍ୱର୍ଣ୍ଣକୂଟେ ଗିରିପୃଷ୍ଟେ ଲବଣୋଦଧି ସନ୍ନିଧୌ (ସ୍ୱର୍ଣ୍ଣାଦ୍ରିମହୋଦୟ– ୧୫ଶ ଅଧ୍ୟାୟ)

୯) ଏକାମ୍ରପୁରାଣ ୧୪/୨ ଅଧ୍ୟାୟ

୧୦) ମାଦଳାପାଞ୍ଜି: ସଂ– ମୃତ୍ୟୁଞ୍ଜୟ ନାୟକ ଦ୍ୱିତୀୟ ସଂସ୍କରଣ– ୧୯୯୭– ଫ୍ରେଣ୍ଡସ୍ ପବ୍ଲିଶର୍ସ ।



ଗୌରୀନଗର
ପ୍ଲଟ ନଂ–୪୫୮୬
ପୁରୁଣା ଭୁବନେଶ୍ୱର–୭୫୧୦୦୨


❖ ❖ ❖

# ଉଚ୍ଚ ରକ୍ତଚାପ ଓ ତା'ର ନିରାକରଣ

ଡାକ୍ତର ତ୍ରୈଲୋକ୍ୟନାଥ ମହାରଣା

ସାମ୍ପ୍ରତିକ ସମାଜରେ ମନୁଷ୍ୟ ନିଜର ଦୈନିକ କାର୍ଯ୍ୟକଳାପ ସଠିକ୍ ରୂପେ ପରିଚାଳନା ନକରି ଅପ୍ରାକୃତିକ ଦିନଚର୍ଯ୍ୟା, ରାତିଚର୍ଯ୍ୟା ପାଳନ ପୂର୍ବକ ଅନେକ ଶାରୀରିକ ଓ ମାନସିକ ରୋଗରେ ନିରନ୍ତର ଗ୍ରାସିତ ହୋଇ ରହୁଛି । ଏପରି ଏକ ରୋଗ ଉଚ୍ଚ ରକ୍ତଚାପ । ଯାହାକୁ ହାଇପର ଟେନ୍‌ସନ୍ ନାମରେ ଜଣାଯାଇଥାଏ । ଅଧୁନା ସମାଜରେ ଏ ରୋଗକୁ ନିରବ ହତ୍ୟାକାରୀ ବୋଲି କୁହାଯାଏ । ପୃଥିବୀରେ ଲକ୍ଷ ଲକ୍ଷ ଜନତା ହୃଦ୍‌ରୋଗ ଓ ତଦ୍‌ଜନିତ ରକ୍ତଚାପ ରୋଗରେ କବଳିତ । ୟୁରୋପ, ଉତ୍ତର ଆମେରିକା, ଜାପାନ ଆଦି ଦେଶମାନଙ୍କରେ ଏ ରୋଗୀଙ୍କ ମୃତ୍ୟୁହାର କମି ଆସିଥିବା ବେଳେ ଭାରତ, ମେକ୍ସିକୋ ଆଦି ଦେଶମାନଙ୍କରେ ଏ ରୋଗ ବଢି ବଢି ଚାଲିଛି । ମୃତ୍ୟୁସଂଖ୍ୟା ମଧ୍ୟ ବଢୁଛି । ଅଧୁନା ଶତକଡା ୪୦ ଭାଗ ଲୋକ ପୃଥଳକାୟ ଶରୀର ଏବଂ ରକ୍ତରେ କୋଲେଷ୍ଟରୋଲ ଆଧିକ୍ୟ, ଆଳସ୍ୟପ୍ରବଣତା ଏବଂ ଅତ୍ୟଧିକ ଧୂମପାନ, ତମାଖୁ ସେବନ ଜନିତ କାରଣରୁ ହୃଦ୍‌ରୋଗ ଓ ତଦ୍‌ଜନିତ ଉଚ୍ଚ ରକ୍ତଚାପରେ ଆକ୍ରାନ୍ତ ବୋଲି ଆନ୍ତର୍ଜାତିକ ସ୍ୱାସ୍ଥ୍ୟ ରିପୋର୍ଟରୁ ଜଣାଯାଏ । ଆମ ଭାରତରେ ପ୍ରାୟତଃ ଜନତା ଏ ରୋଗରୁ ସୁରକ୍ଷିତ ନହେବାର କାରଣ ନିଜର ଅଜ୍ଞତା ଓ ବିନା ପରାମର୍ଶହୀନ ବିଷାକ୍ତ ଉତ୍ତେଜନାକାରୀ ହୃଦ୍‌ରୋଗ ଔଷଧ ସେବନ ସହ କ୍ୱାକ୍‌ମାନଙ୍କ ଦ୍ୱାରା ନିଜକୁ ଚିକିତ୍ସା କରି ରୋଗକୁ ବୃଦ୍ଧି ପୂର୍ବକ ନିଜକୁ ମୃତ୍ୟୁମୁଖକୁ ଟାଣି ନେଇଥାନ୍ତି । ଆମ ଦେଶର ଅର୍ଦ୍ଧାଧିକ ଜନତା ଏ ରୋଗ ଉତ୍ପତ୍ତିର ପ୍ରକୃତ କାରଣ ଓ ନିବୃତ୍ତି ମାର୍ଗ ଆଚରଣ ପୂର୍ବକ ଆହାର, ବିହାର, ବ୍ୟସନ ଉପରେ କେହି ଗୁରୁତ୍ୱ ଦେଉନାହାନ୍ତି । ସମସ୍ତେ ଏକ ପ୍ରବୃତ୍ତି ମାର୍ଗ ଦେଇ ଗତି କରିବା କାରଣରୁ କ୍ରମାଗତଭାବେ ଏ ରୋଗ ନିଜର ଆସୁରିକ କ୍ରିୟା ବିସ୍ତାର କରିଚାଲିଛି । ରୋଗର ମୂଳ ଉତ୍ପାଟନ କରିବାକୁ ହେଲେ ଏ ରୋଗ ସମୂହ ହୃଦୟ ଏବଂ ରକ୍ତ ବାହିନୀ ସମ୍ବନ୍ଧୀୟ ହୋଇଥିବାରୁ ପ୍ରଥମେ ସେମାନଙ୍କ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଆହରଣ ପରେ ଏ ରୋଗର କାରଣ, ପ୍ରତିରୋଧ୍ୟ ମାର୍ଗାଦି ଉପରେ ଅଧିକ ଧ୍ୟାନ ଦେବା ନିତାନ୍ତ ଆବଶ୍ୟକ ।

**ହୃଦୟ:** ୧) ହୃ–ହରତି ବା ଜଠରାଗ୍ନି ଦ୍ୱାରା ପାଚିତ ଆହରଣ ଓ ସମ୍ପୂର୍ଣ୍ଣ ଶରୀରର ବ୍ୟାପ୍ତ ଅଶୁଦ୍ଧ ରକ୍ତକୁ ଆହରଣ କରିବା ଅର୍ଥାତ୍ ଶିରାରେ ରକ୍ତ ଗ୍ରହଣ କରିବା, ୨) ଦ–ଦଦାତି–ଧମନୀ ଦ୍ୱାରା ରକ୍ତକୁ ସର୍ବ ଶରୀରରେ ପ୍ରେରଣ କରିବା, ୩) ୟ– ୟଚ୍ଛତି/ଗଚ୍ଛତି–ଗତି କରିବା–ନିରନ୍ତର ସଂକୋଚ ପ୍ରସାର ।

**କାର୍ଯ୍ୟଚକ୍ର:** ହୃଦ୍‌ପେଶୀର ସଂକୋଚ ଶିରାମାନଙ୍କ ଦ୍ୱାରା ପ୍ରଥମେ ଆରମ୍ଭ ହୋଇ କ୍ରମଶଃ ଅଳିନ୍ଦ ଓ ପରେ ନିଳୟରେ ପ୍ରବୃତ୍ତ ହୋଇଥାଏ । ପ୍ରଥମେ ଅଳିନ୍ଦର ସଂକୋଚ ସଙ୍ଗରେ ଦକ୍ଷିଣାଳିନ୍ଦରେ ସ୍ଥିତ କାୟିକ ଶିରାରକ୍ତ ବାମ ନିଳୟରେ ଏକ ସଙ୍ଗରେ ପଡିଥାଏ । ଏ ପ୍ରକାରେ ଦୁଇ ନିଳୟ ରକ୍ତରେ ପୂର୍ଣ୍ଣ ହୁଏ । ଏହା ପ୍ରଥମ କାର୍ଯ୍ୟ ଥାଏ । ପରେ କ୍ରମଶଃ ଦୁଇ ନିଳୟରେ ସଂକୋଚ ଦ୍ୱାରା ଦକ୍ଷିଣ ନିଳୟରେ ସ୍ଥିତି ରକ୍ତ ଫୁସ୍‌ଫୁସ୍ ଭିଗା ଧମନୀର ମାର୍ଗରେ ଏବଂ ବାମ ନିଳୟରେ ସ୍ଥିତ ରକ୍ତ ମହାଧମନୀର ମାର୍ଗରେ ଆସି ପତିତ ହୋଇଥାନ୍ତି । ଏହା ଦ୍ୱିତୀୟ କାର୍ଯ୍ୟ । କ୍ରମଶଃ ସଂକୋଚ ସମାପ୍ତ ହେବା ପରେ ଦୁଇ ଅଳିନ୍ଦରେ ହୃତ୍‌ପେଶୀର ବିସ୍ଫୋରଣ ପ୍ରାରମ୍ଭ ହୋଇଥାଏ । ସେସମୟରେ ଦୁଇ ଅଳିନ୍ଦରେ ଏବଂ ସେଠାରୁ ଦୁଇ ନିଳୟରେ ମଧ୍ୟ ବିସ୍ଫୋରଣ ହେବା ଦ୍ୱାରା ଶିରା ରକ୍ତକୁ ଟାଣିଥାଏ, ଏହା ତୃତୀୟ କାର୍ଯ୍ୟ । ଏହାକୁ ହୃତ୍‌ପେଶୀର ବିଶ୍ରାମାବସ୍ଥା କୁହାଯାଏ । ପ୍ରଥମ ଦୁଇକାର୍ଯ୍ୟ ହୃଦୟର ସଂକୁଚିତାବସ୍ଥା ଏବଂ ତୃତୀୟରେ ବିସ୍ଫାରିତ ଅବସ୍ଥା । ଏଥିରେ ସଂକୋଚ କାଳ କେବଳ ଅଠେଇଶ ସେକେଣ୍ଡ ମାତ୍ର ଏବଂ ବିସ୍ଫୋରଣ କାଳ ମଧ୍ୟ । ଅତଃ ହୃଦୟର ପ୍ରତ୍ୟେକ କାର୍ଯ୍ୟଚକ୍ର ପାଞ୍ଚ ସେକେଣ୍ଡରେ ପ୍ରବୃତ୍ତ ହୋଇଥାଏ । ହୃଦୟର ଉପରୋକ୍ତ କାର୍ଯ୍ୟଚକ୍ରରେ କୌଣସି ପ୍ରକାରର କ୍ରିୟାମୂଳ ବିପରୀତତା ଆସିବା

ଦ୍ୱାରା ଶରୀରସ୍ଥିତ ରକ୍ତବହ ସଂସ୍ଥାନରେ ସମ୍ବନ୍ଧୀୟ ଅବୟବ ନିଜର ଆବଶ୍ୟକତାର ଅନୁରୂପ ରକ୍ତ ଗ୍ରହଣ କରିପାରି ନଥାଏ । ଏଣୁ ଏହି ଅବୟବ ରଚନାତ୍ମକ ଏବଂ କ୍ରିୟାତ୍ମକ ରୂପରେ କ୍ଷୟକୁ ପ୍ରାପ୍ତ ହୋଇଥାଏ । ସ୍ୱୟଂ ହୃଦୟରେ ଅଥବା କୌଣସି ଅନ୍ୟ ଅବୟବ ଯଥା ଫୁସ୍‌ଫୁସ୍, ବୃକକ୍, ମସ୍ତିଷ୍କ ଅଥବା ସେଥିରୁ ବାହାରିଥିବା ଧମନୀମାନଙ୍କରେ କୌଣସି ପ୍ରକାର ରଚନାତ୍ମକ ବା କ୍ରିୟାତ୍ମକ ବିକୃତିର ପରିଣାମସ୍ୱରୂପ ରକ୍ତଚାପ ବଢିଥାଏ, ଯାହା କାଳାନ୍ତରରେ ସ୍ୱତନ୍ତ୍ର ବ୍ୟାଧି ପରିଚିତ ଥାଏ ।

**ଉଚ୍ଚ ରକ୍ତଚାପର କାରଣ:** ଜଣେ ସୁସ୍ଥ ବ୍ୟକ୍ତିଠାରେ ସଂକୋଚ କାଳୀନ ରକ୍ତ ଭାର ୧୨୦ ଏବଂ ପ୍ରସାରକାଳୀନ ରକ୍ତଭାର ୮୦ଥାଏ । କିନ୍ତୁ ଧମନୀ ଅଥବା ରକ୍ତବାହ ସଂସ୍ଥାନରେ କୌଣସି ପ୍ରକାର ଅସ୍ୱାଭାବିକତା ଉତ୍ପନ୍ନ ଦ୍ୱାରା ସଂକୋଚକାଳୀନ ରକ୍ତଭାର ବଢିଯାଏ । ରକ୍ତବାହ ସଂସ୍ଥାନଗତ ବ୍ୟାଧିର ପ୍ରମୁଖ କାରଣ ମାନସିକ ଏବଂ ଶାରୀରିକ ଶ୍ରମର ଅଧିକତ୍ୱ ଦ୍ୱାରା ଆବାସର ସ୍ଥିତି ଉତ୍ପନ୍ନ ହୋଇଥାଏ । ଯାହାକୁ ସୋଇକୋ ସୋମେଟିକ୍ କୁହାଯାଏ । ଗ୍ରୀକ୍ ଭାଷାରେ ଦୁଇଟି ଶବ୍ଦ ସାଇକୋ ଏବଂ ସୋମା କାଡାର ଅର୍ଥ ମସ୍ତିଷ୍କ ଏବଂ ଶରୀର ଉପରୋକ୍ତ ମାନସିକ ଏବଂ ଶାରୀରିକ ଦ୍ୱନ୍ଦ୍ୱର ୩ଟି ପ୍ରମୁଖ କାରଣ ଥାଏ ।

୧) (କ) ମାନସିକ ଦୁର୍ବଳତା– ବା ଆତ୍ମବିଶ୍ୱାସର କମତ୍ୱ, ଏହା ଭୟ, ଚିନ୍ତା, ବିଚାର, ମାନସିକ ବ୍ୟଗ୍ରତା ଆଦି କାରଣରୁ ଉତ୍ପନ୍ନ ହୋଇଥାଏ ।

ଖ) କ୍ରୋଧ, ଗ) ଈର୍ଷା, ଘ) ନିରାଶା, ଙ) ଅବସାଦ ।

୨) କିଛି ବ୍ୟାଧି ନିଜର ଲକ୍ଷଣର ରୂପରେ ଅଥବା ନିଦାନାର୍ଥ କର ହେତୁର ରୂପରେ ରକ୍ତଭାରକୁ ବୃଦ୍ଧି କରେ ଯଥା:

କ) ବୃକକ୍‌ର ବିକୃତି, ଖ) ଧମନୀ ବିକୃତି, ଗ) ଅନ୍ତଃସ୍ରାବି ଗ୍ରନ୍ଥି ବିକୃତି, ଘ) ଅଭିଘାତ କାରଣରୁ, ଙ) ସ୍ଥୂଳତ୍ୱ ଶରୀର ।

୩) କିଛି ବ୍ୟକ୍ତିଙ୍କ ଜନ୍ମଜାତ ହୃଦୟରେ ଅଥବା ଏହା ଧମନୀର ରଚନାତ୍ମକ ଅଥବା କ୍ରିୟାତ୍ମକ ବିକୃତି ହୋଇଥାଏ ।

୪) ବଂଶାନୁଗତ

୫) ବୟସାନୁସାରେ ୪୦ ବର୍ଷରୁ ଅଧିକ ଥିବା ବ୍ୟକ୍ତିଙ୍କୁ ଏ ରୋଗ ହୋଇଥାଏ ।

ଏତଦ୍ ବ୍ୟତୀତ ଅଧିକ ଚର୍ବିଯୁକ୍ତ ଖାଦ୍ୟ, ଅଧିକ ପ୍ରୋଟିନ୍‌ଯୁକ୍ତ ଖାଦ୍ୟ, ମିଠା, ଭାତ, ଆଳୁ, ମଦ୍ୟ, ତମାଖୁ, ଧୂମ୍ରପାନ ଓ ନିଶାସେବନ କରୁଥିବା ବ୍ୟକ୍ତି ଶୀଘ୍ର ଏ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଅଳସୁଆ ପ୍ରକୃତି ତଥା କାର୍ଯ୍ୟ କରୁନଥିବା ମହାଜନ, ଅଫିସ୍ କର୍ମଚାରୀ ମଧ୍ୟ ଶୀଘ୍ର ଏ ରୋଗରେ ଆକ୍ରାନ୍ତ ହୋଇଥାନ୍ତି । ଆମ ଶରୀରରେ ପ୍ରୋଟିନ୍ କ୍ଷୟ ଅଂଶ ପୂରଣ କରିଥାଏ ଏବଂ ଅଧିକ ପରିମାଣରେ ପ୍ରୋଟିନ୍‌ଯୁକ୍ତ ଆହାର ନେବା ଦ୍ୱାରା ବିଶେଷ କରି ୪୦ ବର୍ଷ ଟପିବା ପରେ ଆଳସ୍ୟ ପ୍ରକୃତିର ବ୍ୟକ୍ତିଙ୍କଠାରୁ ପ୍ରୋଟିନ୍ ଅଂଶ କମ୍ ହୋଇ ରହେ । ଯାହାକୁ ରଖିବା ପାଇଁ ଆମ ଶରୀରରେ କୌଣସି ନିର୍ଦ୍ଦିଷ୍ଟ ପ୍ରଣାଳୀ ନଥାଏ । ଏହାଦ୍ୱାରା ଶରୀରସ୍ଥ ଗ୍ରନ୍ଥି ସଂସ୍ଥାନ ଓ ପାକସ୍ଥଳୀ ଆଦି ପାକଯନ୍ତ୍ର ପୂର୍ଣ୍ଣ ଭାବରେ ସକ୍ରିୟ ହୋଇ ମଧ୍ୟ ହଜମ କରିପାରି ନଥାନ୍ତି । ଫଳତଃ ପ୍ରୋଟିନ୍ ପଚି ବିଷାକ୍ତ ପଦାର୍ଥ ସମୂହକୁ ଶରୀରସ୍ଥ ବାୟୁ ସର୍ବାଙ୍ଗ ଶରୀରକୁ ପ୍ରେରଣ କରେ । ଫଳତଃ ଆମ ଶରୀରର ରକ୍ତବହ ସଂସ୍ଥାନ ଏହାଦ୍ୱାରା ରୁଗ୍‌ଣ ହୁଏ । ଶରୀରକୁ ବିଶୁଦ୍ଧ କରୁଥିବା ଯନ୍ତ୍ର ସମୂହ ଯଥା– ଫୁସ୍‌ଫୁସ୍, ବୃକକ୍, ହୃଦୟଯନ୍ତ୍ରାଦିମାନେ ଏପରି ବିଷାକ୍ତ ବସ୍ତୁ ଦ୍ୱାରା ରୁଗ୍‌ଣ ହେବା ଦ୍ୱାରା କାର୍ଯ୍ୟକ୍ଷମ ହୋଇପାରି ନଥାନ୍ତି । ଶରୀରସ୍ଥ ସ୍ରୋତବହ ସଂସ୍ଥାନ ନିଜର ସ୍ଥିତି ସ୍ଥାପକତ୍ୱ ହରାଇ କଠିନତା ଗୁଣ ପ୍ରକାଶ କରିଥାନ୍ତି । ଯଦ୍ଦ୍ୱାରା ରକ୍ତ ତା'ର ସ୍ୱାଭାବିକ ଗତିରେ ସଂଚାଳିତ ହୋଇପାରି ନଥାଏ । ଫଳତଃ ହୃଦ୍‌ଯନ୍ତ୍ର ଅଧିକ ସକ୍ରିୟ ଭୂମିକା ନେଇ ରକ୍ତକୁ ଠେଲିଥାଏ । ହୃଦ୍‌ଯନ୍ତ୍ରର ଅଧିକ ସକ୍ରିୟତା ଅସ୍ୱାଭାବିକ ହୃତ୍‌ପିଣ୍ଡ ସ୍ପନ୍ଦନ ପରିଶେଷରେ ଉଚ୍ଚ ରକ୍ତଚାପର କାରଣ ହୋଇଥାଏ । ରକ୍ତରେ କୋଲେଷ୍ଟୋରୋଲର ପରିଣାମ ବୃଦ୍ଧି ଦ୍ୱାରା ଧମନୀଗୁଡିକରୁ ପ୍ରାଚୀରରେ ଜମି ରକ୍ତ ପ୍ରବାହ ପଥ ସଂକୁଚିତ ହୋଇ ହୃଦ୍‌ରୋଗ ଓ ତତ୍‌ଜନିତ ଉଚ୍ଚ ରକ୍ତଚାପ ମଧ୍ୟ ବୃଦ୍ଧି ପାଇଥାଏ ।

ଏହା ସହିତ ଅନ୍ୟାନ୍ୟ ବହୁ କାରଣ ଏ ରୋଗକୁ ସୃଷ୍ଟି କରି ବସେ । ଅଧିକ କାମ, କ୍ରୋଧ ଉଦ୍ରେକ, ଭୟ ଆଦି ମାନସିକ ଭାବରେ ବୃଦ୍ଧି ଦ୍ୱାରା ଉପ ବୃକକ୍ ଗ୍ରନ୍ଥି ଉତ୍ତେଜିତ ହୋଇ ଅଧିକ ମାତ୍ରାରେ ନିଜର ସ୍ରାବକୁ ସ୍ରବିତ କରେ । ଫଳତଃ ଉକ୍ତ ବାହିନୀରେ ସଂକୋଚ, ଉତ୍ପନ୍ନ କରିବା ଏ ସ୍ରାବର ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ ଥାଏ । ଏ ପ୍ରକାର ସ୍ରାବରେ ଏଡ୍ରିନାଲିନ୍ ଏବଂ ନନ୍ ଏଡ୍ରିନାଲିନ୍ ନାମକ ଦୁଇଟି ଦ୍ରବ୍ୟ ମୁଖ୍ୟ ଭୂମିକା ନେଇଥାନ୍ତି । ନନ୍ ଏଡ୍ରିନାଲିନ୍ ପରିସରୀୟ ପ୍ରତିରୋଧ ଉତ୍ପନ୍ନ ପାଇଁ ଉତ୍ତରଦାୟୀ ଥାଏ । ରକ୍ତଚାପ ରୋଗୀମାନଙ୍କଠାରେ ଏ ସ୍ରାବ ଅଧିକ ବଢିଯାଏ । ଅଧିକ ଚିନ୍ତାଗ୍ରସ୍ତ ବ୍ୟକ୍ତିମାନଙ୍କଠାରେ ନନ୍ ଏଡ୍ରିନାଲିନ୍ ନିରନ୍ତର ସ୍ରାବିତ ଦ୍ୱାରା ରକ୍ତବାହିନୀ ସଂକୋଚ ହୋଇ ଉଚ୍ଚ ରକ୍ତଚାପ ସୃଷ୍ଟି ହୁଏ । ବୃକକ୍ ମଧ୍ୟରେ ରେନିନ୍ ନାମକ ଏକ ହରମୋନ ଥାଏ, ଯିଏ ରକ୍ତ ଘଟକ ଉପରେ କାର୍ଯ୍ୟ କରି ଉଚ୍ଚ ରକ୍ତଚାପକୁ ସୃଷ୍ଟି କରିଥାଏ । ଅଧିକ ଚର୍ବିଯୁକ୍ତ ଖାଦ୍ୟ, ଗରିଷ୍ଠ ତାମସିକ୍ ଖାଦ୍ୟ ଦ୍ୱାରା ଏ ପ୍ରକାର କ୍ରିୟା ଉତ୍ପନ୍ନ ହୁଏ ।

**ରୋଗର ଲକ୍ଷଣ:** ଏ ପ୍ରକାର ରୋଗରେ ଶରୀରର ଭାବ ତଥା ମାନସିକ ଭାବ ସମ୍ପୂର୍ଣ୍ଣଭାବେ ରୋଗାକ୍ରାନ୍ତ ହୋଇପଡେ । ରକ୍ତବହ ସଂସ୍ଥାନ, ଶ୍ୱସନ ସଂସ୍ଥାନ, ମୂତ୍ରବହ ସଂସ୍ଥାନ,

ପାଚନ ସଂସ୍ଥାନ ଆଦି ପୂର୍ଣ୍ଣ କାର୍ଯ୍ୟକ୍ଷମ ହୋଇ ପାରିନଥାଏ । ଯଦ୍ଦ୍ୱାରା ରୋଗୀର ବିବିଧ ଲକ୍ଷଣ ପ୍ରକାଶ ପାଏ । ହୃଦ୍‌ସ୍ପନ୍ଦନ ବଢ଼ିଯିବା, ହୃଦ୍‌ଶୂଳ, ରକ୍ତଭାର ବଢ଼ିଯିବା, ଧମନୀ କାଠିନ୍ୟ, ତୀବ୍ର ବା ନିଳୟ କାର୍ଯ୍ୟାବରୋଧ, ସଂକୁଚିତ ହୃଦ୍‌କାର୍ଯ୍ୟ ଅବରୋଧ, ମୁଣ୍ଡବ୍ୟଥା, ଭ୍ରମ, ଅନିଦ୍ରା, କର୍ଣ୍ଣନାଦ, ବିରକ୍ତତା ଭାବ, ମସ୍ତିଷ୍କଗତ ରକ୍ତସ୍ରାବ, ଅଜୀର୍ଣ୍ଣ, ଭୋଜନ ପ୍ରତି ଅନିଚ୍ଛା, ବିବିଧ ଦାହ, ଅମ୍ଳୋଉଦ୍‌ଗାର, ଶ୍ୱାସଦର ବୃଦ୍ଧି, ନାସା ଓ ମୁଖମାର୍ଗରୁ ରକ୍ତସ୍ରାବ ହେବା, ବହୁ ମୂତ୍ରତା, ନେତ୍ର ରକ୍ତବର୍ଣ୍ଣ ହେବା, ନେତ୍ର ଗୋଲକ ବାହାର ଆଡକୁ ଆସିବା ଏପରି ବହୁବିଧ ଲକ୍ଷଣ ପ୍ରକାଶ ପାଏ ।

**ଚିକିତ୍ସା:** ଉଚ୍ଚ ରକ୍ତଚାପ ରୋଗୀଠାରେ ସମସ୍ତ ଆୟୁର୍ବେଦିକ୍‌ମାନେ ସମୂହ ୩ ପ୍ରକାର ଚିକିତ୍ସା କାର୍ଯ୍ୟର ପ୍ରାରମ୍ଭ କରି ରୋଗୀକୁ ଆଶାତୀତ ଆରୋଗ୍ୟତା ଦେଇଥାନ୍ତି ।

୧) ନିଦାନ ପରିବର୍ଜନ ଚିକିତ୍ସା ମାଧ୍ୟମରେ, ୨) ଯୋଗ, ପ୍ରାଣାୟାମ କ୍ରିୟା ମାଧ୍ୟମରେ, ୩) ଔଷଧ ସେବନ ମାଧ୍ୟମରେ ।

**ନିଦାନ ପରିବର୍ଜନ:** ପ୍ରଥମେ ରୋଗୀ ରୋଗକୁ ନିଦାନ ବା ଉତ୍ପନ୍ନର ମୂଳ କାରଣ କ'ଣ ଜାଣ । ଏହା ସହିତ ତାଜା ଆହାର, ବିହାର ବ୍ୟସନ ଏସବୁ ଠାରୁ ଦୂରେଇ ରଖିବା କଷ୍ଟକର । ଧୂମ୍ରପାନ, ତମାଖୁସେବନ, ଅଧିକ ଗରିଷ୍ଠ ତେଲ ମସଲା, ଚର୍ବି ବହୁଳ ଖାଦ୍ୟ, ଚା', କଫି, ମଦ୍ୟପାନ, ଅଣ୍ଡା, ମାଛ, ମାଂସ, ଲୁଣ, ଆଚାର, ଆଳୁ, ଚାଉଳ, ମିଠାଦି ପଦାର୍ଥ, ବେସନ ଆଦି ଖାଦ୍ୟ ନଖାଇବା ଓ ଏଥିରୁ ଦୂରେଇ ରହିବା ଆବଶ୍ୟକ । ଅଧିକ ରାତ୍ରି ପର୍ଯ୍ୟନ୍ତ ଅନିଦ୍ରା ରହିବା, ଅଧିକ କାର୍ଯ୍ୟ କିମ୍ବା କାର୍ଯ୍ୟ କରି ସର୍ବଦା ଶୋଇ ରହିବା, ସର୍ବଦା ଚିନ୍ତାଗ୍ରସ୍ତ ରହିବା, କ୍ରୋଧ, ଈର୍ଷାତ୍ମଭାବ ଦେଖାଇବା ଏସବୁରୁ ନିଜକୁ ନିଜକୁ ଦୂରେଇ ରଖିବା ଆବଶ୍ୟକ । ଏତଦ୍‌ବ୍ୟତୀତ ଉଚ୍ଚ ରକ୍ତଚାପ ରୋଗୀ ପୂର୍ଣ୍ଣମାତ୍ରାରେ ନିଜର ଆହାର, ବିହାରାଦିକୁ ଜଗି ରଖି ଚଳିଲେ ଏ ରୋଗରୁ ଶୀଘ୍ର ମୁକ୍ତି ପାଇଥାଏ । ରୋଗୀ ପ୍ରାତଃକାଳରେ ସବୁଜ ପନିପରିବା, ରୁଟି, ଦୁଗ୍ଧ, କମଳାରସ, ଗହମ ଜାତୀୟ ଖାଦ୍ୟ, ଘୋଳ ଦହି ସେବନ ସହ ଦ୍ୱିପ୍ରହର ଭୋଜନରେ ରୁଟି, ପରିବା ସିଝା, ମୁଗ, ମସୁର, ଚଣା, କଞ୍ଚା ବୁଟ ଡାଲି, ସାଲାଡ, ମୂଳା, ଗାଜର, ଲେମ୍ବୁ ସୈନ୍ଧବ ଲବଣ, ମିଠାମାଛ, ଶାଗ ଆଦି ନେବା ଉଚିତ୍ । ଲଘୁ ଜଳଖିଆରେ ସଦ୍ୟ ଫଳ କିମ୍ବା ବିସ୍କୁଟ୍, ଚୁଡା ଭଜା ବି ଗ୍ରହଣ କରିବା ଦରକାର । ସଂଧ୍ୟା ସମୟରେ ମୁକ୍ତାକାଶ ଭ୍ରମଣ ରୋଗୀର ମନୋବଳକୁ ଦୃଢ କରେ । ଏହାସହ ଉଚ୍ଚ ରକ୍ତଚାପ ରୋଗୀ, ପ୍ରାତଃ ଓ ସାୟଂ ସମୟରେ ନିତ୍ୟକର୍ମ ସାରି ପବନ ମୁକ୍ତାସନ, ଉତ୍ତାନ ପାଦାସନ, ପଦ୍ମାସନ, ରେଚକ କୁମ୍ଭକ, ପୁରୁଳ (ପ୍ରାଣାୟମ) ସୂର୍ଯ୍ୟ ନମସ୍କାର, ସବାସନ ଆଦି ଆସନ କରିବା ଦ୍ୱାରା ସେ ନିଜକୁ ସମ୍ପୂର୍ଣ୍ଣ ସୁସ୍ଥତା ମନେ କରେ । ଏ ସମସ୍ତ ତଥ୍ୟକୁ ସେ ସଫଳ ଆୟୁର୍ବେଦବିତ୍ କିମ୍ବା ଯୋଗାଚାର୍ଯ୍ୟଙ୍କଠାରୁ ପରାମର୍ଶ ନେଲେ ଅଧିକ ସୁଫଳ ପାଇଥାଏ ।

**ଔଷଧ ସେବନ:**

କ) ଉଚ୍ଚ ରକ୍ତଚାପ ରୋଗୀ ପାତାଳ ଗରୁଡ ଚେର, ବଚ ପ୍ରତ୍ୟେକ ୫ତୋଳା ଏବଂ ପିପ୍ପଳି, ଗୋଲମରିଚ, ପ୍ରତ୍ୟେକ ୧ ତୋଳା ସମସ୍ତ ଏକତ୍ର ଚୂର୍ଣ୍ଣ କରି ସକାଳ ସଂଧ୍ୟାରେ ଏକ ଚାମଚ ପ୍ରମାଣେ ପାଣି ନେବା ବିଧେୟ ।

ଖ) ରସ ସିନ୍ଦୂର, ବଂଶଲୋଚନ, ସର୍ପଗନ୍ଧା, ବଚ, ଜଟାମାଂସି, ଅଶ୍ୱଗନ୍ଧା, ଜିପଜୀମୂଳ ପ୍ରତ୍ୟେକ ୧୦ ଗ୍ରାମ ଲେଖାଏଁ ନେଇ ଏହାର ଚୂର୍ଣ୍ଣ ୫ ଗ୍ରାମ ଲେଖାଏଁ ଦିନକୁ ୩ଥର କିଛି ମାସ ସେବନ କରିବା ଦ୍ୱାରା ଉଚ୍ଚ ରକ୍ତଚାପ କମିଥାଏ ।

ଗ) କିଛି ଅସଲି ରୁଦ୍ରାକ୍ଷ ସଂଗ୍ରହ ପୂର୍ବକ ରାତିର ଶୋଇବା ବେଳେ ଏକ ତମ୍ବା ପାତ୍ରରେ ଶୁଦ୍ଧ ଜଳନେଇ ତନ୍ମଧ୍ୟରେ ରୁଦ୍ରାକ୍ଷ ପକାଇ ପ୍ରତ୍ୟେକ ସକାଳୁ ଉଠି ଉଷାପାନ କରିବା ଏବଂ ରୁଦ୍ରାକ୍ଷ ମାଳ ପରିଧାନ ଦ୍ୱାରା ରକ୍ତଚାପ କମିଥାଏ ।

ଘ) ପାତାଳ ଗରୁଡ ବା ସର୍ପଗନ୍ଧାମୂଳ ଚୂର୍ଣ୍ଣକୁ ଦୁଗ୍ଧ ମିଶ୍ରି ସହିତ ଚାମଚ ପ୍ରମାଣେ ସେବନ ଦ୍ୱାରା ଉଚ୍ଚ ରକ୍ତଚାପ କମିଥାଏ ।

ଏହିପରି ଉଚ୍ଚ ରକ୍ତଚାପର ବହୁ ଉପଚାର ଯୋଗ ରହିଛି । ଯାହାକୁ ବ୍ୟବହାର କରି ମୁକ୍ତି ମିଳିଥାଏ । ଉଚ୍ଚ ରକ୍ତଚାପ ରୋଗୀର କୋଷ୍ଠବଦ୍ଧତା ଥିଲେ ତ୍ରିଫଳା (ହରିଡା, ବାହାଡା, ଅଁଳା) ସିଝା ପାଣି ପିଇବା ଉଚିତ୍ । ଆଧୁନିକ ସଭ୍ୟତାରେ ଉପଚାର ଯୋଗକୁ ପ୍ରୟୋଗ ବିନା ଆୟୁର୍ବେଦ ଶାସ୍ତ୍ରୀୟ ଓ ପେଟେଣ୍ଟ ଔଷଧ ସମୂହକୁ ମଧ୍ୟ ପ୍ରୟୋଗ କରି ଅସାଧ ରକ୍ତଚାପ ରୋଗୀକୁ ଆରୋଗ୍ୟ ଦିଆଯାଇପାରେ । ସର୍ପଗନ୍ଧାଦି ବଟି, ଯୋଗେନ୍ଦ୍ର ରସ, ହୃଦ୍‌ରୋଗହାରୀ ବଟି, ହୃଦେଶ୍ୱର ରସ, ହେମାମୃତ ରସ, ହୃଦୟାର୍ଣ୍ଣ ରସ, ସ୍ୱର୍ଣ୍ଣବସନ୍ତ ମାଳିନୀ ରସ, ଅର୍ଜ୍ଜୁନାରିଷ୍ଟ, ସର୍ପଗନ୍ଧାରିଷ୍ଟ ସାଙ୍ଗକୁ ସର୍ଜେନା ଅର୍ଜ୍ଜୁନା ଓ ଲୋନା ଆଦି ବହୁବିଧ ପେଟେଣ୍ଟ ଯୁକ୍ତ ଔଷଧ ଏହି ରୋଗରେ ମହୋଷଧି ରୂପେ କାର୍ଯ୍ୟ କରିଥାଏ । ଉଚ୍ଚ ରକ୍ତଚାପ ରୋଗୀ ନିଜର ସଂସ୍କାରିତ ଆହାର, ବିହାର, ବ୍ୟସନ ଆଦିଠାରୁ ସମ୍ପୂର୍ଣ୍ଣ ମୁକ୍ତି ପୂର୍ବକ ନିବୃତ୍ତିଗତ ଦିନଚର୍ଯ୍ୟା, ରାତିଚର୍ଯ୍ୟା ପାଳନ ଦ୍ୱାରା ଶୀଘ୍ର ରୋଗଠାରୁ ମୁକ୍ତି ପାଇଥାଏ ।

ଶ୍ରୀପୁରୁଷୋତ୍ତମ ଆୟୁର୍ବେଦିକ୍
ଚିକିତ୍ସା ମନ୍ଦିର, ବାଲୁଗାଁ
ଖୋର୍ଦ୍ଧା–୭୫୨୦୩୦

# ଓଡ଼ିଶାରେ ବିଦ୍ୟୁତ୍ ସେବା ଓ ସେସୁର ଭୂମିକା

ଗୋଲକ ବିହାରୀ ସାହୁ

ଆମ ଦେଶର ବିଦ୍ୟୁତ୍ ଉତ୍ପାଦନ ପାଇଁ ସମୁଦାୟ ୨,୩୪,୬୦୨ ମେଗାୱାଟ କ୍ଷମତାର ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରମାନ ରହିଛି। ଜାନୁୟାରୀ ମାସ ୨୦୧୪ ମସିହା ସୁଦ୍ଧା ୨,୮୭,୦୩୪ କି.ମି. ଟ୍ରାନ୍ସମିସନ ଲାଇନ ଓ ୫,୧୧,୦୧୧ଟି ଉଚ୍ଚ କ୍ଷମତା ବିଶିଷ୍ଟ ସବ୍‌ଷ୍ଟେସନ ରହିଛି। ଦେଶରେ ଥିବା ୫,୯୩,୭୩୨ଟି ଗ୍ରାମରୁ ୫,୬୧,୬୧୬ଟି ଗ୍ରାମ୍ୟ ବିଦ୍ୟୁତକରଣ ହୋଇଛି। ଜଳ ଉତ୍ସରୁ ପାଣି ଉଠାଇବା ପାଇଁ ପ୍ରାୟ ୨ କୋଟି ପାଣି ପମ୍ପ କେନ୍ଦ୍ରକୁ ବିଦ୍ୟୁତ ସଂଯୋଗ କରାଯାଇଛି। ଏଣୁ ୨୦୧୨–୧୩ ଆର୍ଥିକ ବର୍ଷରେ ସାରା ଭାରତର ହାରାହାରି ମୁଣ୍ଡପିଛା ବିଦ୍ୟୁତ ବ୍ୟବହାର ୯୧୮ ୟୁନିଟ ହୋଇଛି। ଆମ ରାଜ୍ୟରେ ବର୍ତ୍ତମାନ ପ୍ରାୟ ୫୨ ଲକ୍ଷ ବିଦ୍ୟୁତ ଗ୍ରାହକ ଅଛନ୍ତି ଓ ସମୁଦାୟ ୪୮୫୮ ମେଗାୱାଟ ବିଦ୍ୟୁତ ଉତ୍ପାଦନ କ୍ଷମତା ରହିଛି।

ଓଡ଼ିଶା ବିଦ୍ୟୁତ୍ ସଂସ୍କାର ଆଇନ ୧୯୯୫, ବିଦ୍ୟୁତ୍ ଗ୍ରାହକମାନଙ୍କୁ ଉନ୍ନତ ମାନର ସେବା ଯୋଗାଇ ଦେବା ସହ ବିଦ୍ୟୁତ୍ ଉତ୍ପାଦନ, ପରିବହନ ଓ ପରିବଣ୍ଟନ ସଂସ୍ଥାମାନଙ୍କର ଆର୍ଥିକ ଉନ୍ନତି ମଧ୍ୟ ହୋଇ ପାରିଛି । ସାମାଜିକ ଓ ଅର୍ଥନୈତିକ ଅଭିବୃଦ୍ଧିକୁ ଦୃଷ୍ଟିରେ ରଖି ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ର କିଛି ଅଂଶ ୧୯୯୭ ମସିହାର ସେସ୍‌କୋ ଏବଂ ପରବର୍ତ୍ତୀ ସମୟରେ ସେସୁ ନାମରେ ନାମିତ ହୋଇ ଓଡ଼ିଶାର କେନ୍ଦ୍ରୀୟ ଭାଗରେ ଥିବା ୯ଟି ଜିଲ୍ଲା ଯଥା କଟକ, ପୁରୀ, ଢେଙ୍କାନାଳ, ଜଗତସିଂହପୁର, କେନ୍ଦ୍ରାପଡ଼ା, ଅନୁଗୁଳ, ଖୋର୍ଦ୍ଧା, ନୟାଗଡ଼ ଏବଂ ଯାଜପୁରର କିଛି ଅଂଶ ସମୁଦାୟ ୨୯,୩୫୪ ବର୍ଗ କିଲୋମିଟର ଅଞ୍ଚଳରେ ପ୍ରାୟ ୧କୋଟି ୫୦ ଲକ୍ଷ ଲୋକ ସଂଖ୍ୟାକୁ ୧୮.୫ ଲକ୍ଷରୁ ଉର୍ଦ୍ଧ୍ୱ ବିଦ୍ୟୁତ୍ ଗ୍ରାହକଙ୍କ ମାଧ୍ୟମରେ ବିଦ୍ୟୁତ୍ ସେବା ଯୋଗାଇ ଦେଉଛି । ବର୍ତ୍ତମାନ ଏମାନଙ୍କର ସଂଯୋଜିତ ଲୋଡ୍ ପ୍ରାୟ ୩୫୬୭ ଏମ୍.ଭି.ଏ ଅଟେ । ସେସୁରେ ଉପଯୋଗ ହେଉଥିବା ବିଦ୍ୟୁତ୍ ଶକ୍ତିରୁ ୪୦% ଶିଳ୍ପ ପାଇଁ, ୧୭% ବ୍ୟବସାୟିକ ସଂସ୍ଥା ପାଇଁ , ୩୮% ଘରୋଇ ବ୍ୟବହାର ଏବଂ ୫% ଅନ୍ୟାନ୍ୟ ବ୍ୟବହାର ପାଇଁ ହୋଇଥାଏ । କେନ୍ଦ୍ର ସରକାର ଏବଂ ରାଜ୍ୟ ସରକାର ସମସ୍ତେ ବିଦ୍ୟୁତ୍ କ୍ଷେତ୍ରରେ ଉନ୍ନତି ଆଣି ସମସ୍ତଙ୍କ ପାଇଁ ବିଦ୍ୟୁତ୍ ସେବା କାର୍ଯ୍ୟକ୍ରମକୁ ସଫଳ ରୂପାୟନ କରିବାରେ ଚେଷ୍ଟିତ । ଏହାର ଫଳ ସ୍ୱରୂପ ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତକରଣ ଯୋଜନା, ବିଜୁ ଗ୍ରାମ ଜ୍ୟୋତି ଯୋଜନା ଏବଂ ସହରାଞ୍ଚଳ ପାଇଁ ବିଜୁ ସହରାଞ୍ଚଳ ଜ୍ୟୋତି ଯୋଜନାମାନ କାର୍ଯ୍ୟକାରୀ କରାଯାଉଛି ଏବଂ ସମସ୍ତ ଗ୍ରାମ, ପଡ଼ା ଏବଂ ସହରାଞ୍ଚଳର ସମସ୍ତ ବସ୍ତିକୁ ମଧ୍ୟ ବିଦ୍ୟୁତ୍ ସଂଯୋଗ ଦିଆଯାଉଛି । ବିଦ୍ୟୁତ୍ ଆଇନ ୨୦୦୩କୁ ସଂଶୋଧନ କରାଯାଇ ବିଦ୍ୟୁତ୍ ଚୋରି ଏବଂ ଅପଚୟକୁ ରୋକିବା ପାଇଁ କଠୋର ପଦକ୍ଷେପ ନିଆଯାଇ ଆଇନ୍ ସମ୍ମତ ଦଣ୍ଡବିଧାନ ବ୍ୟବସ୍ଥାକୁ କଡ଼ାକଡ଼ି କରାଯାଇଛି । ବିଦ୍ୟୁତ୍ ଗ୍ରାହକ ସେବାରେ ଉନ୍ନତି ଆଣିବା ପାଇଁ କେନ୍ଦ୍ରୀୟ ବିଦ୍ୟୁତ୍ ଅଧିକାରୀ ଏବଂ ଓଡ଼ିଶା ବିଦ୍ୟୁତ୍ ନିୟାମକ ଆୟୋଗ ବିଭିନ୍ନ ନୀତି ନିୟମମାନ ପ୍ରଣୟନ କରି ଏହାକୁ ଲାଗୁ କରାଇବାର ବ୍ୟବସ୍ଥା କରିଛନ୍ତି । ଅନ୍ୟ ବିଦ୍ୟୁତ୍ ବଣ୍ଟନ ସଂସ୍ଥା ପରି ସେସୁ ମଧ୍ୟ ସମସ୍ତ ନୀତି ନିୟମକୁ ପାଳନ କରି ବିଦ୍ୟୁତ୍ ସେବା କ୍ଷେତ୍ରରେ ଉନ୍ନତି ଆଣି ପାରିଛି ।

### ବିଦ୍ୟୁତ୍ ଗ୍ରାହକ ସଂଖ୍ୟାରେ ବୃଦ୍ଧି

୧୯୯୯–୨୦୦୦ ରେ ସେସୁର ସମୁଦାୟ ୬ ଲକ୍ଷ ୨୭ ହଜାର ବିଦ୍ୟୁତ୍ ଗ୍ରାହକ ଥିବା ସମୟରେ ୩୧.୦୩.୨୦୧୪ ସୁଦ୍ଧା ତାହା ବଢ଼ି ୧୮,୩୪,୬୭୫ ରେ ପହଞ୍ଚିଛି, ଯାହାକି ପ୍ରାୟ ୩ ଗୁଣ ହୋଇଛି । ୨୦୧୪ ଶେଷ ସୁଦ୍ଧା ସାରା ରାଜ୍ୟରେ ଏହି ଗ୍ରାହକ ସଂଖ୍ୟା ଆଶାତୀତ ଭାବରେ ବଢ଼ି ପ୍ରାୟ ୫୨ ଲକ୍ଷରେ ପହଞ୍ଚିବ ।

**ବିଦ୍ୟୁତ୍ ଯନ୍ତ୍ରପାତି ସଂଖ୍ୟାରେ ବୃଦ୍ଧି**

ବିଦ୍ୟୁତ୍ ଗ୍ରାହକମାନଙ୍କୁ ଉନ୍ନତ ସେବା ଯୋଗାଇ ଦେବା ପାଇଁ ନୂତନ ବିଦ୍ୟୁତ୍ ଲାଇନ୍, ବିଦ୍ୟୁତ୍ ସବ୍‌ଷ୍ଟେସନ, ଟ୍ରାନ୍ସଫରମର ଇତ୍ୟାଦି ସ୍ଥାପନ ହେବା ଯୋଗୁଁ ଗ୍ରାହକମାନଙ୍କର ଲୋ–ଭୋଲଟେଜ୍ ସମସ୍ୟାରେ ଅନେକ ସୁଧାର ହେବା ସହିତ ଟ୍ରାନ୍ସଫରମର ପୋଡ଼ି ମଧ୍ୟ କମିଯାଇଛି । ୧୯୯୯–୨୦୦୦ରେ ଥିବା ୨,୦୬୮ କି.ମି ୩୩ କେଭି ଏବଂ ୧୨,୪୭୬ କି.ମି ୧୧କେଭି ବିଦ୍ୟୁତ୍ ଲାଇନ ବଢ଼ି ୨୦୧୪ ମାର୍ଚ୍ଚ ସୁଦ୍ଧା ଯଥାକ୍ରମେ ୨,୯୯୬ କି.ମି ଏବଂ ୨୭,୪୯୨ କି.ମିରେ ପହଞ୍ଚିପାରିଛି । ସେହିପରି ୧୭,୨୯୪ କି.ମି ଲୋ–ଟେନସନ ବିଦ୍ୟୁତ୍ ଲାଇନ୍ ବଢ଼ି ଆଜି ୪୨,୦୭୬ କି.ମି ରେ ପହଞ୍ଚିପାରିଛି । ସେତେବେଳେ ଥିବା ମାତ୍ର ୨୫୫ ଟି ଉଚ୍ଚ କ୍ଷମତା ବିଶିଷ୍ଟ ଟ୍ରାନ୍ସଫରମର ସଂଖ୍ୟା ଆଜି ବଢ଼ି ୪୬୫କୁ ଆସିଛି ଏବଂ ଏଗୁଡ଼ିକ ୧୯୧ ଟି ପ୍ରାଇମେରି ସବଷ୍ଟେସନରେ ସଂସ୍ଥାପିତ ହୋଇଛି । ବିଦ୍ୟୁତ୍ ବଣ୍ଟନ ଟ୍ରାନସଫରମର ସଂଖ୍ୟା ୧୨,୩୮୪ ରୁ ବଢ଼ି ୫୨,୭୪୮ରେ ପହଞ୍ଚିପାରିଛି । କ୍ୟାପେକ୍ସ ଯୋଜନା ମାଧ୍ୟମରେ ସେସୁ ଅଞ୍ଚଳରେ ୯୩୬ କୋଟି ଟଙ୍କା ଖର୍ଚ୍ଚ କରାଯାଇ ନୂତନ ପ୍ରାଇମେରି ସବଷ୍ଟେସନ, ଶକ୍ତିଭିତ୍ତିକ ଟ୍ରାନ୍ସଫରମର ନୂତନ ୩୩ କେଭି ଏବଂ ୧୧କେଭି ବିଦ୍ୟୁତ୍ ବଣ୍ଟନ ଟ୍ରାନ୍ସଫରମର, ୩୩ କେଭି ଏବଂ ୧୧ କେଭି ବିଦ୍ୟୁତ୍ ଲାଇନ ଇତ୍ୟାଦି ନିର୍ମାଣ କାର୍ଯ୍ୟ ଚାଲୁ ହୋଇଛି । ଏହି ଯୋଜନାରେ ଏ ପର୍ଯ୍ୟନ୍ତ ୩ଟି ୩୩/୧୧ କେ.ଭି. ପ୍ରାଇମେରି ସବ୍‌ଷ୍ଟେସନ ନୂଆ ସ୍ଥାପନ ହେବା ସହ ୯୨ଟିର ଉନ୍ନତିକରଣ ହୋଇଛି । ୨୭.୫ କି.ମି ୩୩ କେ.ଭି. ଲାଇନର ନୂତନ ନିର୍ମାଣ ସହ ୧୫୪ କି.ମି ଲାଇନର ଉନ୍ନତିକରଣ ହୋଇଛି । ନୂତନ ଭାବେ ୨୨ କି.ମି ୧୧ କେ.ଭି. ଲାଇନ ନିର୍ମାଣ ସହ ୨୧୫ କି.ମିର ଉନ୍ନତିକରଣ ଏବଂ ୧୬୯ଟି ନୂଆ ଡ଼ିଷ୍ଟ୍ରିବ୍ୟୁସନ ସବ୍‌ଷ୍ଟେସନ ସ୍ଥାପନ ସହ ୧୩୧ କି.ମି. ଏ.ବି କେବୁଲ ଟଣାଯାଇଛି ।

**ବିଦ୍ୟୁତ୍ ବ୍ୟବସାୟିକ ସଫଳତା**

୧୯୯୯–୨୦୦୦ ରେ ଗ୍ରାହକମାନଙ୍କ ପାଇଁ ଗ୍ରୀଡ୍‌କୋ ଠାରୁ ୩୬୦୮.୧୦ ମିଲିୟନ ୟୁନିଟ ବିଦ୍ୟୁତ୍ ଶକ୍ତି କିଣା ଯାଉଥିବା ସମୟରେ ୨୦୧୩–୧୪ରେ ଏହା ୭୯୭୩.୧୯ ମିଲିୟନ ୟୁନିଟ୍‌କୁ ବୃଦ୍ଧି ପାଇଛି, ଯାହାର ମୂଲ୍ୟ ୨୨୭୫.୧୦ କୋଟି ଟଙ୍କା ଅଟେ । ବିଦ୍ୟୁତ୍ ବିଲ ଆଦାୟ କ୍ଷେତ୍ରରେ ୬୮%ରୁ ବଢ଼ି ଆଜି ପ୍ରାୟ ୯୪.୭୦% ରେ ପହଞ୍ଚି ପାରିଛି । ୨୦୧୩–୧୪ରେ ବିଦ୍ୟୁତ୍ ଗ୍ରାହକମାନଙ୍କଠାରୁ ୨୫୮୬.୭୫ କୋଟି ଟଙ୍କାର ବିଦ୍ୟୁତ୍ ଦେୟ ଆଦାୟ କରାଯାଇଛି, ଯାହାଦ୍ୱାରା, ବିଦ୍ୟୁତ୍ କ୍ଷେତ୍ରରେ ହେଉଥିବା ବ୍ୟବସାୟିକ ଏବଂ ପରିବଣ୍ଟନ କ୍ଷତିକୁ ୪୫% ରୁ ୩୫%କୁ ଏବଂ ସାମଗ୍ରିକ ବୈଷୟିକ ଏବଂ ବ୍ୟବସାୟିକ କ୍ଷତିକୁ ୬୨% ରୁ ୩୮% କୁ କମାଇବାରେ ସଫଳତା ମିଳି ପାରିଛି ।

**ବିଦ୍ୟୁତ୍ ଗ୍ରାହକ ସେବା ପାଇଁ ଉନ୍ନତିମୂଳକ କାର୍ଯ୍ୟ**

ବିଦ୍ୟୁତ୍ ଗ୍ରାହକ ସଂଖ୍ୟାରେ କ୍ରମ ବୃଦ୍ଧି ସହିତ ସେମାନଙ୍କୁ ନିରାପଦ ଏବଂ ନିର୍ଭରଯୋଗ୍ୟ ବିଦ୍ୟୁତ୍ ସେବା ଯୋଗାଇ ଦେବା ପାଇଁ ସେସୁ ସର୍ବଦା ଚେଷ୍ଟିତ । ଗତ ୨୦୧୩–୧୪ ମସିହାରେ ସେସୁ ଅଞ୍ଚଳରେ ୩୭୧୧ ଟି ଟ୍ରାନ୍ସଫରମର ଏବଂ ୮ଟି ଶକ୍ତିଭିତ୍ତିକ ଟ୍ରାନସ୍‌ଫରମର ପୋଡ଼ିଥିଲା, ଯାହାର ମୂଲ୍ୟ ପ୍ରାୟ ୯.୧୬ କୋଟି ଟଙ୍କା ହେବ । ଏସବୁ ସତ୍ତ୍ୱେ ୨୦୦୭ରୁ ୨୦୧୩ ଅକ୍ଟୋବର ମାସ ଶେଷ ସୁଦ୍ଧା ବିଭିନ୍ନ ଉନ୍ନତିମୂଳକ କାର୍ଯ୍ୟ ହୋଇଛି । ସମୁଦାୟ ୧୫୩ଟି ଶକ୍ତିଭିତ୍ତିକ ଏବଂ ୧୪୭୬ଟି ଡ଼ିଷ୍ଟ୍ରିବ୍ୟୁସନ ଟ୍ରାନସଫରମର କ୍ଷମତା ବୃଦ୍ଧି ହେବା ସହ ୩୦୬୧ ଟି ନୂତନ ଟ୍ରାନସଫରମର ସ୍ଥାପନ କରାଯାଇଛି । ବୈଦୁତିକ ନିରାପତ୍ତା ପାଇଁ ୬୬୦ କି.ମି. ଏରିଅଲ ବଞ୍ଚ କେବୁଲ ବ୍ୟବହାର କରାଯାଇଛି । ୧୪୬ଟି ୧୧କେଭି ଏବଂ ୧୦୨ଟି ୩୩କେ.ଭି ବ୍ରେକର ଲଗାଯିବା ସହ ୬୮୭୦ ଟି ଆର୍ଥିଙ୍ଗ୍ ଯାଞ୍ଚ କରାଯାଇଛି ଓ ୪୨୬ଟି ସବ୍‌ଷ୍ଟେସନର ପାଚେରି ତିଆରି ସରିଛି ।

**ନୂତନ ପଦକ୍ଷେପ**

କେନ୍ଦ୍ର ସରକାରଙ୍କ ଭାରତ ନିର୍ମାଣ ଯୋଜନା ଅନ୍ତର୍ଭୁକ୍ତ ରାଜୀବ ଗାନ୍ଧୀ ଗ୍ରାମୀଣ ବିଦ୍ୟୁତ୍‌କରଣ ଯୋଜନା ମାଧମରେ ସେସୁର ସମସ୍ତ ଗ୍ରାମ ଏବଂ ପଡ଼ାକୁ ବିଦ୍ୟୁତ୍ ଯୋଗାଣ ସହ ସମସ୍ତ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରକୁ ମାଗଣାରେ ବିଦ୍ୟୁତ୍ ସଂଯୋଗ ଦେବା କାର୍ଯ୍ୟ ଆରମ୍ଭ ହୋଇଛି । ଏହାଦ୍ୱାରା ସେସୁ ଅଞ୍ଚଳରେ ବିଦ୍ୟୁତ୍ ଗ୍ରାହକ ସଂଖ୍ୟା ବଢ଼ି ଚାଲିଛି ।

ବିଦ୍ୟୁତ୍ ଗ୍ରାହକମାନଙ୍କୁ ଉପଯୁକ୍ତ ଉନ୍ନତ ମାନର ସେବା ଦେବା ଉଦ୍ଦେଶ୍ୟରେ ବିଭିନ୍ନ ଗ୍ରାମାଞ୍ଚଳର ବେସରକାରୀ ସଂସ୍ଥା, ମହିଳା ସଂଗଠନ, ଅବସରପ୍ରାପ୍ତ କର୍ମଚାରୀ ସଂଗଠନ ଇତ୍ୟାଦିର ସଭ୍ୟମାନଙ୍କୁ ବିଦ୍ୟୁତ୍ ବିତରଣ ପାଇଁ ଫ୍ରାନ୍‌ଚାଇଜ ଜରିଆରେ ଅନ୍ତର୍ଭୁକ୍ତ କରାଯାଇଛି । କେନ୍ଦ୍ର ସରକାରୀ ସଂସ୍ଥା ଆର.ଇ.ସି. ସହବନ୍ଧିତ ହୋଇ କାର୍ଯ୍ୟରତ ବିଦ୍ୟୁତ୍ କର୍ମଚାରୀ, ଗ୍ରାମାଞ୍ଚଳ ଏବଂ ସହରାଞ୍ଚଳର ଇଚ୍ଛୁକ ବ୍ୟକ୍ତିମାନଙ୍କୁ ବିଦ୍ୟୁତ୍ ବିତରଣ ସମ୍ବନ୍ଧରେ ପ୍ରଶିକ୍ଷଣ ଦିଆଯାଉଛି । ଇତି ମଧ୍ୟରେ ସେସୁରେ କାର୍ଯ୍ୟରତ ୩୦୦୦ରୁ ଊର୍ଦ୍ଧ୍ୱ କ୍ଷେତ୍ରୀୟ ବିଦ୍ୟୁତ୍ କର୍ମଚାରୀମାନଙ୍କୁ ଏ କ୍ଷେତ୍ରରେ ପ୍ରଶିକ୍ଷଣ ଦିଆଯାଇଛି । ସେସୁର ୨୦ଟି ବିଦ୍ୟୁତ୍ ଡ଼ିଭିଜନ ମଧ୍ୟରୁ

୧୫ଟି ବିଦ୍ୟୁତ୍ ଡ଼ିଭିଜନରେ ବର୍ତ୍ତମାନ ୪ଟି ଇନ୍‌ପୁଟଭିତ୍ତିକ କ୍ୟାପେକ୍ସ ମଡ଼େଲ ଫ୍ରାନ୍‌ଚାଇଜ ସଂସ୍ଥା ବିଦ୍ୟୁତ୍ ସେବା କାର୍ଯ୍ୟରେ ନିୟୋଜିତ ରହି ପ୍ରାୟ ୧୪.୧୮ ଲକ୍ଷ ଗ୍ରାହକଙ୍କୁ ସେବା ଯୋଗାଉଛନ୍ତି । ଏହି ଫ୍ରାନ୍‌ଚାଇଜ୍‌ମାନେ ବିଦ୍ୟୁତ୍ ବ୍ୟବସାୟ କରି ଉନ୍ନତ ମାନର ଗ୍ରାହକ ସେବା ଦେବା ପାଇଁ ଚେଷ୍ଟା ଚଳାଇଛନ୍ତି । ଏସ୍ ଏମ ଏସ୍ ଏବଂ ଇ–ମେଲ ଦ୍ୱାରା ବିଲ ସମ୍ବନ୍ଧୀୟ ସୂଚନା ଦିଆଯିବା ସହ ଇ.ସି.ଏସ୍ ସେବା ଦ୍ୱାରା ଏବଂ ଅନ୍ ଲାଇନ୍ ବ୍ୟବସ୍ଥାରେ ଘରେ ବସି ବିଦ୍ୟୁତ୍ ବିଲ ପଇଠର ବ୍ୟବସ୍ଥା ହୋଇ ପାରିଛି । ଭୁବନେଶ୍ୱର ଅଞ୍ଚଳରେ ପାୱାର ହାଉସ୍ ଏବଂ ଖଣ୍ଡଗିରି ଠାରେ ଦୁଇଟି ନୂଆ ବିଦ୍ୟୁତ୍ ସଂଯୋଗ ଆବେଦନ ପାଇଁ ସେସୁର ଗ୍ରାହକ ସେବା କେନ୍ଦ୍ର ଖୋଲାଯାଇଛି । ବିଦ୍ୟୁତ୍ ଚୋରି ଏବଂ ଅପ ବ୍ୟବହାରକୁ ରୋକିବା ପାଇଁ ପ୍ରତି ସବ୍‌ଡ଼ିଭିଜନ ସ୍ତରୀୟ ସ୍ୱତନ୍ତ୍ର ସ୍କ୍ୱାର୍ଡ଼ ଗଠନ କାରାଯାଇଛି । ବିଦ୍ୟୁତ୍ ଚୋରି ବିଷୟରେ ଖବର ଦେବା ପାଇଁ ୯୪୩୭୧୫୮୬୭୦ ଏବଂ powertheft@gmail.comର ବ୍ୟବସ୍ଥା କରାଯାଇଛି । ଖବରଦାତାମାନଙ୍କ ପାଇଁ ପୁରସ୍କାର ବ୍ୟବସ୍ଥା ହୋଇଛି। ସେସୁ ଅଞ୍ଚଳରେ ୮ଟି ବିଦ୍ୟୁତ୍ ଥାନା କାର୍ଯ୍ୟ କରୁଛି । ୨୦୧୩–୧୪ ରେ ୪୦୫ଟି ବିଦ୍ୟୁତ୍ ଚୋରି ବାବଦରେ ଏଫ୍.ଆଇ.ଆର୍ ଦିଆଯାଇଛି। ପୂର୍ବର ପୁରୁଣା ଏବଂ ଖରାପ ମିଟରଗୁଡ଼ିକୁ ବଦଳା ଯାଇ ଇଲେକ୍‌ଟ୍ରୋନିକ ମିଟର ବସାଯାଉଛି । ବିଦ୍ୟୁତ୍ ଗ୍ରାହକମାନଙ୍କ ଦେୟ ପଇଠ ସୁବିଧା ପାଇଁ 'ଜନ ସେବା କେନ୍ଦ୍ର'ରେ ଦେୟ ମଧ୍ୟ ଗ୍ରହଣ କରାଯାଉଛି । ସମସ୍ତ ସରକାରୀ କର୍ଯ୍ୟାଳୟରେ ପ୍ରିପେଡ଼୍ ମିଟର ବ୍ୟବସ୍ଥା କରାଯାଉଛି ।

**ଗ୍ରାମ୍ୟ ବିଦ୍ୟୁତି କରଣ**

ସାରା ଓଡ଼ିଶାର ହିସାବ ନେଲେ ଜାନୁୟାରୀ ୨୦୧୪ ସୁଧା ୩୭,୯୦୧ଟି ଗ୍ରାମ, ୧୪୫୧୪ଟି ଜନବସତି ବିଦ୍ୟୁତିକରଣ ହୋଇଛି ଏବଂ ପ୍ରାୟ ୨୧ ଲକ୍ଷ ବିପିଏଲ୍ ପରିବାରକୁ ବିଦ୍ୟୁତ୍ ସଂଯୋଗ ଦିଆଯାଇଛି । ସେସୁ ଅଞ୍ଚଳରେ ସମୁଦାୟ ୧୧,୮୩୭ଟି ଗାଁ ଅଛି, ସେମାନଙ୍କ ମଧ୍ୟରୁ ୩୧.୩.୨୦୧୪ ସୁଦ୍ଧା ୧୧,୬୧୨ଟି ଗ୍ରାମକୁ ବିଦ୍ୟୁତ୍ ସଂଯୋଗ ଦିଆଯାଇଛି । ଏହାଦ୍ୱାରା ୫,୩୬,୪୮୮ ଜଣ ବି.ପି.ଏଲ ଶ୍ରେଣୀର ପରିବାର ବିଦ୍ୟୁତ୍ ସଂଯୋଗ ପାଇ ପାରିଛନ୍ତି । ବିଜୁ ଗ୍ରାମଜ୍ୟୋତି ଯୋଜନାରେ ୩୦.୦୬.୨୦୧୪ ସୁଦ୍ଧା ୪୪୫୩ ଗ୍ରାମ ବିଦ୍ୟୁତ୍ ଶକ୍ତି ପାଇ ପାରିଛନ୍ତି ଏବଂ ୪୦୫୪୯ ଜଣ ବିପିଏଲ ପରିବାର ଉପକୃତ ହୋଇଛନ୍ତି ।

**ଗ୍ରାହକମାନଙ୍କ ଅଭିଯୋଗ ଶୁଣାଣି ବ୍ୟବସ୍ଥାରେ ଉନ୍ନତି**

ବିଦ୍ୟୁତ୍ ଗ୍ରାହକମାନଙ୍କ ଦୈନନ୍ଦିନ ଅଭିଯୋଗ ଶୁଣାଣି ପାଇଁ ବିଭିନ୍ନ ବ୍ୟବସ୍ଥା ରହିଛି । ପ୍ରତି ମାସର ୭ ତାରିଖରେ ସମସ୍ତ ବିଦ୍ୟୁତ୍ ଡ଼ିଭିଜନର ନିର୍ବାହୀ ଯନ୍ତ୍ରୀ ନିଜେ ଉପସ୍ଥିତ ରହି ସେମାନଙ୍କ ଅଞ୍ଚଳର ବିଦ୍ୟୁତ୍ ଗ୍ରାହକମାନଙ୍କ ଅଭିଯୋଗ ଶୁଣାଣି କରି ସମସ୍ୟାର ସମାଧାନ କରନ୍ତି । ସମସ୍ତ ୫ଜଣ ବିଦ୍ୟୁତ୍ ମଣ୍ଡଳ ଅଧିକାରୀମାନେ ମାସରେ ଗୋଟିଏ ଦିନ ଅଭିଯୋଗ ଶୁଣାଣି ବ୍ୟବସ୍ଥା କରୁଛନ୍ତି । ସେସୁ ମୁଖ୍ୟ କାଯ୍ୟାଳୟର ଅଭିଯୋଗ ପ୍ରକୋଷ୍ଠ ଏବଂ ମୁଖ୍ୟ ନିର୍ବାହୀ ଅଧିକାରୀ ନିଜେ ଅଭିଯୋଗ ଗ୍ରହଣ କରି ସମାଧାନ କରିଥାନ୍ତି । ସେସୁ ତରଫରୁ ଖୋଲା ଯାଇଥିବା ଗ୍ରାହକ ସେବା କେନ୍ଦ୍ର ୧୫୫୩୩୩ ଏବଂ ୦୬୭୪–୨୩୯୧୧୧୦ ଟେଲିଫୋନ ଦ୍ୱାରା ସଂଯୁକ୍ତ। ସେସୁର ଗ୍ରାହକ ସେବା କେନ୍ଦ୍ରରେ ୨୦୧୩–୧୪ ବର୍ଷରେ ୧୩,୦୦୮ଟି ଫ୍ୟୁଜ୍ କଲ୍ ଗ୍ରହଣ କରାଯାଇ ୧୨,୯୨୩ଟିର ସମାଧାନ କରାଯାଇଛି । ସେହିପରି ୪,୩୪୫ଟି ମିଟର ଏବଂ ଦେୟ ସମ୍ବନ୍ଧୀୟ ଅଭିଯୋଗ ଗ୍ରହଣ କରାଯାଇ ୪,୨୭୬ଟିର ସମାଧାନ ହୋଇଛି । ୧୨,୯୪୨ଟି ନୂତନ ବିଦ୍ୟୁତ୍ ସଂଯୋଗ ଆବେଦନ ପତ୍ର ଗ୍ରହଣ କରାଯାଇ ସଠିକ୍ କାଗଜ ପତ୍ର ଦେଇଥିବା ୧୦,୯୮୯ଟି ସଂଯୋଗ ଦିଆଯାଇଛି ।

ବିଦ୍ୟୁତ୍ ଆଇନ ୨୦୦୩ ଏବଂ ଓଡ଼ିଶା ବିଦ୍ୟୁତ ନିୟାମକ ଆୟୋଗର ବିଦ୍ୟୁତ୍ ବଣ୍ଟନ କୋଡ଼୍ ୨୦୦୪ ଅନୁସାରେ, ସେସୁ ଅଞ୍ଚଳରେ ଭୁବନେଶ୍ୱର, ଖୋର୍ଦ୍ଧା, କଟକ, ଢେଙ୍କାନାଳ, ଏବଂ ପାରାଦୀପଠାରେ ଅଭିଯୋଗ ପ୍ରତିବିଧାନ ବିଚାର କେନ୍ଦ୍ରମାନ ପ୍ରତିଷ୍ଠା ହୋଇ ବିଦ୍ୟୁତ୍ ଗ୍ରାହକମାନଙ୍କ ଅଭିଯୋଗ ଗ୍ରହଣ କରାଯାଇ ଶୀଘ୍ର ସମାଧାନ କରାଯାଇଛି । ଏହା ୨୦୦୪ ମସିହାରୁ ୩୧.୦୩.୨୦୧୪ ସୁଦ୍ଧା ସମୁଦାୟ ୯,୧୪୮ଟି ମାମଲା ଗ୍ରହଣ କରି ୮,୮୯୫ଟି ର ସମାଧାନ ହୋଇଛି ।

ଆଜି ବିଦ୍ୟୁତ୍ ଶକ୍ତିର ଆବଶ୍ୟକତା ସବୁରି କ୍ଷେତ୍ରରେ ବଢିଯାଇଛି । ମାତ୍ର ବହୁ ସମୟରେ ଦେଖାଯାଉଛି ଯେ, ବିଦ୍ୟୁତ୍ ଗ୍ରାହକ ତଥା ଜନସାଧାରଣଙ୍କ ଦୃଢ ମାନସିକତାର ଅଭାବ ଯୋଗୁଁ ବିଦ୍ୟୁତ୍ ଶକ୍ତିର ଅପବ୍ୟବହାର, ଅପଚୟ ଏବଂ ଚୋରି କ୍ରମେ ବଢି ଚାଲିଛି । ଏହା ସାମାଜିକ ତଥା ଅର୍ଥନୈତିକ ଉନ୍ନତିରେ ବାଧା ସୃଷ୍ଟି କରୁଛି । ଗାଁ ଗଣ୍ଡା ଓ ସହର ବଜାର ସବୁରି ଅଞ୍ଚଳର ବିଦ୍ୟୁତ୍ ଗ୍ରାହକ ତଥା ଜନସାଧାରଣମାନଙ୍କୁ ଅନୁରୋଧ ସେମାନେ ସମସ୍ତେ ବିଦ୍ୟୁତ୍ ଶକ୍ତିର ଅପଚୟକୁ ରୋକିବା ସହ ବିଦ୍ୟୁତ୍ ସଞ୍ଚୟ ମନୋବୃତ୍ତି ଆଣି ପାରିଲେ ରାଜ୍ୟ ତଥା ଦେଶର ମଙ୍ଗଳ ହୋଇପାରିବ ।

ଜନସମ୍ପର୍କ ଅଧିକାରୀ, ସେସୁ

# ସପ୍ରସଙ୍ଗ ଓଡ଼ିଶା



## ନବକଳେବରକୁ ଦୃଷ୍ଟିରେ ରଖି
## ଅଲାରନାଥ ପୀଠର ଉନ୍ନତି ପାଇଁ ବିବିଧ ପଦକ୍ଷେପ

ପ୍ରତିବର୍ଷ ରଥଯାତ୍ରା ସମୟରେ ଜଗନ୍ନାଥ ମହାପ୍ରଭୁ ଅଣସରରେ ୧୫ ଦିନ ରହୁଥିବା ବେଳେ ଭକ୍ତ ଅଲାରନାଥଙ୍କ ଦର୍ଶନ କରିଥାଏ । କିନ୍ତୁ ନବକଳେବର ବର୍ଷରେ ୪୫ ଦିନ ଅଣସରରେ ରହୁଥିବାରୁ ଅଲାରନାଥ ପୀଠରେ ତଦନୁଯାୟୀ ୪୫ ଦିନ ପୂଜା ରୀତି ହୁଏ ଓ ଭକ୍ତମାନେ ଏହି ସମୟରେ ଅଲାରନାଥ ପୀଠରେ ଭିଡ଼ ଜମାଇଥା'ନ୍ତି । ଆସନ୍ତା ବର୍ଷ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ନବକଳେବର ସମୟରେ ଅଲାରନାଥ ପୀଠରେ ଆଶାତୀତ ଭକ୍ତ ସମାଗମକୁ ଦୃଷ୍ଟିରେ ରଖି ପୀଠର ଉନ୍ନତି ପାଇଁ ବହୁବିଧ ପଦକ୍ଷେପ ନିଆଯାଇଛି । ବ୍ରହ୍ମଗିରି ବିଧାୟକ ତଥା ଖାଦ୍ୟ ଯୋଗାଣ ମନ୍ତ୍ରୀ ଶ୍ରୀ ସଂଜୟ କୁମାର ଦାସବର୍ମାଙ୍କ ଦ୍ୱାରା ଆହୂତ ଓ ମୁଖ୍ୟ ଶାସନ ସଚିବ ଶ୍ରୀ ଗୋକୁଳ ଚନ୍ଦ୍ର ପତିଙ୍କ ଉପସ୍ଥିତିରେ ଏକ ଉଚ୍ଚସ୍ତରୀୟ ବୈଠକରେ ନିଷ୍ପତ୍ତି ନିଆଯାଇଛି । ଏହି ବୈଠକରେ ମନ୍ଦିରର ଗୋଟିଏ ପ୍ରବେଶ ଦ୍ୱାର ଥିବାରୁ ଅନ୍ୟ ଏକ ପ୍ରସ୍ଥାନ ଦ୍ୱାର ଖୋଲାଯିବା ପାଇଁ ନିଷ୍ପତ୍ତି ହୋଇଛି । ଯେଉଁ ସ୍ଥାନରେ ମରାମତି କରିବାର ଆବଶ୍ୟକତା ଅଛି, ସେହି ସ୍ଥାନରେ ଅନ୍ୟ ଏକ ଦ୍ୱାର ଖୋଲାଯିବ । ଆବଶ୍ୟକ ସ୍ଥଳେ ଦେବୋତ୍ତର କମିଶନରଙ୍କ ମତ ଓ ମନ୍ଦିରର ସେବାୟତଙ୍କ ସହମତି ନେଇ ଏହି କାର୍ଯ୍ୟ ସମ୍ପନ୍ନ ହେବ । ମନ୍ଦିର ଉନ୍ନୟନ ଆକଳନ ବାଦ୍ ଅତିରିକ୍ତ ଆକଳନ କରିବା ପାଇଁ ମୁଖ୍ୟ ଶାସନ ସଚିବ ଶ୍ରୀ ପତି ପର୍ଯ୍ୟଟନ ସଚିବଙ୍କୁ ଏହି ପରିପ୍ରେକ୍ଷୀରେ ପରାମର୍ଶ ଦେଇଛନ୍ତି ।

ଅଲାରନାଥ ପୀଠର ଉନ୍ନତି ପାଇଁ ଏକାଦଶ ଅର୍ଥ କମିଶନଙ୍କ ସମୟରେ ୨ ଲକ୍ଷ, ଦ୍ୱାଦଶ ଅର୍ଥ କମିଶନ ସମୟରେ ୩ ଲକ୍ଷ ଓ ତ୍ରୟୋଦଶ ଅର୍ଥ କମିଶନଙ୍କ କାଳରେ ୧୫ ଲକ୍ଷ ଟଙ୍କା ବ୍ୟୟ କରାଯାଇଛି । ଏହା ସହ ନିଜସ୍ୱ ବଜେଟ୍‌ରୁ ମଧ୍ୟ ମନ୍ଦିରର ପ୍ରାଚୀର ରୋଷଘର ଓ ଅନ୍ୟାନ୍ୟ ରକ୍ଷଣାବେକ୍ଷଣ ପାଇଁ ବାର୍ଷିକ ଆନୁମାନିକ ୬୦ ଲକ୍ଷ ଟଙ୍କା ଖର୍ଚ୍ଚ କରିବାର ଯୋଜନା ରହିଛି ବୋଲି ସଂସ୍କୃତି ସଚିବ ଡଃ ଅରବିନ୍ଦ କୁମାର ପାଢୀ ସୂଚନା ଦେଇଛନ୍ତି । ଅଲାରନାଥ ପୀଠ ଓ ବ୍ରହ୍ମଗିରି ବଜାର ଅଞ୍ଚଳରେ ବିଦ୍ୟୁତିକରଣ ପାଇଁ ସଂସ୍କୃତି ବିଭାଗ ଆବଶ୍ୟକ ପଦକ୍ଷେପ ନେବ । ମନ୍ଦିରର ଜଗମୋହନ ମରାମତି ପାଇଁ ଇନ୍‌ଟାକ୍ ବା ପ୍ରତ୍ନତତ୍ତ୍ୱ ବିଭାଗର ସହାୟତା ନିଆଯିବ । ମନ୍ଦିରର ଆନନ୍ଦବଜାରକୁ ଏକ ସ୍ଥାୟୀ ମଣ୍ଡପରେ ପରିଣତ କରାଯିବ । ଯାତ୍ରୀଙ୍କ ସାମୟିକ ବିଶ୍ରାମ ବା ରହଣୀ ପାଇଁ ଏକ ଯାତ୍ରୀ ବିଶ୍ରାମାଗାର ମଧ୍ୟ ନିର୍ମିତ ହେବାକୁ ନିଷ୍ପତ୍ତି ନିଆଯାଇଥିଲା । ଏ ସମସ୍ତ କାର୍ଯ୍ୟ ସମ୍ପାଦନ ପାଇଁ ପର୍ଯ୍ୟଟନ ଓ ସଂସ୍କୃତି ବିଭାଗକୁ ଦାୟିତ୍ୱ ଦିଆଯାଇଛି । ପୂର୍ତ୍ତ ବିଭାଗ ଦ୍ୱାରା ମନ୍ଦିର ପରିସର ମଧ୍ୟରେ ଥିବା ଚନ୍ଦନପୋଖରୀର ସମ୍ପ୍ରସାରଣ ଓ ସୌନ୍ଦର୍ଯ୍ୟକରଣ ପାଇଁ ମଧ୍ୟ ନିଷ୍ପତ୍ତି ନିଆଯାଇଛି ।

ପୁରୀ–ସାତପଡ଼ା ଜାତୀୟ ରାଜପଥରୁ ମନ୍ଦିରକୁ ଯାଇଥିବା ରାସ୍ତାକୁ ପ୍ରଶସ୍ତ କରିବା ପାଇଁ ମଧ୍ୟ ନିଷ୍ପତ୍ତି ନିଆଯାଇଛି । ଗ୍ରାମ୍ୟ ଉନ୍ନୟନ ବିଭାଗ ଏଥିପାଇଁ ସ୍ୱତନ୍ତ୍ର ବଜେଟ୍ ତିଆରି କରିବେ । ପୁରୀରୁ ଅଲାରନାଥ ମନ୍ଦିର ପର୍ଯ୍ୟନ୍ତ ରାସ୍ତା ଆଲୋକୀକରଣ କରିବା ପାଇଁ ୫ଟି ପଞ୍ଚାୟତର ପଞ୍ଚାୟତ ସମିତି ଜରିଆରେ ସୌର–ଆଲୋକ ବ୍ୟବସ୍ଥା ମାଧ୍ୟମରେ ଯଥା ସମ୍ଭବ ରାସ୍ତା ଆଲୋକୀକରଣ କରାଯିବ ବୋଲି ଶକ୍ତି ସଚିବ ଶ୍ରୀ ପ୍ରଦୀପ କୁମାର ଜେନା ସହମତି ଦେଇଛନ୍ତି ।

ଯାତ୍ରୀମାନଙ୍କ ସୁବିଧା ପାଇଁ ବ୍ରହ୍ମଗିରି ବସ୍‌ଷ୍ଟାଣ୍ଡର ଉନ୍ନତିକରଣ ସହ ସେଠାରେ ପରିମଳ ବ୍ୟବସ୍ଥାରେ ସୁଧାର ଆଣିବା ପାଇଁ ସୁଲଭ ସଂସ୍ଥା ଦ୍ୱାରା ଶୌଚାଳୟ ନିର୍ମାଣ, ମନ୍ଦିର ପଛପଟେ ପାର୍କିଂ ସ୍ଥାନ ନିର୍ମାଣ, ପାନୀୟ ଜଳ ଯୋଗାଣ, ବ୍ରହ୍ମଗିରି ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଓ ରେବେଣା–ନୂଆଗାଁ ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରର ଉନ୍ନତି ପାଇଁ ନିଷ୍ପତ୍ତି ନିଆଯାଇଛି । ବ୍ରହ୍ମଗିରିଠାରେ ପୁଲିସ୍ ଷ୍ଟେସନ ନିର୍ମାଣ ପାଇଁ ମଧ୍ୟ ପଦକ୍ଷେପ ନିଆଯିବ ବୋଲି ନିଷ୍ପତ୍ତି ନିଆଯାଇଛି । ଏହିସବୁ ଅତ୍ୟାବଶ୍ୟକ ନିର୍ମାଣ କାର୍ଯ୍ୟ ପାଇଁ ସମ୍ପୃକ୍ତ ସଚିବମାନେ ଆସନ୍ତା ଏକମାସ ମଧ୍ୟରେ ବ୍ୟୟ ଆକଳନ ଦାଖଲ କରିବା ପାଇଁ ମୁଖ୍ୟ ସଚିବ ନିର୍ଦ୍ଦେଶ ଦେଇଛନ୍ତି ।

ବୈଠକରେ ସଂସ୍କୃତି ଓ ପର୍ଯ୍ୟଟନ ସଚିବ ଡଃ ଅରବିନ୍ଦ ପାଢ଼ୀ, ଶକ୍ତି, ସୂଚନା ଓ ଲୋକ ସଂପର୍କ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ଜେନା, ଗ୍ରାମ୍ୟ ଉନ୍ନୟନ ସଚିବ ଶ୍ରୀ ସି.ଜେ. ଭେନୁଗୋପାଳ, ପୂର୍ତ୍ତ ସଚିବ ଶ୍ରୀ ନଳିନୀକାନ୍ତ ପ୍ରଧାନ, ସୂଚନା ଓ ଲୋକ ସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ପ୍ରଦୀପ୍ତ କୁମାର ମହାପାତ୍ର, ସଂସ୍କୃତି ନିର୍ଦ୍ଦେଶକ ଶ୍ରୀ ସୁଶୀଲ କୁମାର ଦାସ, ଅଲାରନାଥ ପୀଠର ଟ୍ରଷ୍ଟ ବୋର୍ଡ଼ର ସଦସ୍ୟ, ମନ୍ଦିର ସେବାୟତ ପ୍ରମୁଖ ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।

ପୁଷ୍ପାଞ୍ଜଳି ପାଇକରାୟ,ସୂଚନା ଅଧିକାରୀ

# ମାତୃଭାଷାଭିତ୍ତିକ 'ନୂଆ ଅରୁଣିମା' ପାଠ୍ୟକ୍ରମର ଶୁଭାରମ୍ଭ

ଶିଶୁର ପ୍ରକୃତ ଭାଷା ହିଁ ମାତୃଭାଷା । ପ୍ରତ୍ୟେକ ଶିଶୁର ଶିକ୍ଷାଦାନ କ୍ଷେତ୍ରରେ ମାତୃଭାଷାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ତେଣୁ ବିଦ୍ୟାଳୟ ପାଠ୍ୟକ୍ରମରେ ମାତୃଭାଷାଭିତ୍ତିକ ଶିକ୍ଷାକୁ ଅଗ୍ରାଧିକାର ଦେବା ଆବଶ୍ୟକ । ଆଦିବାସୀ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଲୁକ୍କାୟିତ ପ୍ରତିଭାର ବିକାଶ ପାଇଁ ସେମାନଙ୍କ ମାତୃଭାଷାରେ ଲିଖିତ ଶିକ୍ଷାଦାନ ଆବଶ୍ୟକ । ଏଥିପାଇଁ ମହିଳା ଓ ଶିଶୁ ବିକାଶ ବିଭାଗ ପକ୍ଷରୁ ମାତୃଭାଷା ଭିତ୍ତିକ 'ନୂଆ ଅରୁଣିମା' ପାଠ୍ୟକ୍ରମକୁ ନେଇ ପ୍ରସ୍ତୁତ ସହାୟକ ପୁସ୍ତିକା ଉନ୍ମୋଚିତ ହୋଇଛି ।

ଅନୁସୂଚିତ ଜାତି ଓ ଅନୁସୂଚିତ ଜନଜାତି ଗବେଷଣା ଓ ତାଲିମ ପ୍ରତିଷ୍ଠାନ (SCSTRTI)ର ପ୍ରେକ୍ଷାଳୟରେ ମହିଳା ଓ ଶିଶୁ ବିକାଶ ବିଭାଗ, ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ଏବଂ ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି ଉନ୍ନୟନ ବିଭାଗର ମିଳିତ ସହଯୋଗରେ ପ୍ରାକ୍ ବିଦ୍ୟାଳୟ ମାତୃଭାଷା ଶିକ୍ଷାର ମାର୍ଗଦର୍ଶିକାକୁ ୧୦ଟି ଭାଷାରେ ଲୋକାର୍ପଣ କରାଯାଇଛି ।ଏଥିରେ ମୁଖ୍ୟଅତିଥି ଭାବେ ଯୋଗଦେଇ ଆଦିବାସୀ କଲ୍ୟାଣ ମନ୍ତ୍ରୀ ଶ୍ରୀ ଲାଲ ବିହାରୀ ହିମିରିକା ଏଭଳି ପ୍ରଚେଷ୍ଟାକୁ ଭୂୟସୀ ପ୍ରଶଂସା କରିବା ସହିତ ଏହା ଆଦିବାସୀ ପ୍ରାକ୍ ବିଦ୍ୟାଳୟ ପିଲାମାନଙ୍କର ସର୍ବାଙ୍ଗୀନ ବିକାଶରେ ସହାୟକ ହୋଇପାରିବ ବୋଲି କହିଥିଲେ ।

ସମ୍ମାନିତ ଅତିଥି ଭାବେ ଯୋଗଦେଇ ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ଦେବୀପ୍ରସାଦ ମିଶ୍ର କହିଲେ ଯେ, ଏହିଭଳି କାର୍ଯ୍ୟକ୍ରମ ଦ୍ୱାରା ଶିକ୍ଷାର ଗୁରୁତ୍ୱ ବୃଦ୍ଧି ପାଇବ । ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ଦ୍ୱାରା ଜନଜାତିମାନଙ୍କର ଜୀବନ ସଫଳ ହୋଇପାରିବ । ମହିଳା ଓ ଶିଶୁ ବିକାଶ ବିଭାଗର ନିର୍ଦ୍ଦେଶିକା ଆଶ୍ୱତି ଏସ୍. ତାଙ୍କର ସ୍ୱାଗତ ଭାଷଣରେ କହିଲେ ଯେ, ବିଭାଗ ପକ୍ଷରୁ ୧୦ଟି ଭାଷାରେ ପୁସ୍ତକ

ପ୍ରସ୍ତୁତି ସହିତ ତାଲିମ କାର୍ଯ୍ୟକ୍ରମର ବ୍ୟବସ୍ଥା କରାଯାଇଛି । ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗର ନିର୍ଦ୍ଦେଶକ ପ୍ରଫେସର ଅଖିଳ ବିହାରୀ ଓତା ଉଦ୍‌ବୋଧନ ଦେଇ କହିଥିଲେ ଯେ, ଆଦିବାସୀ ଅଞ୍ଚଳରେ ଶିକ୍ଷକମାନଙ୍କ ପାଇଁ ଏହି ସହାୟକ ପୁସ୍ତିକା ବେଶ୍ ଉପଯୋଗୀ ହେବ । ଆଦିବାସୀ ଉପଯୋଜନା ଅଞ୍ଚଳରେ ଥିବା ଛାତ୍ରଛାତ୍ରୀମାନେ ଏହାଦ୍ୱାରା ଅଧିକ ଉପକୃତ ହେବେ । ମହିଳା ଓ ଶିଶୁ ବିକାଶ ବିଭାଗ ଶାସନ ସଚିବ ଶ୍ରୀମତୀ ଆରତୀ ଆହୂଜା ନୂଆ ପାଠ୍ୟକ୍ରମ ସମ୍ପର୍କରେ ରେଖାପାତ କରିଥିଲେ ଏବଂ ଗୁଣାତ୍ମକ ମାନର ତାଲିମ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ପ୍ରକାଶ ଥାଉ କି, ରାଜ୍ୟର ୧୨ଟି ଜିଲ୍ଲାରେ ୬୨୪ଟି ଅଙ୍ଗନୱାଡି କେନ୍ଦ୍ରରେ ଅନୁସୂଚିତ ଜନଜାତି ଓ ଜାତିଙ୍କ ୧୦ଟି ଭାଷାରେ ଅଙ୍ଗନୱାଡି କର୍ମୀଙ୍କ ପାଇଁ ପ୍ରାକ୍ ବିଦ୍ୟାଳୟ ସହାୟକ ପୁସ୍ତିକା ପ୍ରସ୍ତୁତ କରାଯାଇଛି ବୋଲି ମହିଳା ଓ ଶିଶୁ ବିକାଶ ବିଭାଗ ସୂତ୍ରରୁ ପ୍ରକାଶ ।

ଡକ୍ଟର ଜ୍ୟୋତିର୍ମତୀ ସାମନ୍ତରାୟ, ସୂଚନା ଅଧିକାରୀ

## କେଉଁଝରର ପର୍ଯ୍ୟଟନ ବିକାଶ ପାଇଁ ପର୍ଯ୍ୟଟନ ମନ୍ତ୍ରୀଙ୍କ ସହ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀଙ୍କ ଆଲୋଚନା

ରାଜ୍ୟ ସଚିବାଳୟସ୍ଥିତ ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀଙ୍କ ପ୍ରକୋଷ୍ଠରେ କେଉଁଝରର ବିଭିନ୍ନ ପର୍ଯ୍ୟଟନ ପ୍ରକଳ୍ପର ବିକାଶ ସମ୍ପର୍କରେ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରୀ ଶ୍ରୀଯୁକ୍ତ ବଦ୍ରିନାରାୟଣ ପାତ୍ର ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀଯୁକ୍ତ ଅଶୋକ ଚନ୍ଦ୍ର ପଣ୍ଡାଙ୍କ ସହ ଆଲୋଚନା କରିଛନ୍ତି । ସାନ ଘାଘରା, ଘଟଗାଁ, କେଉଁଝର ଓ ପର୍ଯ୍ୟଟନ କାର୍ଯ୍ୟାଳୟର ଉନ୍ନୟନ କାର୍ଯ୍ୟ ସମ୍ପର୍କରେ ମୁଖ୍ୟତଃ ସମୀକ୍ଷା କରାଯାଇଥିଲା । ଏହି ସାନଘାଘରା ପର୍ଯ୍ୟଟନ ପ୍ରକଳ୍ପ ପାଇଁ ୧୪୬.୮୯ ଲକ୍ଷ ଖର୍ଚ୍ଚ ଅଟକଳରୁ ୭୪ ଲକ୍ଷ ଖର୍ଚ୍ଚ ସରିଛି । ଆସନ୍ତା ଡିସେମ୍ବର ସୁଦ୍ଧା ଏହି ପ୍ରକଳ୍ପଟି ପୂର୍ଣ୍ଣାଙ୍ଗ ହେବ । ସେହିପରି ଘଟଗାଁ ପର୍ଯ୍ୟଟନ ପ୍ରକଳ୍ପର ଖର୍ଚ୍ଚ ଅଟକଳ ୯୫.୪୩ ଲକ୍ଷରୁ ୬୫ ଲକ୍ଷ ଖର୍ଚ୍ଚ ହୋଇଛି । ଆସନ୍ତା ସେପ୍ଟେମ୍ବର ସୁଦ୍ଧା ପ୍ରକଳ୍ପଟିର କାର୍ଯ୍ୟ ଶେଷ ହେବ । କେଉଁଝର ଜିଲ୍ଲାର ବିଧାୟକ ଶ୍ରୀଯୁକ୍ତ ହୃଷିକେଶ ନାୟକ, ସଦର ବିଧାୟକ ଅଭିରାମ ନାୟକ, ତେଲକୋଇ ବିଧାୟକ ବେଦବ୍ୟାସ ନାୟକ, ପର୍ଯ୍ୟଟନ ଓ ସଂସ୍କୃତି ବିଭାଗ ଶାସନ ସଚିବ ଡଃ ଅରବିନ୍ଦ କୁମାର ପାଢୀ, ପର୍ଯ୍ୟଟନ ନିଗମ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ମନୋରଞ୍ଜନ ପଟ୍ଟନାୟକ, ସଂସ୍କୃତି ନିର୍ଦ୍ଦେଶକ ସୁଶୀଲ ଦାସ, ଆଲୋଚନାରେ ଅଂଶଗ୍ରହଣ କରିଥିଲେ । ନିଧାର୍ଯ୍ୟ ସମୟ ମଧ୍ୟରେ ସମସ୍ତ ପ୍ରକଳ୍ପଗୁଡିକୁ ଶେଷ କରିବା ପାଇଁ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ପଣ୍ଡା ଗୁରୁତ୍ୱ ଆରୋପ କରିଥିଲେ ।

ବରଦା ପ୍ରସନ୍ନ ଦାସ, ସୂଚନା ଅଧିକାରୀ

## ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ବାଳିକା ହଷ୍ଟେଲ ପାଇଁ ତିନି ହଜାର ମହିଳା ପରିଚାଳିକା

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଅଧୀନରେ ଥିବା ବାଳିକା ହଷ୍ଟେଲଗୁଡ଼ିକରେ ୩ ହଜାର ମହିଳା ପରିଚାଳିକାଙ୍କୁ ନିୟୋଜିତ କରାଯିବ । ଏହି ପଦବୀ ସୃଷ୍ଟି କରିବା ନିମନ୍ତେ ଅର୍ଥ ବିଭାଗ ସ୍ୱୀକୃତି ପ୍ରଦାନ କରିଛନ୍ତି ।

୨୦୧୪-୧୫ ଆର୍ଥିକ ବର୍ଷଠାରୁ ସାରା ରାଜ୍ୟରେ ଥିବା ବିଭାଗୀୟ ବାଳିକା ହଷ୍ଟେଲରେ ଏହି ମହିଳା ପରିଚାଳିକାମାନେ ମାସିକ ୭ ହଜାର ୫୦୦ ଟଙ୍କା ବେତନରେ କାର୍ଯ୍ୟ କରିବେ । ମହିଳା ପରିଚାଳିକାମାନଙ୍କୁ ନିୟୋଜିତ କରିବା ପାଇଁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

ଅଧିକ ଶଯ୍ୟାବିଶିଷ୍ଟ ବାଳିକା ହଷ୍ଟେଲଗୁଡ଼ିକରେ ଅଗ୍ରାଧିକାର ଭିତ୍ତିରେ ମହିଳା ପରିଚାଳିକାମାନଙ୍କୁ ନିୟୋଜିତ କରାଯିବ । ଉଚ୍ଚଶ୍ରେଣୀରେ ଅଧ୍ୟୟନ କରୁଥିବା ଛାତ୍ରୀମାନଙ୍କର ସୁରକ୍ଷା ତଥା ଦେଖାଶୁଣା କରିବା ନିମନ୍ତେ ମହିଳା ପରିଚାଳିକାମାନଙ୍କୁ ନିୟୋଜିତ କରାଯିବ  ବୋଲି ବିଭାଗୀୟ ନିର୍ଦ୍ଦେଶକ ପ୍ରଫେସର ଅଖିଳ ବିହାରୀ ଓତା ପ୍ରକାଶ କରିଛନ୍ତି ।

ପ୍ରକାଶ ଥାଉକି, ଜିଲ୍ଲାୱାରି ମହିଳା ପରିଚାଳିକାମାନଙ୍କୁ ମନୋନୟନ ଓ ସେମାନଙ୍କ କାର୍ଯ୍ୟ ସମ୍ବନ୍ଧୀୟ ଏକ ଗାଇଡ଼ଲାଇନ୍ ମଧ୍ୟ ଏସ୍‌ଟି ଓ ଏସ୍‌ସି ଉନ୍ନୟନ ବିଭାଗ ପକ୍ଷରୁ ପ୍ରସ୍ତୁତ କରାଯାଇଛି ।

ଡ଼କ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ, ସୂଚନା ଅଧିକାରୀ

# ଭାରତୀୟ ବାୟୁସେନା ନିଯୁକ୍ତି ର୍‍ୟାଲି

ଭୁବନେଶ୍ୱର ଠାରେ ଭାରତୀୟ ବାୟୁସେନା ନିଯୁକ୍ତି ର୍‍ୟାଲି ଆୟୋଜନ ପାଇଁ ପ୍ରସ୍ତୁତି ଚୂଡାନ୍ତ ହୋଇଛି । ଏଥିପାଇଁ ଆସନ୍ତା ୨୮ ତାରିଖଠାରୁ ଜିଲ୍ଲାୱାରୀ ପ୍ରାର୍ଥୀମାନଙ୍କ ନାମ ପଞ୍ଜିକରଣ କରାଯିବ ଏବଂ ଏହା ଅଗଷ୍ଟ ୬ ତାରିଖ ଯାଏଁ ରାଜଧାନୀ ମହାବିଦ୍ୟାଳୟ ପ୍ରାଙ୍ଗଣରେ ଆୟୋଜିତ ହେବ । ପ୍ରତିଦିନ ଏହି ନିଯୁକ୍ତି ର୍‍ୟାଲିରେ ପ୍ରାୟ ୧ ହଜାର ପ୍ରାର୍ଥୀ ଯୋଗଦେବାର ସମ୍ଭାବନା ଥିବାରୁ ଏହାକୁ ସୂଚାରୁ ରୂପେ ସମ୍ପାଦନ କରିବା ପାଇଁ ଖୋର୍ଦ୍ଧା ଜିଲ୍ଲା ପ୍ରଶାସନ ଏବଂ ନିୟୋଜନ ନିର୍ଦ୍ଦେଶାଳୟ ଓ ବାୟୁସେନା କାର୍ଯ୍ୟାଳୟ ତରଫରୁ ବ୍ୟାପକ ଆୟୋଜନ କରାଯାଇଛି । ଭିଡକୁ ନିୟନ୍ତ୍ରିତ କରିବା ପାଇଁ କମିଶନରେଟ୍ ପୋଲିସ୍ ତରଫରୁ ଆବଶ୍ୟକ ମୁତାବକ ପୋଲିସ୍ ଫୋର୍ସ ପାଇଁ ବ୍ୟବସ୍ଥା କରାଯାଇଛି । ସେହିପରି ନିଯୁକ୍ତି ପ୍ରକ୍ରିୟା ସଂଚାଳନ ପାଇଁ ରାଜ୍ୟ ବାହାରୁ ଅଧିକାରୀଗଣ ଯୋଗଦେବାର କାର୍ଯ୍ୟକ୍ରମ ରହିଛି । ପ୍ରାର୍ଥୀମାନଙ୍କ ପରୀକ୍ଷା ଅନ୍‌ଲାଇନ୍ ବ୍ୟବସ୍ଥା ମାଧ୍ୟମରେ ହେବାକୁ ଥିବାରୁ ସେହି ଦିନମାନଙ୍କରେ ଯେପରି ବିଦ୍ୟୁତ ଯୋଗାଣରେ ବ୍ୟାଘାତ ନ ଘଟେ ସେଥିପାଇଁ ବିଦ୍ୟୁତ ବିଭାଗ କର୍ତ୍ତୃପକ୍ଷଙ୍କୁ ମଧ୍ୟ ଅନୁରୋଧ କରାଯାଇଛି । ଏହି ଦଶ ଦିନ ମଧ୍ୟରେ ର୍‍ୟାଲିର ଆୟୋଜନ ସ୍ଥଳୀର ନିତିଦିନିଆ ପରିମଳ ବ୍ୟବସ୍ଥା ବଜାୟ ରଖିବାକୁ ବିଏମ୍‌ସି ତରଫରୁ ପଦକ୍ଷେପ ନିଆଯାଇଛି । ଏଥି ସହିତ ପାନୀୟ ଜଳଯୋଗାଣ, ମାଇକ୍ ବ୍ୟବସ୍ଥା, ଟେଣ୍ଟ, ଆଶୁଚିକିତ୍ସା ପାଇଁ ଆମ୍ବୁଲାନ୍ସ୍ ପ୍ରଭୃତି ପ୍ରଶାସନ ତରଫରୁ ବନ୍ଦୋବସ୍ତ କରାଯାଇଛି । ପ୍ରାର୍ଥୀମାନେ ଯେପରି ଏହି ର୍‍ୟାଲି ସମ୍ବନ୍ଧରେ ଅବଗତ ହୋଇପାରିବେ, ସେଥିପାଇଁ ବିଭିନ୍ନ ଗଣମାଧ୍ୟମରେ ପ୍ରଚାରପ୍ରସାର ନିମନ୍ତେ ସ୍ଥିର ହୋଇଛି । ସେହିପରି ପ୍ରାର୍ଥୀ ଯେପରି କୌଣସି ଦଲାଲଙ୍କ ହାବୁଡରେ ନ ପଡନ୍ତି ସେଥିପାଇଁ ଦୃଷ୍ଟି ରଖିବାକୁ ବାୟୁସେନା ଓ ସ୍ଥାନୀୟ ପୋଲିସ ତରଫରୁ ଭିଜିଲାନ୍ସ ଅଧିକାରୀଙ୍କୁ ର୍‍ୟାଲି ସ୍ଥାନରେ ନିୟୋଜନ କରାଯିବାର ବନ୍ଦୋବସ୍ତ କରାଯାଇଛି ।

ଏହି ନିଯୁକ୍ତି ର୍‍ୟାଲିର ଆୟୋଜନ ସକାଶେ ଏକ ପ୍ରସ୍ତୁତି ବୈଠକ ଆହୂତ କରାଯାଇ ର୍‍ୟାଲିର ପ୍ରତିଟି ଆବଶ୍ୟକତା ଉପରେ ଗୁରୁତ୍ୱ ପ୍ରକଟ କରାଯାଇଥିଲା । ଏହି ବୈଠକରେ ଅତିରିକ୍ତ ଜିଲ୍ଲାପାଳ ଶ୍ରୀ ମନୋଜ କୁମାର ପଟ୍ଟନାୟକ, ୱିଙ୍ଗ୍ କମାଣ୍ଡର ଶ୍ରୀ ରବୀନ୍ଦ୍ର ଚୌଧୂରୀ, ଆଞ୍ଚଳିକ ସହକାରୀ ନିର୍ଦ୍ଦେଶକ, ନିୟୋଜନ ନିର୍ଦ୍ଦେଶାଳୟ ଶ୍ରୀ ଅସିତ୍ ବରଣ ପ୍ରଧାନ, ଅତିରିକ୍ତ ଡିସିପି ଶ୍ରୀ ଶରତ କୁମାର ମହାପାତ୍ର, ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ ଶ୍ରୀ ସୁବାଷ ନିଆଲ, ଆର୍‌ଟିଓ ଶ୍ରୀ ଲାଲ ମୋହନ ସେଠୀ, ସ୍ୱାସ୍ଥ୍ୟ ଅଧିକାରୀ ଡଃ ଦେବିକା ଦାମେଲ୍, ଡେପୁଟି ସୁପରିଟେଣ୍ଡେଣ୍ଟ କ୍ୟାପିଟାଲ ହସ୍‌ପିଟାଲ୍ ଡଃ ମନୋରଞ୍ଜନ ଦାଶ ପ୍ରମୁଖ ଯୋଗ ଦେଇଥିଲେ ।

ସୁବାଷ ନିଆଲ, ସୂଚନା ଅଧିକାରୀ